ଇନ୍ଦିରା ଗାନ୍ଧୀଙ୍କର ରାଜୁତି ବହୁ ଭାରତର ଇତିହାସରେ ସ୍ମରଣୀୟ ହୋଇ ରହିବ ; ସେଥିରୁ ସବୁଠୁଁ ଉଲ୍ଲେଖଯୋଗ୍ୟ ହେଉଛି —ଗଣତନ୍ତ୍ରର ହତ୍ୟା । କିନ୍ତୁ ମୋ ପକ୍ଷରେ —ମୁଁ ଯେତେ ମାସ ବା ବର୍ଷ ଜୀବିତ ରହିବି— ସ୍ୱାଧୀନ ଭାରତରେ ପ୍ରଥମ ଥର ଲାଗି ଲୁହ ବୁହା ଗ୍ୟାସ୍, ଲାଠିପ୍ରହାର ( ସି ଆର. ପି. ଦ୍ୱାରା ) ଓ ଅଟକ ହୋଇ ରହିବା ସ୍ମୃତିରୂପେ ରହିଥିବ । ଇଂରେଜ ରାଜୁତି ବେଳେ ମୁଁ ବ୍ୟକ୍ତିଗତ ଭାବରେ କେବେହେଲେ ଲୁହବୁହା ଗ୍ୟାସ୍ ବା ଲାଠି ପ୍ରହାର ଅନୁଭବ କରି ନ ଥିଲି । ୧୯୪୬ ଏପ୍ରିଲ ମାସରେ ଆଗ୍ରା କେନ୍ଦ୍ର ଜେଲରୁ ମୁକ୍ତିପରେ ମୁଁ କେବେହେଲେ ଗିରଫ ହୋଇ ନାହିଁ କିମ୍ବା ଜେଲରେ ଅଟକ ହୋଇ ନ ଥିଲି ।"

**ଜୟପ୍ରକାଶ ନାରାୟଣ**
(କାରାଗାରର ଡାଏରୀ—ପୃ ୫,୬)

ଆଚ୍ଛାଦପଟ ଚିତ୍ର
ପାଟନାର ଶୋଭାଯାତ୍ରାରେ
ଜୟପ୍ରକାଶଙ୍କ ଉପରେ ଲାଠିମାଡ଼ ।

ସଂପୂର୍ଣ୍ଣ କ୍ରାନ୍ତି ଏବଂ ଜୟପ୍ରକାଶ ବିପ୍ଳବୀ ଚିନ୍ତାଧାରା ସଂପର୍କରେ ଏହି ପୁସ୍ତକ ଓଡ଼ିଆ ଭାଷାରେ ସଂ... ନୂତନ ଧରଣର ।

ସଂପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନ ବେ... ଦେଶରେ ଏମର୍ଜେନ୍ସି ଜାରି ଏ... ତତ୍‌ଜନିତ କ୍ରିୟା ପ୍ରତିକ୍ରି... ଅନ୍ୟାୟ, ଅବିଚାର, ଉତ୍ପୀଡ଼... ଶାସକ ଓ ଶାସନ କଳର ଭ୍ରଷ୍ଟା... ଓ ନୈତିକ ଅଧୋଗତି ତ... ଦେଶର ଚରମ ଦୁର୍ଦ୍ଦଶା—ଏଥିର ... ନାୟକ ନାୟିକାମାନଙ୍କର ଭୂମି... ଏବଂ ବିଶେଷଭାବରେ ଆମ ଓଡ଼ିଶା... ଏହି ଆନ୍ଦୋଳନ ସମ୍ବନ୍ଧରେ ଅତି ... ଓ ଚାଞ୍ଚଲ୍ୟଜନକ ତଥ୍ୟ ଏହି ପୁସ୍ତ... ମିଳିପାରିବ ।

ସୁପ୍ରତିଷ୍ଠିତ ରାଜନୀତିଜ୍ଞ ଓ ... ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଦ୍ୱି... ଜୟପ୍ରକାଶ ନାରାୟଣଙ୍କର ପ... ବନ୍ଧୁ ଏବଂ ନାନାଭାବରେ ... ଆନ୍ଦୋଳନ ସହ ଦୀର୍ଘ ... ସଂପୃକ୍ତ । ଏଥି ଯୋଗୁଁ 'ପୁସ୍ତ... ଗୁରୁତ୍ୱ ଅଧିକ ।

ପ୍ରକାଶ...

I am happy that Shri Surendranath Dwivedy has resigned from the Congress to associate himself with the cause of total revolution.

× × ×

Suren Babu has worked with me as a colleague for more than three decades. He is a dedicated socialist and during his long years of public service, has established the reputation of a ceaseless fighter against political corruption. I have no doubt that association of such friends and their active involvement will strengthen the cause of total revolution.

(Jayaprakash Narayan).

Patna,
July 26, 1977.

# ନିଜକଥା

ମୁଁ ସର୍ବୋଦୟ ଗୋଷ୍ଠୀର ଅନ୍ତର୍ଭୁକ୍ତ ନୁହେଁ କିମ୍ବା ପୃଷ୍ଠ ଜୟପ୍ରକାଶପନ୍ଥୀ ବୋଲି ଦାବି କରିପାରେନା । ଜୟପ୍ରକାଶଙ୍କ ଭାଷାରେ ମୁଁ ହେଉଛି ତାଙ୍କର "ପରମପ୍ରିୟ ମିତ୍ର" । ଏ ମିତ୍ରତା ବହୁଦିନର—୧୯୩୪-୩୫ରେ କଂଗ୍ରେସ ସୋସଲିଷ୍ଟ ପାର୍ଟି ଗଠନ ଦିନଠାରୁ । ରାଜନୀତିକ ସାଥୀଭାବରେ ବହୁବର୍ଷ କାର୍ଯ୍ୟ କରିଛୁ ଏବଂ ଏହି ବନ୍ଧୁତା କ୍ରମେ ବ୍ୟକ୍ତିଗତରୂପ ଧାରଣ କରିଛି ।

୧୯୫୪ରେ ଜୟପ୍ରକାଶ ରାଜନୀତି କ୍ଷେତ୍ରରୁ ଆମମାନଙ୍କଠାରୁ ଦୂରେଇଗଲେ ଏବଂ ସକ୍ରିୟ ଓ ଦଳଗତ ରାଜନୀତିରୁ ଅନ୍ତର ହୋଇ ଜୀବନଦାନ କଲେ । କିନ୍ତୁ ମୋର ବ୍ୟକ୍ତିଗତ ସୁସମ୍ପର୍କ ପୂର୍ବପରି ରହିଥିଲା ଓ ରହିଛି । ମୁଁ ମୋର ରାଜନୀତିକ କାର୍ଯ୍ୟରେ ବରାବର ତାଙ୍କର ପରାମର୍ଶ ଲୋଡ଼ୁଥିଲି ଏବଂ ତାଙ୍କୁ ଅବଗତ କରାଉଥିଲି ।

୧୯୭୨ ମସିହାରେ ମୁଁ କଂଗ୍ରେସ ଦଳରେ ଯୋଗଦାନ କଲି; ମାତ୍ର କିଛିଦିନ ପରେ କଂଗ୍ରେସରେ କାର୍ଯ୍ୟ କରିବା ମୋ ପକ୍ଷରେ ଦିନୁକୁଦିନ ଅସମ୍ଭବ ହୋଇପଡ଼ିଲା ଏବଂ ମତଭେଦ ବଢ଼ିବାକୁ ଲାଗିଲା । ତେଣୁ ୧୯୭୫ ଜାନୁୟାରୀ ମାସରେ କଂଗ୍ରେସ ତ୍ୟାଗ କରିବାର ସିଦ୍ଧାନ୍ତ କରିଥିଲି; ମାତ୍ର ଜେ. ପି. ବାରଣ କରିବାରୁ ତ୍ୟାଗପତ୍ର ଦେଇନଥିଲି ।

୧୯୭୫ ମାର୍ଚ୍ଚ ୩୧ ତାରିଖ ଦିନ ମୋର ଯେତେବେଳେ ଭୁବନେଶ୍ୱରରେ ଜେ. ପି.ଙ୍କ ସହ ଭେଟ ହୁଏ, ସେତେବେଳେ ତାଙ୍କ ଆନ୍ଦୋଳନରେ ଯୋଗଦେବା ନିମନ୍ତେ ସେ ମତେ ନିମନ୍ତ୍ରଣ ଦେଇଥିଲେ, ମାତ୍ର ନାନାକାରଣରୁ ତାହା ସମ୍ଭବ ହୋଇପାରିନଥିଲା । ପରସ୍ପରର ଭାବନା ବୁଝି ଓ ପରିସ୍ଥିତି ଅନୁଧ୍ୟାନ କରିବା ପରେ ମୁଁ ଦୁଇଟି ପ୍ରତିଶ୍ରୁତି ତାଙ୍କୁ ଦେଇଥିଲି; (୧) ତାଙ୍କ ନେତୃତ୍ୱରେ ଯଦି ଏକ ବିକଳ୍ପ ରାଜନୀତିକ ଦଳ ସେ ବିରୋଧୀ ଦଳଗୁଡ଼ିକୁ ଏକତ୍ର କରି ଗଠନ କରିପାରନ୍ତି, ସେଥିରେ ମୁଁ ଯୋଗ ଦେବା କଥା ବିଚାର କରିବି ଓ (୨) ମୁଁ ତାଙ୍କ ଆନ୍ଦୋଳନ ପ୍ରତି ସହାନୁଭୂତିସମ୍ପନ୍ନ ହେବି ଏବଂ କଂଗ୍ରେସ ଭିତରେ କମ୍ୟୁନିଷ୍ଟ ପାର୍ଟିର ପ୍ରଭାବ ବିରୋଧରେ କାର୍ଯ୍ୟ କରୁଥିବି ।

ଏବେ ଭାରତୀୟ ରାଜନୀତିରେ ଗୁଣାତ୍ମକ ପରିବର୍ତ୍ତନ ଘଟିଛି । ଜେ. ପି. ପୁନର୍ଜୀବିତ ଭାରତର ହୃଦୟସମ୍ରାଟ ହୋଇଛନ୍ତି । ଭଗ୍ନସ୍ୱାସ୍ଥ୍ୟ ସତ୍ତ୍ୱେ ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନକୁ ସେ ଜାରି ରଖିଛନ୍ତି । ଏଭଳି ଅବସ୍ଥାରେ ତାଙ୍କର ନେତୃତ୍ୱରେ ଓ ନିର୍ଦ୍ଦେଶାନୁସାରେ ଏଣିକି ମୁଁ

କାର୍ଯ୍ୟ କରିବାର ସିଦ୍ଧାନ୍ତ ନେଇ ତାଙ୍କୁ ଯେତେବେଳେ ବମ୍ବେରେ ଜଣାଏ, ସେ ଅତ୍ୟନ୍ତ ପ୍ରୀତ ହେଲେ ଏବଂ ବନ୍ଧୁମାନଙ୍କ ସମ୍ମୁଖରେ କହି ପକାଇଲେ "ହମ୍ ପୁରାନେ ସାଥି ଫିର୍ ଇକଠ୍ଠା ହୋ ଗୟେ ।" ପାଟନାଠାରୁ ପରେ ଏ ସମ୍ପର୍କରେ ଏକ ବିବୃତି ଦେଲେ ଯାହାର କିୟଦଂଶ ଏହି ପୁସ୍ତକରେ ଦିଆଯାଇଛି । ମୋର ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ସ୍ଥିତି ଯାହା, ସେଥିରେ ମୁଁ କେତେଦୂର ସକ୍ରିୟଭାବରେ ଯୋଗଦାନ କରିପାରିବି ଜାଣେନା; ମାତ୍ର ସମ୍ପୂର୍ଣ୍ଣ କ୍ରାନ୍ତି ସହିତ ମୋର ଘନିଷ୍ଠ ସମ୍ପର୍କ ଓ ସହଯୋଗ ରହିବ—ମୁଁ ଏହାର ସଫଳତା କାମନାକରେ ।

ଏ ନିଷ୍ପତ୍ତି ପରେ ସମ୍ପୂର୍ଣ୍ଣ କ୍ରାନ୍ତି ଓ ରାଜନୀତିକ ପରିବର୍ତ୍ତନଜନିତ ପ୍ରଶ୍ନଗୁଡ଼ିକର ଟିକିଏ ଅନୁଧ୍ୟାନ କରିବାର ପ୍ରୟାସ ଜନ୍ମିଲା । ଏହି ପୁସ୍ତକଟି ସେଭଳି ପ୍ରଚେଷ୍ଟାର ପରିଣତି ।

ଏହା ଜେ. ପି.ଙ୍କର ଜୀବନୀ ନୁହେଁ, ତାଙ୍କ ସମ୍ପୂର୍ଣ୍ଣକ୍ରାନ୍ତିର ଏକ ରାଜନୀତିକ ସମୀକ୍ଷା କହିଲେ ଚଳେ । ମୋର ଏ ସମ୍ପର୍କରେ ଯେତିକି ବ୍ୟକ୍ତିଗତ ଜ୍ଞାନ ରହିଛି ଏବଂ ଏ ସମ୍ପର୍କରେ ମୋ ପାଖରେ ଓ ଅନ୍ୟତ୍ର ଥିବା ତଥ୍ୟ ପଢ଼ି ସମ୍ପୂର୍ଣ୍ଣ କ୍ରାନ୍ତି ସମ୍ବନ୍ଧରେ ମୋର ବିଚାରକୁ ପୁସ୍ତକ ଜରିଆରେ ଉପସ୍ଥାପନ କରାଯାଇଛି । ଏହା ପାଠକର ସମ୍ପୂର୍ଣ୍ଣ କ୍ରାନ୍ତି ସମ୍ବନ୍ଧରେ ଅଧିକ ଜାଣିବା ଲାଗି ଯଦି ପାଠକଙ୍କ ମନରେ ଆଗ୍ରହ ଜାତ ହୁଏ, ତେବେ ମୋର ଶ୍ରମ ସାର୍ଥକ ହେଲା ବୋଲି ବିଚାର କରିବି ।

ପୁସ୍ତକଟିର ଲେଖା ଜନ୍ମାଷ୍ଟମୀ, ସେପ୍ଟେମ୍ବର ୫ ତାରିଖ ଦିନ ଆରମ୍ଭ କଲି ଏବଂ ଅକ୍ଟୋବର ୨ ଗାନ୍ଧୀ ଜୟନ୍ତୀରେ ସମାପ୍ତ ହେଲା । ପୁସ୍ତକର ଭାଷା ସାବଲୀଳ; ମାତ୍ର ସାମ୍ବାଦିକର, ସାହିତ୍ୟିକର ଭାଷା ନୁହେଁ । ସମୟର ତାଡ଼ନା ଯୋଗୁଁ ଏହା କରିବାକୁ ପଡ଼ିଲା । ଅକ୍ଟୋବର ୧୧ ଜୟପ୍ରକାଶ ଜୟନ୍ତୀ ଦିନ ଯେଭଳି ପୁସ୍ତକ ପ୍ରକାଶିତ ହୋଇ ପାରିବ, ତାହା ରହିଲା ନିର୍ଦ୍ଦିଷ୍ଟ ଲକ୍ଷ୍ୟ ।

ଏତେ ସ୍ୱଳ୍ପକାଳ ଭିତରେ ଏକପ୍ରକାର ଅସମ୍ଭବ କାର୍ଯ୍ୟକୁ ସମ୍ପନ୍ନ କରିଛନ୍ତି ଗ୍ରନ୍ଥ ମନ୍ଦିରର ପରିଚାଳକ ଓ କର୍ମୀବୃନ୍ଦ । ଶ୍ରୀ ଅଭିରାମ ମହାପାତ୍ର ଏହାର ଶେଷ ପ୍ରୁଫ୍ ଦେଖିବା ଦାୟିତ୍ୱ ନେବାରୁ ମୋର ବୋଝ ବହୁ ପରିମାଣରେ ଲାଘବ ହୋଇଛି ।

'ଉତ୍କଳ ଗାନ୍ଧୀ ସ୍ମାରକ ନିଧି'ର ସମ୍ପାଦକ ଶ୍ରୀ ଫକିର ମିଶ୍ର ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନ ବିଭାଗର ରିଡ଼ର ଡକ୍ଟର ବେଣୁଧର ପ୍ରଧାନ କଷ୍ଟ ସ୍ୱୀକାର ପୂର୍ବକ ପାଣ୍ଡୁଲିପିର କେତେକ ଅଧ୍ୟାୟ ପାଠ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଜଣାଉଛି ।

ପୁସ୍ତକର ପ୍ରଚ୍ଛଦପଟରେ ୧୯୭୪ ନଭେମ୍ବର ୪ ତାରିଖରେ ପାଟନାଠାରେ ଜୟପ୍ରକାଶଙ୍କ ଉପରେ ହୋଇଥିବା ଲାଠିମାଡ଼ର ଛବି ଦିଆଯାଇଛି । କଲିକତା 'ଷ୍ଟେଟ୍ସମ୍ୟାନ'ର ସମ୍ପାଦକ ମୋର ଅନୁରୋଧ ରକ୍ଷା କରି ଏହା ଯୋଗାଇ ଦେଇ ନଥିଲେ ଏବଂ କଟକର 'ଦାସ ଏଣ୍ଡ୍ ଦାସ' ଆଉ କେତେକ ଛବି ଦେବାରେ ସହଯୋଗ ନକରିଥିଲେ ଏପରି ଘଟଣାବହୁଳ ଛବି ଦେବା ସମ୍ଭବ ହୋଇପାରିନଥାନ୍ତା ।

ମୋର କେତେକ ଅତି ଘନିଷ୍ଠ ବନ୍ଧୁ ଅନ୍ତରାଳରେ ରହି ଯେତିକି ସାହାଯ୍ୟ ଓ ଉତ୍ସାହ ଦେଇଛନ୍ତି, ସେ ସମସ୍ତଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

ସୁରେନ୍ଦ୍ରନାଥ ଦ୍ୱିବେଦୀ
ଭୁବନେଶ୍ୱର
ତା ୯ । ୧୦ । ୭୭

# ସୂଚୀ





# ବିନାଶକାଳେ ବିପରୀତବୁଦ୍ଧି

୧୯୪୨ ମସିହା ଅଗଷ୍ଟ ୯ ତାରିଖ ସକାଳ । ଅଗଷ୍ଟ ୮ ତାରିଖ ବିଳମ୍ବ ରାତିରେ 'ଭାରତ ଛାଡ଼' ପ୍ରସ୍ତାବ ନିଖିଳ ଭାରତ କଂଗ୍ରେସ କମିଟିରେ ଗୃହୀତ ହେଲା ପରେ ଯେଝା ହୋଟେଲ ଓ ବାସସ୍ଥାନକୁ ସମସ୍ତେ ବାହୁଡ଼ିଗଲେ । ଆମେ ବି ଆସି ଆମର ବମ୍ବେ ହୋଟେଲରେ ଶୋଇପଡ଼ିଲୁ । ସକାଳୁ ବିଶିଦ ଥାଏ ମହାତ୍ମା ଗାନ୍ଧୀଙ୍କ ସହ ବିରଲାଭବନରେ ସାକ୍ଷାତ୍ । 'କର ବା ମର'—ଆହ୍ୱାନ ଗାନ୍ଧିଜୀ ଦେଇଥାଆନ୍ତି । ବ୍ରିଟିଶ୍ ସରକାରଙ୍କୁ ସତର୍କବାଣୀ ଶୁଣାଇଥାଆନ୍ତି—'ତୁମେ ଯାଅ' । ଭାରତ ସ୍ୱାଧୀନ ହେବ । ଗୋରା-ଚଣ୍ଡାଳଙ୍କ ହାତରେ ପଛକେ ଦେଶ ପଡ଼ୁ, କିନ୍ତୁ ତୁମକୁ ଆଉ ମୁହୂର୍ତ୍ତେ ସୁଦ୍ଧା ବରଦାସ୍ତ କରିହେବ ନାହିଁ । ଏହା ଥିଲା ତାଙ୍କର ବଜ୍ରନିର୍ଘୋଷିତବାଣୀ ।

ଯା'ବୋଲି କିଛି ତତ୍‌କ୍ଷଣାତ୍ ସଂଗ୍ରାମର ଘୋଷଣା କରିଯାଇ ନ ଥିଲା । ଗାନ୍ଧିଜୀ କହିଥିଲେ—ମୁଁ ଏହି ପ୍ରସ୍ତାବ ନେଇ ଭାଇସ୍‌ରାୟଙ୍କ ନିକଟକୁ ଯିବି । କଥାବାର୍ତ୍ତାର ଦ୍ୱାର ମୁଁ ବନ୍ଦ କରିନାହିଁ—ଆମର ଶାନ୍ତିପୂର୍ଣ୍ଣ ଅହିଂସ ସଂଗ୍ରାମ, ଆମର ଦାବୀ ଯଥାର୍ଥ । ଦେଶ ଓ ସାରା ଜଗତର ହିତପାଇଁ ଏବଂ ଯୁଦ୍ଧ କୋଳାହଳ ବନ୍ଦ ହେବା ଦୃଷ୍ଟିରୁ ଭାରତ ଭଳି ବିଶାଳ ଭୂଖଣ୍ଡର କୋଟି କୋଟି ଜନମାନବ ମୁକ୍ତ ଓ ସ୍ୱାଧୀନ ହେଲେ ପୃଥିବୀରେ ଏକ ନୂତନ ଶକ୍ତିର ଆବିର୍ଭାବ ହେବ । ଯୁଦ୍ଧର ଅବସାନ ଘଟିବ । ବ୍ରିଟିଶ ସାମ୍ରାଜ୍ୟବାଦୀ ଶକ୍ତି ଆପଣାର ମର୍ଯ୍ୟାଦା ରକ୍ଷା କରିବା ନିମନ୍ତେ ଏବଂ ହିଟଲର ଅପେକ୍ଷା ବାସ୍ତବିକ ଅଧିକ ଯୁଦ୍ଧପ୍ରିୟ ନୁହନ୍ତି ବୋଲି ପ୍ରମାଣ କରିବା ନିମନ୍ତେ ଭାରତ ଭୂମିରୁ ଅପସରିଯିବା ଉଚିତ । ଶାନ୍ତିକାମୀ ମହାତ୍ମା ଗାନ୍ଧିଙ୍କର ତଥାପି ଆଶା ଥାଏ—ତାଙ୍କ କଥା ସରକାର ଶୁଣିବ ଏବଂ ହୁଏତ ଗୋଟାଏ ସମାଧାନର ବାଟ ଫିଟିବ । ମାତ୍ର ଏହା ବୋଲି ଆମର ପ୍ରସ୍ତୁତିରେ ବିଳମ୍ବ ହେବା ଉଚିତ ନୁହେଁ । ଆମେ ଯେ ମୃତ୍ୟୁଶପଥ ନେଲେ, ସେ ଦିଗରେ କେମିତି ତିଆରି ହୋଇ ରହିବାକୁ ପଡ଼ିବ, ସେ ବିଷୟରେ ଗାନ୍ଧିଜୀଙ୍କଠାରୁ ନିର୍ଦ୍ଦେଶ ନେବାଲାଗି ବିଭିନ୍ନ ପ୍ରଦେଶର ନିଖିଳ ଭାରତ କଂଗ୍ରେସ କମିଟିର ସଦସ୍ୟମାନଙ୍କୁ ଗାନ୍ଧିଜୀଙ୍କ ସହ ଭେଟିବାଲାଗି ସମୟ ଧାର୍ଯ୍ୟ ହୋଇଥାଏ ।

ବ୍ରିଟିଶ୍ ସରକାର ହେଉ ବା କଂଗ୍ରେସ ସରକାର ହେଉ, ଶାସନର ଆଭିମୁଖ୍ୟ ପ୍ରାୟ ଏକାଭଳି । ଗୋରା ଡକାୟତ୍ ଅର୍ଦ୍ଧରାତ୍ରରେ ନିଜର ଅଭିଯାନ ଚଳାନ୍ତି । ଘୋର ନିଦ୍ରାରେ ସମଗ୍ର ସମାଜ ସୁପ୍ତ ଅବସ୍ଥାରେ ଥିବାବେଳେ ଲୁଣ୍ଠନ ଓ ଉପଦ୍ରବ ପ୍ରକ୍ରିୟା କରିବା ଅପେକ୍ଷାକୃତ ସହଜ । ଗୋରା ଡକାଏତଙ୍କର ଲୋକଙ୍କୁ ଭୟ—ସେମିତି ସରକାରୀ କର୍ତ୍ତୃପକ୍ଷଙ୍କର ହାତରେ ଅସୀମ କର୍ତ୍ତୃତ୍ୱ ଥାଇ ସୁଦ୍ଧା ଜନତା ପ୍ରତି ଭୟ ରହିଥାଏ—ନାନା ବିପଦର

ଆଶଙ୍କା କରନ୍ତି । ଯେ ନ୍ୟାୟ କରେ, ସେ ଭୟ କରେନା—ଯେ ଅତ୍ୟାଚାରୀ ଦମନ-ଅସ୍ତ୍ର ପ୍ରୟୋଗ କରେ; ସେ ଜ୍ଞାତସାରରେ ଅନ୍ୟାୟ କରୁଥିବା ହେତୁ ଆତଙ୍କିତ ହୋଇଥାଏ । ତେଣୁ ଏତେ ବଡ଼ ପରାକ୍ରମଶାଳୀ ହୋଇ ସୁଦ୍ଧା ଇଂରେଜ ସରକାର ଅର୍ଦ୍ଧରାତ୍ରି ପରେ ମହାତ୍ମାଗାନ୍ଧୀ ଓ ଅନ୍ୟ ନେତାମାନଙ୍କୁ ଗିରଫ କରିନେଲେ । ଏଣେ ରେଡ଼ିଓ, ଟେଲିଫୋନ୍ ଏବଂ ଏପରିକି ବିଦ୍ୟୁତ୍ ସରବରାହ ବି ବନ୍ଦ କରିଦିଆଗଲା—କ'ଣ ରାତିରେ ଘଟିଛି ବିଷୟଟି ଚାରିଆଡ଼େ ପ୍ରଘଟ ନ ହେବା ଉଦ୍ଦେଶ୍ୟରେ । ସକାଳୁ ଉଠି ଆମେ ଦେଖୁ ପାଇପ୍‌ରେ ପାଣି ଆସୁନାହିଁ । ରାତିରେ ଜମିଥିବା ପାଣିରେ କୌଣସି ପ୍ରକାର ନିତ୍ୟକର୍ମ ଶେଷ କରିବାକୁ ପଡ଼ିଲା । ମାତ୍ର କେଜାଣି କାହିଁକି ଏପରି ପରିସ୍ଥିତି ହଠାତ୍ ଘଟିଲା—ଏହା ଭାବି ସମସ୍ତେ ସ୍ତବ୍ଧ । କେହି କିଛି କହିପାରୁ ନ ଥାନ୍ତି । ହୋଟେଲ ମାଲିକଙ୍କୁ ଆଗରୁ ହୁକୁମ ଥାଏ କିଛି ପ୍ରକାଶ ନ କରିବା ନିମନ୍ତେ । ଆମର ବିଭିନ୍ନ ପ୍ରଶ୍ନର ଉତ୍ତର ଦେବା ପରିବର୍ତ୍ତେ ସେ ମୂଢ଼ପରି ଅନାଇ ରହି-ଥାଆନ୍ତି । କିନ୍ତୁ ଆଗରୁ ବରାଦ ମୁତାବକ ସକାଳ ୬ଟା ବେଳୁ ବିରଳାଭବନକୁ ନେବା ନିମନ୍ତେ ଯେଉଁ ବସ୍ ଆସିବାର ଥିଲା ସେ ଆସି ପହଞ୍ଚି ଯାଇଥାଏ । ତାକୁ କେହି ବାରଣ କରିନଥାନ୍ତି କିମ୍ବା ନିଷେଧାଜ୍ଞା ଶୁଣାଇ ନ ଥାନ୍ତି । ଆମେ ସବୁ ଏକ ବ୍ୟାକୁଳ ଓ ସଂଦିଗ୍ଧ ମନରେ ବସରେ ବସି ବାହାରିପଡ଼ିଲୁ ବିରଳାଭବନ ଅଭିମୁଖରେ । ମହାତ୍ମାଗାନ୍ଧୀଙ୍କ ପାଖରୁ ନିର୍ଦ୍ଦେଶ ପାଇବା ଲାଗି ମନ ବଡ଼ ଉଚ୍ଚାଟ ଥାଏ; କିନ୍ତୁ ଏ ଯାତ୍ରା ବେଶି ଦୂର ନ ଯାଉଣୁ ଅଟକିଲା । ମହାତ୍ମା ଗାନ୍ଧୀଙ୍କର ଗିରଫ ସମ୍ବାଦ ଚାରିଆଡ଼େ ବିଜୁଳିବେଗରେ ସେହି ରାତିରେ ବାଜିଯାଇଥିଲା । ଶହ ଶହ ନର ନାରୀ, ଯୁବକ ଯୁବତୀ ରାସ୍ତାରେ ଠୁଳ । "ଗାନ୍ଧିଜୀ ମରଣ ପର୍ ହେଁ, ଆପ୍ ବସ୍‌ମେ ଚଲ୍‌ତେ ହୋ ।" ୟା' ପରେ କିଏ ଆଉ ଗାଡ଼ିରେ ଯାଏ ! ସେଇଠି ଗାଡ଼ି ଛାଡ଼ି ଆମେ ଅଧୀର ଉଦ୍‌ବେଗ ମନରେ ଧାଇଁଲୁ ବିରଳା-ଭବନକୁ । ପବନରେ ଉଡ଼ିଲା ପରି ଲାଗୁଥାଏ; କେତେ ପଥ ଚାଲିବାକୁ ପଡ଼ିଲା ଏବଂ କେମିତି କେଉଁ ବାଟରେ କିଏ ଆସିଲା, କିଛି ବୁଝାପଡ଼ୁ ନ ଥାଏ ।

ବିରଳାଭବନରେ ପହଞ୍ଚିଲାବେଳକୁ ନୀରବତା ନ ଥିଲେ ସୁଦ୍ଧା ଥିଲା ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବାୟୁମଣ୍ଡଳ । ଜନଗହଳି, କିନ୍ତୁ ପ୍ରତ୍ୟେକେ ଯେପରି ନିଜ ମନର କଥା ପରସ୍ପରକୁ ଜଣାଇପାରୁଥାଆନ୍ତି କୌଣସି କଥୋପକଥନ ନ କରି—ତାହାର ଆବଶ୍ୟକତା ଅନୁଭବ କରାଯାଉ ନ ଥାଏ ।

ଦଳ ବାନ୍ଧି ଶୃଙ୍ଖଳିତ ସୈନିକ ପରି ବିରଳାଭବନର ମୁଖ୍ୟଦ୍ୱାରକୁ ଲୋକେ ଯାଉଥାଆନ୍ତି ଏବଂ ସାଙ୍ଗେ ସାଙ୍ଗେ ଫେରିଆସୁଥାଆନ୍ତି । ଆମେ ଯେତେବେଳେ ଉପସ୍ଥିତ ହେଉ, ଗାନ୍ଧିଜୀଙ୍କ ସେକ୍ରେଟାରୀ ପ୍ୟାରେଲାଲ ମୋ ହାତକୁ ଖଣ୍ଡିଏ ଗ୍ରେଟ୍ କାଗଜ ବଢ଼ାଇଦେଲେ—ମାତ୍ର ପାଞ୍ଚ ଛଅ ଧାଡ଼ି ଟାଇପ୍ ହୋଇଥିବା ଇଂରେଜୀ କାଗଜ । ଗାନ୍ଧିଜୀଙ୍କର ଶେଷବାଣୀ :

"ସରକାରକୁ ଅଚଳ କର । କୌଣସି ପ୍ରକାର ହିଂସା ଆଚରଣ କରିବ ନାହିଁ ।

ଅହିଂସା ଓ ଶାନ୍ତି ଆମର ମନ୍ତ୍ର । ନିର୍ଭୟରେ ଆଗେଇ ଚାଲ । ତୁମେ ତୁମର ନେତା । ତୁମର ବିଜୟ ହେଉ । ଦେଶ ଆଜିଠାରୁ ହେଲା ମୁକ୍ତ, ସ୍ୱାଧୀନ । କର ବା ମର ।"

ଏହି ସନ୍ଦେଶ ନେଇ ଆମେ ନିଜ ସ୍ଥଳକୁ ଫେରିଆସିଲୁ ଘୋର ଉଦ୍‌ବିଗ୍ନ ମନରେ ।

୩୩ ବର୍ଷ ପରେ, ୧୯୭୫ ମସିହା ଜୁନ୍ ୨୫ ଅର୍ଦ୍ଧରାତ୍ରି ରେ, ୨୬ ସକାଳ ହେବା ଆଗରୁ, ପୁଣି ଅବିକଳ ସେହି ଚିତ୍ର । ଘଟଣାସ୍ଥଳ ବମ୍ବେ ନ ହୋଇ ଦିଲ୍ଲୀ । ଇଂରେଜ ସରକାର ପରିବର୍ତ୍ତେ ଆମ ନିଜର ନିର୍ବାଚିତ ଲୋକପ୍ରତିନିଧି କଂଗ୍ରେସ ସରକାର । ଇଂରେଜ ସରକାର ଜବରଦସ୍ତ ଭୟପ୍ରଦର୍ଶନ କରି ଲୋକଙ୍କୁ ଜବତ୍ କରି ଶାସନ ଚଳାଉଥିଲା । ତାର କାର୍ଯ୍ୟ ଥିଲା ଲୋକଦମନ, ଲୋକଶାସନ ନୁହେଁ । କିନ୍ତୁ କଂଗ୍ରେସ ଶାସନ କିଛି ସ୍ଥାୟୀ ମିଲିଟାରୀ ସେନା ବଳରେ ଅଧିଷ୍ଠିତ ସରକାର ନୁହେଁ—ଲୋକଙ୍କର ନିର୍ବାଚିତ ସରକାର—ଲୋକେ ବସାଇଛନ୍ତି, ଲୋକେ ହଟାଇ ଦେଇ ପାରିବେ । ସେ ସରକାରରେ ପଣ୍ଡିତ ଜବାହାରଲାଲ ନେହେରୁ ଏବଂ ଲାଲବାହାଦୁର ଶାସ୍ତ୍ରୀଙ୍କ ପରେ ତୃତୀୟ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ । ସେ ବି ପରିବର୍ତ୍ତନଶୀଳ । ନିର୍ବାଚନରେ ଭାଗ୍ୟନିୟନ୍ତ୍ରଣ ଜନତା ହାତରେ । ତାର ପୁଣି କି ଭୟ ! ପୁଣି ଲୋକଙ୍କୁ !

ସେମିତି ଅର୍ଦ୍ଧରାତ୍ରି ରେ, ବିଳମ୍ବରେ, ଭଗ୍ନସ୍ୱାସ୍ଥ୍ୟ ସତ୍ତ୍ୱେ ଅଳ୍ପ କ୍ଷଣ ମାତ୍ର ବିଶ୍ରାମକକ୍ଷରେ ନିଦ୍ରା ଯାଇଥିବା ୭୨ ବର୍ଷ ବୟସ୍କ ଜୟପ୍ରକାଶ ନାରାୟଣଙ୍କୁ ପୁଲିସ ଗିରଫ କଲା । ୧୯୪୨ ପରି କେତେ କେଉଁଠି କିଏ ଗିରଫ ହୋଇଗଲେ । ୧୯ ମାସ ଭିତରେ ୧୯୪୨ରୁ ସଂଖ୍ୟା ବଳିପଡ଼ିଲା । ଇଂରେଜ ଅମଳରେ ସ୍ୱାଧୀନତା ସଂଗ୍ରାମ ବେଳେ ଗିରଫର ଖବର ସମ୍ବାଦପତ୍ରରୁ ମିଳୁଥିଲା, ଏଥର ତାହା ବି ବନ୍ଦ । ୧୯୭୫-୭୬ ମସିହାରେ ମୁଁ ଭାରତର ବିଭିନ୍ନ ରାଜ୍ୟ ଗସ୍ତ କରୁଥିବାବେଳେ ଗୋପନରେ ଲୁଚିରହିଥିବା ସଂଗ୍ରାମୀ ଆନ୍ଦୋଳନର କେତେ ସାଥୀଙ୍କୁ ଭେଟିବାର ସୁଯୋଗ ମିଳିଥିଲା । ୧୯୭୬ ମସିହାରେ ବି ଲୋକ ପଚାରିଛନ୍ତି—ଅଶୋକ ମେହେଟ୍ଟା କାହିଁକି ଜେଲ ଯାଇନାହାନ୍ତି ? ଯଦିଓ ଅନ୍ୟମାନଙ୍କ ସହ ଅଶୋକ ମେହେଟ୍ଟା ଗିରଫ ହୋଇ ଜେଲ ଭିତରେ ଥିଲେ, ତଥାପି ସମ୍ବାଦପତ୍ରରେ ପ୍ରକାଶ ନିଷିଦ୍ଧ ଥିବାରୁ ଦୂରରେ ରହୁଥିବା ଲୋକଙ୍କ ପକ୍ଷରେ ସମ୍ବାଦ ଜାଣିବା ମୁସ୍କିଲ ହେଉଥିଲା ।

ଚାରିଆଡ଼େ ଭୟ, ଆତଙ୍କ । କେହି କିଛି ଜାଣିବାର ଉପାୟ ନାହିଁ—କେହି କାହାରିକି ନିର୍ଦ୍ଦେଶ ଦେବାକୁ ନାହିଁ—ସମସ୍ତେ ଅନ୍ଧକାରରେ । ଗାନ୍ଧିଜୀ ଆଗରୁ ସଂଗ୍ରାମର ଘୋଷଣା କରିଥିଲେ ଏବଂ ବହୁ ଆଗରୁ କଂଗ୍ରେସ କମିଟିର ବିଭିନ୍ନ ପ୍ରସ୍ତାବରେ ଏବଂ 'ହରିଜନ'ରେ ଲେଖାଦ୍ୱାରା ଦେଶବାସୀଙ୍କ ମନରେ ଆଲୋଡ଼ନ ସୃଷ୍ଟି କରାଯାଇଥିଲା । ମାତ୍ର ଏଥରକ ତାହା ବି ହୋଇ ନ ଥିଲା । କେହି ସଂଗ୍ରାମ ଘୋଷଣା କରି ନ ଥିଲା କିମ୍ବା କୌଣସି ଦଳ ସେଭଳି ପ୍ରସ୍ତାବ ସୁଦ୍ଧା କରି ନ ଥିଲେ । ସରକାରକୁ ଅଚଳ କରିବାର ଡାକରା ସୁଦ୍ଧା କେହି ଦେଇ ନ ଥିଲେ । ସରକାରକୁ ଅଚଳ କରିବାର ଉଦ୍ୟମକୁ ପ୍ରତିହତ କରିବା ନିମନ୍ତେ ଦମନଅସ୍ତ୍ର ପ୍ରୟୋଗ କରିବାକୁ ପଡ଼ୁଛି ବୋଲି ଇନ୍ଦିରା ଗାନ୍ଧୀ ଯେଉଁ

ଅଭିଯୋଗ ଉଠାଇଥିଲେ, ତାର ଜବାବ ଶ୍ରୀ ଜୟପ୍ରକାଶ ନାରାୟଣ ଚଣ୍ଡୀଗଡ଼ ଜେଲରୁ ଜୁଲାଇ ୨୧ ତାରିଖ ଚିଠିରେ ଲେଖିଛନ୍ତି । ସେ କହୁଛନ୍ତି—

"ତୁମେ ଯେ ସରକାରକୁ ଅଚଳ କରିବାର ଷଡ଼ଯନ୍ତ୍ରର ଅଭିଯୋଗ ଉଠାଇଛ ତାହା ତୁମର ଏକ ଉଦ୍ଭଟ ମିଥ୍ୟା ଉଦ୍‌ଭାବନା—ନିଜର ଏକଚ୍ଛତ୍ରବାଦୀ ଆଇନ କାନୁନ୍‌ର ଯଥାର୍ଥତା ଜଣାଇବା ଲାଗି ଏକ ବାହାନା ।"

× × × × ×

ପ୍ରିୟ ପ୍ରଧାନମନ୍ତ୍ରୀ ! ସରକାରକୁ ଅଚଳ କରିବାର କୌଣସି ଯୋଜନା ହୋଇ ନଥିଲା । ଯଦି କିଛି ବା ଯୋଜନା ଥିଲା ତାହା ହେଉଛି ଏକ କ୍ଷଣକାଳ ଲାଗି ଅତି ସରଳ ଓ ନିର୍ଦ୍ଦୋଷ କଳ୍ପନା—ସୁପ୍ରିମ କୋର୍ଟ ତୁମର ନିବେଦନ ପତ୍ର ବିଚାର କରିବା ପର୍ଯ୍ୟନ୍ତ । ରାମଲୀଲା ମଇଦାନରେ ଜୁନ୍ ୨୫ ତାରିଖରେ ନାନାଜି ଦେଶମୁଖ ଏହା ହିଁ ଘୋଷଣା କରିଥିଲେ । ମୁଁ ଏହି ମର୍ମରେ ସେହି ସନ୍ଧ୍ୟାର ଭାଷଣ ଦେଇଥିଲି । କାର୍ଯ୍ୟକ୍ରମ ଥିଲା, କେତେକ ବଛା ବଛା ବ୍ୟକ୍ତି ତମ ଗୃହ ସମ୍ମୁଖରେ ବା ସମୀପରେ ଯାଇ ସତ୍ୟାଗ୍ରହ କରିବେ । ଦାବି କରିବେ ସୁପ୍ରିମ୍ କୋର୍ଟ ତୁମର ଅପୀଲର ନିଷ୍ପତ୍ତି ଶୁଣାଇବା ପର୍ଯ୍ୟନ୍ତ ତୁମେ ପ୍ରଧାନ ମନ୍ତ୍ରୀ ହୋଇ ରୁହନା—ପଦବୀ ଛାଡ଼ିଦିଅ । ପ୍ରଥମେ ଏପରି ସତ୍ୟାଗ୍ରହ ଦିଲ୍ଲୀରେ ସାତ ଦିନ ଚାଲିଥାଆନ୍ତା ଏବଂ ତାପରେ ବିଭିନ୍ନ ରାଜ୍ୟରେ ଏଭଳି ଚାଲିଥାଆନ୍ତା । ଏଥିରେ ଧ୍ୱଂସମୂଳକ ବିପଜ୍ଜନକ ବିଷୟ କଣ ରହିଲା ମୁଁ ବୁଝିପାରୁନାହିଁ ! ଲୋକ ଯେତେବେଳେ ଅନ୍ୟ କୌଣସି ଉପାୟରେ ଦୁର୍ବାର ଅଭିଯୋଗର ପ୍ରତିକାର ପାଉନାହିଁ, ସେତେବେଳେ ଆଇନ ଅମାନ୍ୟ କରିବା ହେଉଛି ଗଣତନ୍ତ୍ର ପଦ୍ଧତିରେ ତାର ଜନ୍ମଗତ ଅଧିକାର । ସତ୍ୟାଗ୍ରହୀ ସ୍ୱେଚ୍ଛାକୃତଭାବେ ଆଇନସମ୍ମତ ଶାସ୍ତି ଲାଗି ପ୍ରସ୍ତୁତ ଥାଏ ଏବଂ ଗ୍ରହଣ ମଧ୍ୟ କରିଥାଏ । ଗାନ୍ଧିଜୀ ସତ୍ୟାଗ୍ରହର ଏହି ବ୍ୟାପକ ନୂତନରୂପ ଦେଇଛନ୍ତି । ଦୁର୍ଭାଗ୍ୟ ଯେ ଗାନ୍ଧୀଙ୍କ ଭାରତରେ ଏହାର ଅବମାନନା କରାଯାଉଛି ।"

ଜୟପ୍ରକାଶଙ୍କ ନେତୃତ୍ୱରେ ଚାଲିତ ଏହି ଆନ୍ଦୋଳନକୁ କେହି କେହି ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ବୋଲି ଆଖ୍ୟାୟିତ କରିଛନ୍ତି, ୧୯୪୨ ଆନ୍ଦୋଳନକୁ ଶେଷ ଓ ପ୍ରଥମ ସ୍ୱାଧୀନତା ସଂଗ୍ରାମ ରୂପେ ବିଚାର କରି । ଇତିହାସ ଦୃଷ୍ଟିରୁ ଏହା ଯଥାର୍ଥ ନୁହେଁ । ସ୍ୱାଧୀନ ଭାରତରେ ଏ ସଂଗ୍ରାମକୁ ସ୍ୱାଧୀନତା ସଂଗ୍ରାମ କୁହାଯାଇ ନପାରେ । ଏହା ଭାରତରେ ନାଗରିକ ଅଧିକାର ଓ ଗଣତନ୍ତ୍ରର ପୁନଃପ୍ରତିଷ୍ଠା ନିମନ୍ତେ ଏକ ଆନ୍ଦୋଳନ ଏବଂ ନାନା ଦୃଷ୍ଟିରୁ ଅଦ୍ୱିତୀୟ ଓ ବହୁଦୂରପ୍ରସାରୀ ଏହାର ପରିସର ଓ ପରିଣତି ।

୧୯୪୨ ସ୍ୱାଧୀନତା ସଂଗ୍ରାମ ଅପେକ୍ଷା ଏହା ଅଧିକ କଷ୍ଟସାଧ୍ୟ ଏବଂ ଦୁରୂହ ଥିଲା । ଏକ ବିଦେଶୀ ଶକ୍ତି ବିରୁଦ୍ଧରେ ଲଢ଼ାଇ କରିବା ମୁସ୍କିଲ ହୋଇଥିଲେ ସୁଦ୍ଧା ଏଭଳି ଦୁଃସାଧ୍ୟ ନ ଥିଲା । ଲୋକଙ୍କ ମନ ବିଦ୍ରୋହ କରିଥିଲା । ବିଶ୍ୱଯୁଦ୍ଧର ପ୍ରତିକ୍ରିୟାର ସୁଯୋଗ ନିଆଯାଇପାରିଲା । ଦେଶମାତୃକାର ରକ୍ଷାଲାଗି ତ୍ୟାଗ, କଷ୍ଟବରଣ କରିବାର ପରମ୍ପରା

ରହିଛି । ଲୋକଙ୍କ ଭିତରେ ସେଭଳି ଦେଶପ୍ରୀତିର ବହ୍ନି ବରାବର ଜଳୁଥିଲା । ସେ ବିଦ୍ରୋହାନଳକୁ ଗାନ୍ଧୀଜୀ ଠିକଣା ମୁହୂର୍ତ୍ତରେ ଏବଂ ଠିକ୍‌ଭାବରେ ଏକତ୍ର କରି ସେଥିରେ ଇନ୍ଧନ ଦେଇ ବିନା ରକ୍ତପାତରେ ଧ୍ୱଂସ କରାଇଦେଇପାରିଲେ ଏକ ସାମ୍ରାଜ୍ୟବାଦର ବିରାଟ କାୟାକୁ । ତାହା ଚିତାଭସ୍ମ ହୋଇଗଲା । ଲକ୍ଷ ଲକ୍ଷ ନରନାରୀ ଅବାରିତ ସଂଗ୍ରାମ ବହୁକାଳ ବ୍ୟାପୀ ଜାଗ୍ରତ ରଖିଥିଲେ । କେତେବେଳେ ଆଇନ ଅମାନ୍ୟ, ସତ୍ୟାଗ୍ରହ, ବ୍ୟବସ୍ଥା ସଭାରେ ବିରୋଧ କିମ୍ବା ରଚନାତ୍ମକ କାର୍ଯ୍ୟଦ୍ୱାରା ସାମ୍ରାଜ୍ୟବାଦୀ ଶୋଷଣର ନଗ୍ନରୂପ ପଦାରେ ପକାଇଦେଇ, କେତେ ବର୍ଷର ସାଧନା ପରେ ସେ ଡାକ ଦେଇପାରିଲେ "ସରକାରକୁ ଅଚଳ କରିଦିଅ ।"

କିନ୍ତୁ ଜୟପ୍ରକାଶ କେଉଁଠି କେବେହେଲେ ଅଚଳ କରିବାର ଆହ୍ୱାନ ଦେଇ-ନାହାନ୍ତି । ଗାନ୍ଧିଜୀଙ୍କ ଶେଷ , ବାର୍ତ୍ତାଭଳି ଜୟପ୍ରକାଶଙ୍କର ଯେଉଁ ବାର୍ତ୍ତାର ବହୁଳ ପ୍ରଚାର ଗୋପନରେ ଲୋକଙ୍କ ଭିତରେ କରାଯାଇଥିଲା; ସେଥିରେ ଉଲ୍ଲେଖ ଥିଲା—

"ସାରା ଭାରତ ଏକ ଜେଲଖାନାରେ ପରିଣତ ହୋଇଛି । ମୁଁ ଏହା କହିବାର କାରଣ ହେଉଛି, ସାଧାରଣ ନାଗରିକର ସ୍ୱାଧୀନତା କାଢ଼ି ନିଆଯାଇଛି ଏବଂ କେନ୍ଦ୍ରରେ ଏକ ଏକଛତ୍ରବାଦ ସ୍ଥାପିତ ହୋଇଛି । ଉଚ୍ଚ ନୀଚ ଯେଉଁ ଆସନର ଅଧିକାରୀ ହୋଇଥାଆନ୍ତୁ ପଛକେ, ପ୍ରତ୍ୟେକ ଦେଶପ୍ରେମୀ ଓ ସ୍ୱାଧୀନତାକାମୀ ଭାରତୀୟର କର୍ତ୍ତବ୍ୟ ହେଉଛି ଏଭଳି ପରିସ୍ଥିତିକୁ ବଦଳାଇବା । ପ୍ରତ୍ୟେକକୁ ନିଜଲାଗି ନିଷ୍ପତ୍ତି ନେବାକୁ ହେବ । ଭୟ ତେଜି ଏହା ବିରୁଦ୍ଧରେ ଯେକୌଣସି କାର୍ଯ୍ୟ କରାଯିବ, ତାହା ଏକଛତ୍ରବାଦର ମୃତ୍ୟୁ କବର ଉପରେ ହେବ ଆଉ ଏକ ମଜଭୁତ କଣ୍ଟା ।"

ତେଣୁ ମୁଖ୍ୟତଃ ୧୯୭୫ ଜୁନ୍ ପରଠାରୁ ଯେଉଁ ଲଢ଼ାଇ ହେଲା, ତାହା ଥିଲା ଏକଛତ୍ରବାଦ କବଳରୁ ଦେଶରକ୍ଷା ଏବଂ ଗଣତନ୍ତ୍ରର ପୁନରୁଦ୍ଧାର । ଏହା ସମ୍ପୂର୍ଣ୍ଣ କ୍ରାନ୍ତି ନୁହେଁ, ସମ୍ପୂର୍ଣ୍ଣ କ୍ରାନ୍ତିର ଅୟମାରମ୍ଭ । ତେଣୁ ଗିରଫ ହେଲାବେଳେ ରାତି ଅଧରେ ଯେତେ-ବେଳେ ଗାନ୍ଧି-ଶାନ୍ତି-ପ୍ରତିଷ୍ଠାନର ସମ୍ପାଦକ ରାଧାକୃଷ୍ଣ ଜୟପ୍ରକାଶ ନାରାୟଣଙ୍କୁ ଦେଶବାସୀଙ୍କ ଉଦ୍ଦେଶ୍ୟରେ କିଛି ବାର୍ତ୍ତା ଦେବା ନିମନ୍ତେ ଅନୁରୋଧ କରନ୍ତି; ସେ କେବଳ କହିଥିଲେ—"ବିନାଶକାଳେ ବିପରୀତବୁଦ୍ଧି ।"

# ଗଣତନ୍ତ୍ର ଉପରେ ବିପଦ

ଏଭଳି ବିପଦ୍‌ଜନକ ବୁଦ୍ଧି କେବଳ ଇନ୍ଦିରା ଗାନ୍ଧୀଙ୍କର ହୋଇ ନ ଥିଲା । ଇତିହାସରେ ଭୂରି ଭୂରି ଦୃଷ୍ଟାନ୍ତ ରହିଛି—ସବୁ ବିଜେତା ଓ ଏକନାୟକଙ୍କୁ ଏହିପରି ବ୍ୟାଧି ବରାବର ଘୋଟିଛି । ଆଲେକ୍‌ଜାଣ୍ଡର, ନେପୋଲିୟନ ବୋନାପାର୍ଟ, ଆଡ଼ଲଫ୍ ହିଟଲର, ବେନିତୋ ମୁସୋଲିନୀ, ଜୋଶେଫ ଷ୍ଟାଲିନଙ୍କର ଜୀବନୀ ଓ ଇତିହାସ ଆମ ଆଖି ଆଗରେ ରହିଛି ଏବଂ ସେମାନଙ୍କର ପତନ କିଭଳି ଘଟିଲା, ତାହା କାହାରିକୁ ଅବିଦିତ ନାହିଁ । କିନ୍ତୁ ଏମାନେ କ୍ଷମତା ହାସଲ କରିଥିଲେ ଓ ସର୍ବମୟକର୍ତ୍ତା ହୋଇପାରିଥିଲେ ସାମରିକ ଶକ୍ତି ପ୍ରୟୋଗରେ ଏବଂ ହିଂସାତ୍ମକ ବିପ୍ଳବ ଜରିଆରେ । ସେମାନଙ୍କ ଅପେକ୍ଷା ଅଧିକ ପରାକ୍ରମଶାଳୀ ବ୍ୟକ୍ତି ବା ଦେଶ ସେମାନଙ୍କୁ ଅଭିଭୂତ କରିପକାଇଲା; ସେମାନଙ୍କର ପତନ ଘଟାଇ ଦେଶକୁ ଧ୍ୱଂସ-ମୁଖରୁ ରକ୍ଷା କରିଥିଲା । କେତେକ ଦେଶରେ ସେମାନଙ୍କ ପ୍ରଚଳିତ ପଦ୍ଧତି ଅକ୍ଷୁଣ୍ଣ ରହିଲା; କେବଳ ଘୋର ଅତ୍ୟାଚାରୀ ବା ପ୍ରବଳପ୍ରତାପୀର ଅବସାନ୍ ଘଟିଲା । କେତେକ କ୍ଷେତ୍ରରେ ଏହି ଘଟପରିବର୍ତ୍ତନ ସଙ୍ଗେ ସଙ୍ଗେ ବିପ୍ଳବ ସଂଘଟିତ ହୋଇ ଦେଶର ରାଜନୀତିକ ବିବର୍ତ୍ତନ ଘଟିଛି । ଭିନ୍ନ ଭିନ୍ନ ଦେଶରେ ଏହା ଭିନ୍ନ ରୂପରେ ପ୍ରକଟିତ ହୋଇଛି । ଆମ ଦେଶର ଚତୁର୍ଦ୍ଦିଗରେ ଏହି ବିଂଶଶତାବ୍ଦୀରେ ସ୍ୱାଧୀନତା ଲାଭ କରିଥିବା ଦେଶମାନଙ୍କରେ ସେହିପରି ବିରାଟ ପରିବର୍ତ୍ତନ ମାନ ଘଟିଛି; ମାତ୍ର କେଉଁଠି ସ୍ଥିରତା ନାହିଁ, ଶାନ୍ତି ନାହିଁ । ଯେତେ ଅସ୍ଥିରତା ଓ ଅଶାନ୍ତି ଅସନ୍ତୋଷ ବଢ଼ିଛି, ଉପସ୍ଥିତ ଶାସକ ସେତିକି ମନମୁଖୀ ଓ ଅସହିଷ୍ଣୁ ପାଲଟିଛନ୍ତି; ଦେଶରେ ଅଶାନ୍ତି ଓ ବିଦ୍ରୋହ ଲାଗିରହିଛି ।

ଅତି ଲୋକପ୍ରିୟତାରୁ କର୍ତ୍ତୃତ୍ୱର ଅଭିଳାଷ ଜାଗ୍ରତ ହୁଏ; ତହିଁରୁ ପୁଣି ଏକଚ୍ଛତ୍ର-ଶାସକ ଏବଂ ତା ପଛକୁ ଆସେ ବ୍ୟକ୍ତିଗତ ଅଧିନାୟକତ୍ୱ । ଏହି ବାଟରେ ବହୁ ରଥୀ ଇତିହାସରେ ଚାଲିଛନ୍ତି । ଇନ୍ଦିରା ଗାନ୍ଧୀଙ୍କ ପରି ବ୍ୟକ୍ତି ବି ଖାଲି ପୂର୍ଣ୍ଣକର୍ତ୍ତୃତ୍ୱ ହାସଲ କରିବାକୁ ଚାହିଁଲେ ନାହିଁ, ଏ ଦେଶରେ ଏକ ପାରିବାରିକ ଏକଚ୍ଛତ୍ରବାଦ ପ୍ରତିଷ୍ଠା କରିବା ନିମନ୍ତେ ଉଦ୍ୟମ କରୁଥିଲେ । ତାଙ୍କ ପିତା ଜବାହରଲାଲଜୀ ଯେ କର୍ତ୍ତୃତ୍ୱାଭିଳାଷୀ ନ ଥିଲେ କହି ହେବ ନାହିଁ । ମାତ୍ର ଗଣତନ୍ତ୍ରର ପୂଜାରୀ ଥିବାରୁ "ଅତି ଲୋକପ୍ରିୟତା ମଣିଷ ମନରେ ଏକଚ୍ଛତ୍ରବାଦ ଭାବ ସୃଷ୍ଟି କରିପାରେ" ବୋଲି ସେ ଦେଶବାସୀଙ୍କି କଂଗ୍ରେସ ପାର୍ଟି କ୍ଷମତାକୁ ଆସିବାର ବହୁପୂର୍ବରୁ ସାବଧାନ କରାଇଦେଇଥିଲେ । ନିଜେ ବେନାମୀ ପ୍ରବନ୍ଧ ଲେଖି ଏହାର ଦୋଷଗୁଣ ବର୍ଣ୍ଣନା କରି ଯାଇଛନ୍ତି । ସେ ୧୭ ବର୍ଷ କାଳ ଦେଶର ପ୍ରଧାନମନ୍ତ୍ରୀ ଓ ନେତା ହୋଇ ରହିଲେ । ଇନ୍ଦିରା ଗାନ୍ଧୀ ବରାବର ତାଙ୍କ ପାଖେ ପାଖେ ରହିଆସିଛନ୍ତି ଏବଂ ସକଳ ସୁବିଧା ପାଉଥାଆନ୍ତି; ମାତ୍ର କେବେହେଲେ ଶାସନ କାର୍ଯ୍ୟରେ ବା ତଦନୁରୂପ ସଂଗଠନରେ ସେ ଇନ୍ଦିରା ଗାନ୍ଧୀଙ୍କୁ ପ୍ରଶ୍ରୟ ଦେଇ ନ ଥିଲେ । କେବଳ ଥରେ ତାଙ୍କର ଇଚ୍ଛାବିରୁଦ୍ଧରେ

ଇନ୍ଦିରା ଗାନ୍ଧୀ କଂଗ୍ରେସ ଦଳର ସଭାନେତ୍ରୀ ହୋଇପାରିଥିଲେ; କିନ୍ତୁ ଏହା କ୍ଷଣକାଳ ମାତ୍ର ରହିଥିଲା । ଜବାହରଲାଲ ପ୍ରଧାନମନ୍ତ୍ରୀ ଥିବାବେଳେ ତାଙ୍କର କନ୍ୟା ଶାସକଦଳର ସଭାପତି ହେବାଦ୍ୱାରା ଯେଉଁ ଭାବର ସୂଚନା ମିଳୁଥିଲା, ତାହା ନେହେରୁ ନାପସନ୍ଦ କରିଥିଲେ । ସେଇଥି ସକାଶେ ନେହେରୁ ବଞ୍ଚିଥିବା ପର୍ଯ୍ୟନ୍ତ ଇନ୍ଦିରା ଗାନ୍ଧି କେବେହେଲେ ପାର୍ଲିଆମେଣ୍ଟର ମେମ୍ବର ବି ହୋଇପାରି ନ ଥିଲେ । ଲାଲବାହାଦୁର ଶାସ୍ତ୍ରୀ ନେହେରୁଙ୍କ ମୃତ୍ୟୁ ପରେ ପ୍ରଧାନମନ୍ତ୍ରୀ ହେବାରୁ ତାଙ୍କୁ ବେ-ମେମ୍ବରୀ ମନ୍ତ୍ରୀରୂପେ ନିଜ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେଇଥିଲେ । କିନ୍ତୁ ଅଧିକ ଲୋକପ୍ରିୟତା ଇନ୍ଦିରା ଗାନ୍ଧୀଙ୍କ ଭିତରେ ଠିକ୍ ବିପରୀତ ଭାବ ସୃଷ୍ଟି କଲା । ସେ ନିଜର ବ୍ୟକ୍ତିଗତ ପ୍ରତିଷ୍ଠା, ପ୍ରଭାବ ଓ କର୍ତ୍ତୃତ୍ୱ ଅଧିକରୁ ଅଧିକଭାବରେ ବଢ଼ାଇବାରେ ଲାଗିଲେ । ୧୯୭୧ରେ କଂଗ୍ରେସ ଦଳର ଅପ୍ରତ୍ୟାଶିତ ନିର୍ବାଚନ ବିଜୟ ଏବଂ ୧୯୭୨ରେ ବାଙ୍ଗଲାଦେଶର ବିଜୟ ତାଙ୍କର ଏ ଅହଂକାର ଓ ଅଭିମାନକୁ ଆହୁରି ତୀବ୍ରତର ଓ ବ୍ୟକ୍ତିପ୍ରାଧାନ୍ୟ ପ୍ରତିଷ୍ଠା ଲାଗି ଉତ୍ସାହିତ କଲା । ସେ ଚିନ୍ତା କରିବାକୁ ଲାଗିଲେ ଯେ ତାଙ୍କର ସମକକ୍ଷ କେହି ନାହିଁ ଏବଂ ତାଙ୍କ ବିନା ଦେଶ ଆଉ ଚାଲିପାରିବ ନାହିଁ । କଂଗ୍ରେସର ୧୯୬୯ ବିଭାଜନ ପରେ ତାଙ୍କର ଆଉ କେହି ପ୍ରତିଦ୍ୱନ୍ଦ୍ୱୀ ନ ଥିଲେ ଏବଂ ସେ କଂଗ୍ରେସ ପାର୍ଟି ଓ ଷ୍ଟେଟ ଭିତରେ ଆଉ କୌଣସି ଭେଦ ନ ରଖି ଏକ ପ୍ରକାର ସୋଭିଏଟ୍ ମଡେଲ୍‌ରେ ଦେଶର ଶାସନ ଉପରେ ନିଜର ବ୍ୟକ୍ତିଗତ ଅଧିକାର କାଏମ୍ କରିଥିଲେ । ପଣ୍ଡିତ ନେହେରୁଙ୍କ ଅମଳରୁ କଂଗ୍ରେସ ବୋଇଲେ ଭାରତ ବୋଲି ନେହେରୁ ଯେଉଁ ପରମ୍ପରା ସୃଷ୍ଟି କରିଯାଇଥିଲେ, ଏବେ ସେହି ପରମ୍ପରାକୁ ଆହୁରି ଟିକିଏ ତୀକ୍ଷ୍ଣ କରି ଇନ୍ଦିରା ବୋଇଲେ କଂଗ୍ରେସ ବୋଲାଇଲା । ନିର୍ବାଚନରେ କଂଗ୍ରେସକୁ ଶକ୍ତିଶାଳୀ କରିବା ପରିବର୍ତ୍ତେ ଇନ୍ଦିରା ଗାନ୍ଧୀଙ୍କ ହାତମୁଠା ଟାଣ କରିବାର ଡାକରା ଦିଆଗଲା । ଏପରିକି ନିର୍ବାଚିତ ପ୍ରତିନିଧି ଲୋକଙ୍କ ପାଖରେ ଦାୟୀ ନ ହୋଇ ଇନ୍ଦିରା ଗାନ୍ଧୀଙ୍କ ପାଖରେ ଦାୟୀ ରହିବାର ତତ୍ତ୍ୱ ପ୍ରଚଳିତ ହେଲା ଏବଂ ତାଙ୍କ ଆଜ୍ଞାରେ ସେମାନେ ଇସ୍ତଫା ଦେବାକୁ ବାଧ୍ୟ ହେବାର ପରମ୍ପରା ଚାଲିଲା । ରାଜ୍ୟର ମୁଖ୍ୟମନ୍ତ୍ରୀ ରାଜ୍ୟ ବିଧାୟକ ଦଳଦ୍ୱାରା ନିର୍ବାଚିତ ନହୋଇ ଇନ୍ଦିରା ଗାନ୍ଧୀଙ୍କ ଦ୍ୱାରା ମନୋନୀତ ହେଲେ । ପ୍ରଧାନମନ୍ତ୍ରୀ ପଦକୁ ସର୍ବାପେକ୍ଷା ଉଚ୍ଚସ୍ଥାନ ଦିଆଗଲା—ଏପରିକି ରାଷ୍ଟ୍ରପତି ପଦବୀକୁ ପ୍ରଧାନମନ୍ତ୍ରୀଙ୍କଠାରୁ ନ୍ୟୂନ କରି ଦିଆଗଲା—ପ୍ରଥମେ କାର୍ଯ୍ୟକ୍ଷେତ୍ରରେ, ପରେ ବିଧିବଦ୍ଧ ପାର୍ଲିଆମେଣ୍ଟରେ ସମ୍ବିଧାନ ସଂଶୋଧନ କରାଯାଇ । ତେଣୁ ପ୍ରଧାନମନ୍ତ୍ରୀ ସର୍ବମୟ କର୍ତ୍ତ୍ରୀ ହେଲେ, ଯେମିତି ସୋଭିଏଟ୍ ରୁଷରେ ପାର୍ଟି ସେକ୍ରେଟାରୀ ହୋଇଥାଆନ୍ତି । ତେଣୁ ପରେ ଦେବକାନ୍ତ ବଡ଼ୁଆ 'ଇନ୍ଦିରା ବୋଇଲେ ଭାରତ ଓ ଭାରତ ବୋଇଲେ ଇନ୍ଦିରା' ବୋଲି ଯେ ସ୍ଲୋଗାନ୍ ଉଠାଇଲେ, ଏହା ବଡ଼ୁଆଙ୍କ ମସ୍ତିଷ୍କ ବିକୃତି ନୁହେଁ; ଏହା ଥିଲା ଏକ ବାସ୍ତବିକ ସ୍ଥିତିର ପ୍ରକାଶ୍ୟ ସ୍ୱୀକାରୋକ୍ତି ।

କ୍ଷମତା ପାଇଲେ ଲୋକ ବ୍ୟଭିଚାର କରେ ଏବଂ ଅଖଣ୍ଡ କ୍ଷମତାରେ ସମ୍ପୂର୍ଣ୍ଣ ବ୍ୟଭିଚାରୀ ପାଲଟି ଯାଏ । ତେଣୁ ରାଜନୀତି ଓ ଶାସନ କ୍ଷେତ୍ରରେ ସର୍ବତ୍ର ଭ୍ରଷ୍ଟାଚାର

ବ୍ୟାପିଗଲା ଏବଂ ସମାଜର କୌଣସି ସ୍ତର ଏଥିରୁ ବାଦ୍ ପଡ଼ିଲା ନାହିଁ ।

ଦେଶର ଆର୍ଥିକ ଦୁଃସ୍ଥିତି ଦାନବରୂପେ ଖରାପ ଆଡ଼କୁ ଗତି କରୁଥିଲା । ମୁଷ୍ଟିମେୟ ଧନିକ ଶ୍ରେଣୀଙ୍କ ସାଥିରେ ଏକ ରାଜନୀତିକ ଦସ୍ୟୁଗୋଷ୍ଠୀ ପ୍ରକାଶ୍ୟ ଭାବରେ ଲୁଣ୍ଠନ କରିବାକୁ ଲାଗିଲେ । ଦେଶରେ ଖାଲି କ୍ଷମତା ଗୋଟିଏ ବ୍ୟକ୍ତି ହାତରେ ଠୁଳ ହେଲା ନାହିଁ; ଧନଦୌଲତ ମଧ୍ୟ କେନ୍ଦ୍ରୀଭୂତ ହୋଇଗଲା । କେତେକ ବ୍ୟକ୍ତି ଓ ବେପାରୀ ଗୋଷ୍ଠୀ ହାତରେ ଦେଶରେ ଦାରିଦ୍ର୍ୟ, ବେକାରି, ଅଭାବ, ଅସୁବିଧା ବୃଦ୍ଧି ପାଇଲା ଏବଂ ଶତକଡ଼ା ୭୦ ଲୋକ ଦାରିଦ୍ର୍ୟର ସୀମାରେଖା ତଳକୁ ପଡ଼ିଗଲେ ।

ଦେଶର ବିରୋଧୀ ଶକ୍ତି ବିଚ୍ଛିନ୍ନ ଓ ଦୁର୍ବଳ ହୋଇଯାଇଥିଲା । ଜୟପ୍ରକାଶଜୀଙ୍କ ଭାଷାରେ କଂଗ୍ରେସ ଓ ବିରୋଧୀଦଳଗୁଡ଼ିକ ଉଭୟେ ଏ ଦୋଷରେ ଦୋଷୀ । ସମସ୍ତଙ୍କର ଅଭିମୁଖ୍ୟ ଏକ । ସେହି ଦୃଷ୍ଟିରୁ ବିଚାର କଲେ ଦେଶରେ ପ୍ରତିବାଦ ବା ଭିନ୍ନମତ ପ୍ରକାଶ ପାଉନଥିଲା—ଯାହା ବା ଥିଲା ଅତି କ୍ଷୀଣ ଓ ଦୁର୍ବଳ । କଂଗ୍ରେସ ପାର୍ଟିର ଜୀବନ୍ତ-ମୃତ୍ୟୁ ବହୁ ଆଗରୁ ହୋଇସାରିଥିଲା । ଏଭଳିକି ଯେଉଁ ଜଗଜ୍ଜୀବନ ରାମଙ୍କୁ ଏକଚ୍ଛତ୍ରବାଦର ବଡ଼ ବିରୋଧୀ ବୀରଭାବରେ ପୂଜା କରାଯାଉଛି, ସେ ଖାଲି ଏମର୍ଜେନ୍‌ସିକୁ ସମର୍ଥନ କରି ପାର୍ଲିମେଣ୍ଟରେ ପ୍ରସ୍ତାବ ଆଗତ କରିନଥିଲେ; ଏମର୍ଜେନ୍‌ସିର ବହୁ ପୂର୍ବରୁ ୧୯୭୫ ମାର୍ଚ୍ଚ ୭ ତାରିଖରେ କଲିକତାରେ ଭାଷଣ ଦେଇ କହିଲେ—"ଭାରତର ସ୍ଥାୟିତ୍ୱ ଜୟପ୍ରକାଶଙ୍କ ଆନ୍ଦୋଳନ ଫଳରେ ବିପଦଗ୍ରସ୍ତ ହୋଇପଡ଼ିଛି ।" ସବୁଠାରୁ ବିସ୍ମୟକର ହେଉଛି, ପାର୍ଲାମେଣ୍ଟ ଆଗରେ ମାର୍ଚ୍ଚ ୭ ତାରିଖରେ ଯେଉଁ ଦାବିପତ୍ର ଦାଖଲ କରାଯାଇଥିଲା । ସେ ବିଷୟ ଉଲ୍ଲେଖ କରି କହିଥିଲେ, "ପାର୍ଲିମେଣ୍ଟକୁ ଜୟପ୍ରକାଶ ଓ ତାଙ୍କ ସାଥୀମାନଙ୍କର ଯାତ୍ରା ହେଉଛି ଦେଶର ସମ୍ବିଧାନ ପ୍ରତି ଅପମାନ ।" ମାର୍ଚ୍ଚ ୯ ତାରିଖରେ ଉତ୍ତର ପ୍ରଦେଶର ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ବହୁଗୁଣା ଘୋଷଣା କଲେ ଯେ, ଜୟପ୍ରକାଶଙ୍କଦ୍ୱାରା ପରିଚାଳିତ ଆନ୍ଦୋଳନ ଦେଶଲୋକଙ୍କ ଭିତରେ ନୈରାଶ୍ୟ ଖେଳାଇ ଦେଇଛି ।

ଯେତେବେଳେ ଏଲାହାବାଦ ହାଇକୋର୍ଟ ରାୟରେ ଇନ୍ଦିରାଗାନ୍ଧୀଙ୍କ ନିର୍ବାଚନ ଅସିଦ୍ଧ ଘୋଷଣା କରାଗଲା ଏବଂ ଦେଶସାରା ଇନ୍ଦିରାଗାନ୍ଧୀ ସୁପ୍ରିମକୋର୍ଟରେ ତାଙ୍କ ଅପିଲ ନିଷ୍ପତ୍ତି ହେବା ପର୍ଯ୍ୟନ୍ତ ପ୍ରଧାନମନ୍ତ୍ରୀ ପଦ ଛାଡ଼ିବା ନିମନ୍ତେ ଚାରିଆଡ଼ୁ ଦାବି ଓ ପ୍ରବଳ ଆନ୍ଦୋଳନ ଜାରି ରହିଛି; ସେତେବେଳେ ଜୁନମାସ ୧୮ ତାରିଖରେ କଂଗ୍ରେସ ପାର୍ଲିମେଣ୍ଟାରି ପାର୍ଟିରେ ଜଗଜ୍ଜୀବନ ରାମ ପ୍ରସ୍ତାବ ଆଗତ କରୁଛନ୍ତି ଯେ ଆମମାନଙ୍କର ଇନ୍ଦିରାଗାନ୍ଧୀଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ଏବଂ ତାଙ୍କର ନେତୃତ୍ୱ ବରାବର ଦେଶରେ ରହିବା ଉଚିତ ଏବଂ ତାଙ୍କ ପ୍ରଧାନମନ୍ତ୍ରିତ୍ୱ ବିନା ଏ ଜାତି ବଞ୍ଚିପାରିବ ନାହିଁ । ଜଗଜ୍ଜୀବନ ରାମଙ୍କର ଏଭଳି ନୈତିକ ଅଧୋଗତି ଓ ମନ୍ତ୍ରୀପଦରେ କୌଣସିପ୍ରକାରେ ରହିବା ମନୋବୃତ୍ତିକୁ ଜୟପ୍ରକାଶ ନାରାୟଣ ନିନ୍ଦା କରିଛନ୍ତି । ତାଙ୍କର କାରାଗାରର କାହାଣୀ ପୁସ୍ତକର ପୃଷ୍ଠା ୮୧ ରେ ଲେଖା ଅଛି- -ଜଗଜ୍ଜୀବନବାବୁ ଯେ ସମ୍ପୂର୍ଣ୍ଣରୂପେ କଙ୍କର ପରି ହୋଇଯାଇଛନ୍ତି ଦେଖି ମୋ ମନରେ

ଦୁଃଖ ହେଉଛି । ପୁଣି ସେପ୍‌ଟେମ୍ବର ୨୯ ତାରିଖରେ ନିଜ ଡାଏରୀରେ ଲେଖିଛନ୍ତି—"ଟ୍ରିବ୍ୟୁନ୍ ସମ୍ବାଦପତ୍ରରେ ଜଗଜ୍ଜୀବନ ରାମଙ୍କର ଭାଷଣ ଚିନକଲମ ଶିରୋନାମା ହୋଇ ପ୍ରକାଶିତ ହୋଇଛି । ଜଗଜ୍ଜୀବନ ରାମ ବଡ଼ ଜୋର୍ ଦେଇ କହିଛନ୍ତି କୋଡ଼ିଏ ଦଫା କାର୍ଯ୍ୟକ୍ରମର ସଫଳତା ନିମନ୍ତେ ପ୍ରଧାନମନ୍ତ୍ରୀଙ୍କ ନେତୃତ୍ୱ ଦେଶ ପକ୍ଷରେ ଅନିବାର୍ଯ୍ୟ ଓ ନିଶ୍ଚିତ ରହିବା ବାଞ୍ଛନୀୟ । ଏପରି ଉଚ୍ଚସ୍ୱରରେ ପ୍ରକାଶ୍ୟରେ ପ୍ରଭୁଭକ୍ତି କାହିଁକି ଦେଖାଉଛନ୍ତି ! ଏହା ପଶ୍ଚାତ୍‌ରେ କିଛି ଲୁକ୍‌କାୟିତ ଲିପ୍‌ସା ରହିଛି ନା ଏହା କେବଳ ଥରକୁଥର ପ୍ରଭୁଭକ୍ତ ପ୍ରକାଶ କରିବାର ଏକ ଗତାନୁଗତିକ ଧାରା ! ଜଗଜ୍ଜୀବନ ରାମଙ୍କ ପରି ବ୍ୟକ୍ତି ଯେ ପ୍ରକାଶ୍ୟଭାବରେ ଉଚ୍ଚସ୍ୱରରେ ନିଜର ପ୍ରଭୁଭକ୍ତିର ପ୍ରଦର୍ଶନ କରୁଛନ୍ତି, ଏଥିରେ ସେ କେତେଦୂର ଖୋସାମଦିଆ ହେଲେଣି ଭାବିହେଉନାହିଁ; ବିଶ୍ୱାସ କରିବା କଷ୍ଟକର ହେଉଛି । କି ଅଧୋଗତି !"

ଇନ୍ଦିରା ହିଁ ଭାରତ କିମ୍ବା ଇନ୍ଦିରା ଯେ ନିଜକୁ ଦେଶ ଓ ଜାତି ଅପେକ୍ଷା ଅଧିକ ବୃହତ୍ ଏବଂ ତାଙ୍କର ପତନରେ ଏ ସାରା ଦେଶ ଓ ଜାତିର ପତନ ହୋଇଯିବ ବୋଲି ଆସ୍ଫାଳନ କଲେ, ସେଥିରେ ବିସ୍ମିତ ହେବାର କିଛି ନାହିଁ । ଇନ୍ଦିରା ପ୍ରଶ୍ନ ଉଠାଇଲେ—ଦେଶ ବଡ଼ ନା ଗଣତନ୍ତ୍ର ବଡ଼ ? ଦେଶ ରହିଲେ ଗଣତନ୍ତ୍ର । ଇନ୍ଦିରାଙ୍କ ବ୍ୟକ୍ତିତ୍ୱହିଁ ଦେଶ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ତେଣୁ ତାଙ୍କୁ ହଟାଇବାଲାଗି ଦାବି କରିବା ଓ ଆନ୍ଦୋଳନ କରିବା ଖାଲି ଅଗଣତାନ୍ତ୍ରିକ ନୁହେଁ, ଦେଶଦ୍ରୋହୀ କାର୍ଯ୍ୟରୂପେ ଗ୍ରହଣ କରାଯିବ ।

ନେହେରୁ କେବେ ନିଜକୁ ଦେଶ ଅପେକ୍ଷା ବଡ଼ ଭାବି ନଥିଲେ କିମ୍ବା ବ୍ୟକ୍ତି-ନେତୃତ୍ୱ ସ୍ଥାପନାର ଚେଷ୍ଟା କରି ନଥିଲେ । ଏପରି ବ୍ୟକ୍ତିତନ୍ତ୍ର ଲେନିନ୍, ଗାନ୍ଧୀ ବା ନେହେରୁଙ୍କର ଲୋଡ଼ା ହେଉ ନଥିଲା । କ୍ଷୁଦ୍ର ଓ ଦୁର୍ବଳ ନେତାହିଁ ଏମିତି ସବୁ ପନ୍ଥା ଅବଲମ୍ବନ କରେ ଓ ଚାରିଆଡ଼େ ଖୋସାମତ୍‌କାରୀ ସୃଷ୍ଟି କରେ—ନିଜର ଆସ୍ଥାନ ଦୃଢ଼ କରିବା ନିମନ୍ତେ ।

ଜୟପ୍ରକାଶ ଏଭଳି ଉକ୍ତିର ଦୃଢ଼ ପ୍ରତିବାଦ କରିଛନ୍ତି । ସେ ୧୯୭୫ ଜୁଲାଇ ୨୧ରେ ପ୍ରଧାନମନ୍ତ୍ରୀଙ୍କ ନିକଟକୁ ଦେଇଥିବା ପତ୍ରରେ ଉଲ୍ଲେଖ କରିଛନ୍ତି —

"ତୁମେ ଏ ବୃଦ୍ଧ ଲୋକର ପରାମର୍ଶ ଗ୍ରହଣ କରିବ କି ? ଦେଶର ଜନକ, ବିଶେଷ ଭାବରେ ତୁମର ଉଦାରମନା ପିତା ଓ ଅନ୍ୟ ନେତାମାନେ, ଯେଉଁ ଭିତ୍ତି ପକାଇଯାଇଛନ୍ତି ତାକୁ ଧ୍ୱଂସ କରନା । ତୁମେ ଯେଉଁ ପଥ ଧରିଛ, ସେଥିରେ କେବଳ ବିବାଦ ଓ କଷ୍ଟଭୋଗ ବ୍ୟତୀତ ଆଉ କିଛି ହେବନାହିଁ । ତୁମେ ଏକ ବିରାଟ ପରମ୍ପରା, ମହତ୍ ମୂଲ୍ୟବୋଧ ଏବଂ କାର୍ଯ୍ୟକାରୀ ଗଣତନ୍ତ୍ରର ଉତ୍ତରାଧିକାରୀ ହୋଇଛ । ସେ ସବୁକୁ ଭାଙ୍ଗି ଚୁର୍‌ମାର କରିଦେଇ ଯାଅ ନାହିଁ । ସେ ସବୁଗୁଡ଼ିକୁ ପୁଣି ଏକତ୍ର କରିବା ନିମନ୍ତେ ବହୁକାଳ ଲାଗିଯିବ । କିନ୍ତୁ ମୋ ମନରେ ତିଳେହେଲେ ସନ୍ଦେହ ନାହିଁ ଯେ ଏହା ଦିନେ ନା ଦିନେ ଏକତ୍ର ହୋଇଯିବ । ଯେଉଁ ଜାତି ବ୍ରିଟିଶ ସାମ୍ରାଜ୍ୟବାଦ ସହ ଲଢ଼ାଇକରି ସଫଳତା ହାସଲ କରିପାରିଲା ଏବଂ ତାକୁ ପଦାନତ କରାଇପାରିଲା, ସେ ବ୍ୟକ୍ତି ଓ ଜାତି କେବେହେଲେ ଅନିର୍ଦ୍ଦିଷ୍ଟ କାଳ ଲାଗି

ଏକଛତ୍ରବାଦର ଏ ଲଜ୍ଜା ଓ ଅପମାନକୁ ସହ୍ୟ କରି ପାରେନା । ଯେତେ ଦବାଇଚପାଇ ରଖିଲେ ସୁଦ୍ଧା ମଣିଷର ଭାବଶକ୍ତିର ପରାଜୟ ହୋଇପାରେନା । ତୁମେ ନିଜର ବ୍ୟକ୍ତିଗତ ନେତୃତ୍ୱ ପ୍ରତିଷ୍ଠା କରି ଏହି ଭାବଧାରାକୁ ଆହୁରି ଭିତରକୁ ଚୁପିଦେଇଛ । ଗଭୀର କବରରେ ଏହା ସୁପ୍ତ; କିନ୍ତୁ କବରରୁ ଏହା ଦିନେ ଜାଗିଉଠିବ ହିଁ ଉଠିବ । ସୋଭିଏଟ ରୁଷରେ ମଧ୍ୟ ଏହି ସବୁ ଶକ୍ତି ପୁଣି ମୁଣ୍ଡ ଟେକି ଉଠି ବାହାରିଲେଣି ।"

ଶାସକଙ୍କର ମନୋଭାବ ଉପରେ ଆନ୍ଦୋଳନର ଗତି ନିର୍ଭର କରେ । ଯଦି ଧନଶାଳୀ ତରଫରୁ ବିତ୍ତ ବା ସମ୍ପଦ ରକ୍ଷାକରିବା ନିମନ୍ତେ ଆକ୍ରମଣ ହୁଏ, ତେବେ ତାହା ବିରୁଦ୍ଧରେ ଯେଉଁ ଆନ୍ଦୋଳନ ହେବ, ତାର ମୂଳତତ୍ତ୍ୱ ହେବ ସମାନତା ଆଣିବା । ସେମିତି କ୍ଷମତା ଓ ଦର୍ପ ଦେଖାଇ ଆନ୍ଦୋଳନକୁ ଦବାଇବାର ଉଦ୍ୟମ ହେଲେ ତାର ବିରୋଧୀ ଶକ୍ତି ରୂପେ ଛିଡ଼ାହେବ ମୁକ୍ତି ସ୍ୱାଧୀନତା । ଏଭଳି ହୋଇପାରିଲେ ଯାଇ ସଭ୍ୟତାର ଆଲୋକ ସର୍ବଦା ଉଦ୍‌ଭାସିତ ହୋଇ ରହିଥିବ । ଏହା ହେଉଛି ସାଧାରଣ ପ୍ରାକୃତିକ ବିଧି । ସାଧାରଣ ମାନବ ସମାଜ ଆଗରେ ଏଭଳି ସ୍ୱାଧୀନତା ଏକ ଅତ୍ୟାଚାରର ପୃଷ୍ଠପୋଷକ ଭାବରେ ଛିଡ଼ାହୁଏ, ତେଣୁ ସେ ଅତ୍ୟାଚାରୀ ଓ ଅତ୍ୟାଚାରକୁ ଲୋପ କରିବା ନିମନ୍ତେ ଦୃଢ଼ ହୋଇ ଛିଡ଼ାହୁଏ ।

ଭାରତର ରାଜନୀତି କ୍ଷେତ୍ରରେ ସେହିଭଳି ଏକ ପରିସ୍ଥିତି ଶୀଘ୍ର ଘଟିବ ବୋଲି ଜୟପ୍ରକାଶଙ୍କର ମତ ଥିଲା । ସେ ଦେଶର ତଥା ଜନତାର ନାଡ଼ି ଚିପିଥିଲେ । ତେଣୁ ଏମର୍ଜେନ୍‌ସି ଘୋଷଣାର ବହୁପୂର୍ବରୁ ୧୯୭୪ ମସିହା ଫେବୃୟାରୀ ୩ ତାରିଖରେ କାନପୁର-ଠାରେ ଏକ ଜନସଭାରେ ଭାଷଣ ଦେଇ ସେ କହିଲେ—

"ଏ ଦେଶ ଦ୍ରୁତବେଗରେ ଏକ ନୂତନ ବିପ୍ଳବ ଆଡ଼କୁ ଗତି କରୁଛି । ଇତିହାସର ଗତି ପରିବର୍ତ୍ତନ ଲାଗି ଆଉ ଏକ ୧୯୪୨ ଆନ୍ଦୋଳନ ହେବା ଭଳି ମତେ ଦିଶୁଛି ।

ଦରଦାମ ସବୁ କ୍ଷେତ୍ରରେ ହୁହୁ ବୃଦ୍ଧି ପାଉଛି । ଭ୍ରଷ୍ଟାଚାର, ନୈତିକ ଅଧୋଗତି ଓ ହତାଶା ଏବଂ ଏକପ୍ରକାର ଅସହାୟ ଭାବ ଆଜି ଜନଜୀବନ ଉପରେ ପ୍ରାଧାନ୍ୟ ଲାଭ କଲାଣି । ରାଜନୀତିକ ଦଳ ଉପରୁ ଜନସାଧାରଣଙ୍କର ଭରସା ତୁଟି ଯାଇଛି । ସେମାନେ କେବଳ କ୍ଷମତା ହାସଲ ନିମନ୍ତେ ଲୋକଙ୍କୁ ଉପଯୋଗ କରୁଛନ୍ତି । ଭୋଟଦାତା ସ୍ୱାଧୀନଭାବରେ ନିଜର ଭୋଟ ଦେବାକୁ ସମର୍ଥ ହେଉ ନାହିଁ ଏବଂ ପାର୍ଲାମେଣ୍ଟାରୀ ଗଣତନ୍ତ୍ର ଏକ 'ଦଳତନ୍ତ୍ର'ରେ ପରିଣତ ହେଲାଣି ।"

ସେ ପୁଣି ଭାଷଣ ପ୍ରସଙ୍ଗରେ କହିଲେ, "ଯଦି ଅହିଂସାଦ୍ୱାରା ଏ ମୁହୂର୍ତ୍ତରେ ଲୋକଙ୍କୁ ଠିକଣା ନେତୃତ୍ୱ ଓ ଦିଗ୍‌ଦର୍ଶନ ଦିଆଯାଇପାରିବ ନାହିଁ, ତେବେ ଦେଶରେ ହିଂସାନଳ ପ୍ରଜ୍ୱଳିତ ହେବ ଏବଂ ଏଭଳି ପରିସ୍ଥିତିରେ ଯେଉଁଭଳି ଶକ୍ତି ବଳଶାଳୀ ହେବେ ସେଥିରେ ଗଣତାନ୍ତ୍ରିକ ଜୀବନଧାରଣ ପନ୍ଥା ତିଷ୍ଠି ପାରିବ ନାହିଁ; ଧ୍ୱଂସ ହୋଇଯିବ ।"

ସେ ପୁଣି ଆହୁରି ଏକ ସ୍ଥାନରେ ନିଜ ଜୀବନର ଲକ୍ଷ୍ୟ କଣ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି—"ମୋ ଜୀବନର ଧ୍ରୁବତାରା ହେଉଛି ମୁକ୍ତି, ସ୍ୱାଧୀନତା । ଦିନକୁ ଦିନ ବର୍ଷପରେ

ବର୍ଷ ବଢିଯାଉଛି ଏବଂ ଏହାର ସଙ୍କଟ ଆହୁରି ମୋ ସମ୍ମୁଖରେ ବିସ୍ତାରିତ ଭାବରେ ଉଦ୍ଭବ ହେଉଛି । ସ୍ୱାଧୀନତା ଅର୍ଥ ହେଉଛି ମଣିଷ ବ୍ୟକ୍ତିତ୍ୱର ମୁକ୍ତି, ମନର ମୁକ୍ତି ଓ ଭାବନାର ମୁକ୍ତି । ଏହି ମୁକ୍ତି ମୋ ଜୀବନର ଏକ ପ୍ରବଳ ପ୍ରେରଣାଦାୟିନୀ ଶକ୍ତି ଏବଂ ମୁଁ କଦାପି କସ୍ମିନ୍‌କାଳେ ଖାଦ୍ୟ, କ୍ଷମତା, ନିରାପତ୍ତା, ସମୃଦ୍ଧି, ରାଷ୍ଟ୍ରର ଯଶୋଗାନ କିମ୍ବା ଅନ୍ୟ କେଉଁଥି-ପାଇଁ ସେଥିରୁ ଉଣା କିଛି କରିବାଲାଗି ପ୍ରସ୍ତୁତ ହେବି ନାହିଁ ।"

ଏଭଳି ପ୍ରତିଶ୍ରୁତିବଦ୍ଧ ବ୍ୟକ୍ତି ଯେ ଦେଶର ସ୍ୱାଧୀନତା ଲାଗି ଚରମ ତ୍ୟାଗ ଓ କଷ୍ଟ-ଭୋଗକରିଥିଲେ, ନିଃସ୍ୱାର୍ଥପର ଭାବରେ ନିଜ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ ଦେଶର ଦୁଃଖୀଜନର ସେବା ଓ ସଂଗ୍ରାମ ସହ ନିଜକୁ ମିଶାଇ ଦେଇଛନ୍ତି 'ଦେଶରେ ସମାଜବାଦ, ନ୍ୟାୟ ଏବଂ ନୈତିକତା ପ୍ରତିଷ୍ଠା ଲାଗି ଅବିରତ ସାଧନା ଓ ଉପାୟ ଚିନ୍ତା କରୁଛନ୍ତି, ତାଙ୍କ ପ୍ରାଣ ଦେଶର ଏ ଅଧୋଗତି ଦେଖି ବ୍ୟାକୁଳିତ ହେବା ସ୍ୱାଭାବିକ । ତେଣୁ ସେ ବାହାରି ପଡ଼ିଲେ ଏ ଦେଶର ନୂତନ ମୁକ୍ତି ଓ ଗଣତନ୍ତ୍ର ସଂଗ୍ରାମର ସାରଥି ରୂପେ—ଗଣତାନ୍ତ୍ରିକ, ନୈତିକ ଓ ମାନବିକ ମୂଲ୍ୟବୋଧର ପ୍ରତିଷ୍ଠା ଲାଗି । ଏହା ବ୍ୟକ୍ତି ବା ନେତୃତ୍ୱ ପାଇଁ ସଂଗ୍ରାମ ନୁହେଁ; ଏକ ଦେଶର ନୀତି ଓ ମର୍ଯ୍ୟାଦା ଫେରାଇ ଆଣିବା ଲାଗି ସଂଗ୍ରାମଶୀଳ ଭୂମିକା ।

# ନବସଂଗ୍ରାମର ସ୍ୱରୂପ ଓ ନେତୃତ୍ୱ

ଜୟପ୍ରକାଶଙ୍କର ଏ ପ୍ରାଣର ବ୍ୟାକୁଳତା କେବଳ ଗୁଜରାଟ ଓ ବିହାର ଆନ୍ଦୋଳନ ଯୋଗୁଁ ଆତ୍ମପ୍ରକାଶ କଲା ନାହିଁ; ସଂଗ୍ରାମ ମଧ୍ୟ କିଛି ରୂପ ନେଇ ନ ଥିଲା; ଯଦିଓ ସେ ସ୍ୱୀକାର କରିଛନ୍ତି ଯେ, ଗୁଜରାଟରେ ଯୁବ-ଛାତ୍ର-ଶକ୍ତି ଯେପରି ରାଜନୀତିକ ଦୁର୍ନୀତି ବିରୁଦ୍ଧରେ ଅଭିଯାନ କରି ଏକ ସରକାରର ପତନ କରାଇପାରିଲେ, ସେଥିରେ ସେ ଏକ ନୂତନ ଶକ୍ତିର ସନ୍ଧାନ ପାଇଗଲେ । ଦେଶର ଯେକୌଣସି ପରିବର୍ତ୍ତନରେ ଯୁବଶକ୍ତି ହିଁ ପ୍ରଧାନ ଭାଗ ନେଇଥାଏ । ଯୁବଶକ୍ତିର ଅଦମ୍ୟ ଉତ୍ସାହ, ଅସୀମ ତେଜ, ବେଗବତୀ ଆକାଂକ୍ଷା ସଂଘର୍ଷ ଓ ପ୍ରତିରୋଧକୁ ବଳୀୟାନ୍ କରିଥାଏ । ଜୟପ୍ରକାଶଙ୍କର ଏତେ ବଡ଼ ବିରାଟ ଚ୍ୟାଲେଞ୍ଜରେ ସଫଳ ହେବାର ଆଉ ଏକ କାରଣ ହେଉଛି ସେ ଏ ବୃଦ୍ଧ ବୟସରେ ଦେଶର ଅଜେୟ ଯୁବଶକ୍ତିକୁ ସାଙ୍ଗରେ ନେଇପାରିଲେ । ସେମାନଙ୍କ ପ୍ରାଣ ସ୍ପର୍ଶ କରିପାରିଲେ ତାଙ୍କର ବାଣୀ ଓ କାର୍ଯ୍ୟ ଦ୍ୱାରା । ଏଭଳି ଅତି ବୃଦ୍ଧ ଓ ଯୁବଶକ୍ତିର ମାନସିକ ତଥା କାର୍ଯ୍ୟର ମିଳନ ପୃଥିବୀ ଇତିହାସରେ ବିରଳ ଦେଖାଯାଇଛି ।

ବିପ୍ଳବ କେହି କେବେ ତିଆରି କରିପାରେନା; ବିପ୍ଳବ ପରିସ୍ଥିତି ସୃଷ୍ଟି କରେ । ପରିସ୍ଥିତିର ସୁଯୋଗ ନେଇ ତାକୁ ସଂଗଠିତ କରିବା ହିଁ ନେତୃତ୍ୱର କାର୍ଯ୍ୟ—ଏହିଠାରେ ନେତାର ବାହାଦୁରୀ । ସମ୍ପୂର୍ଣ୍ଣ ବିପ୍ଳବର ଅର୍ଥ ନୁହେଁ କେବଳ ଇନ୍ଦିରା ଗାନ୍ଧୀଙ୍କୁ ଗାଦିରୁ ହଟାଇବା କିମ୍ବା ଭାରତକୁ ଏକ ଏକଛତ୍ରବାଦ କବଳରୁ ମୁକ୍ତ କରିବା । ଯାହା ହେଲ, ତାହା ସମ୍ପୂର୍ଣ୍ଣ ବିପ୍ଳବ ପଥରେ ଏକ ସଂଗ୍ରାମ ମାତ୍ର । ଇତିହାସକାରମାନେ ଏବେ ଜୟପ୍ରକାଶଙ୍କର ଏ ନବ ଆନ୍ଦୋଳନ ସମ୍ବନ୍ଧରେ ନାନା ଟୀକା କରୁଛନ୍ତି । ଏହା ବିପ୍ଳବ, ବିଦ୍ରୋହ ନାଁ ସଂଗ୍ରାମ, ସମ୍ପୂର୍ଣ୍ଣ ବିପ୍ଳବ ବୋଇଲେ କଣ ବୁଝାଏ, ଏ ପ୍ରହେଳିକା କେହି ସନ୍ତୋଷଜନକ ଭାବରେ ସମାଧାନ କରିବାକୁ କ୍ଷମ ନୁହନ୍ତି । ଜୟପ୍ରକାଶଙ୍କୁ ପଚାରିଲେ ମଧ୍ୟ ସେ ଏକ ସମ୍ପୂର୍ଣ୍ଣ ବ୍ୟାଖ୍ୟା କିଛି ଆଣି ଥୋଇଦେଇପାରିବେ ନାହିଁ । କାରଣ ଏହା ନାସ୍ତିସୂଚକ ନୁହେଁ । ଏ ଆନ୍ଦୋଳନ ଏବେ ଚାଲିଛି ଏବଂ ବୋଧହୁଏ ଭାରତୀୟ ସମାଜର ରାଜନୀତିକ, ସାମାଜିକ ଓ ଆର୍ଥିକ ସବୁ କ୍ଷେତ୍ରରେ ସମ୍ପୂର୍ଣ୍ଣ ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ ଚାଲିଥିବ । ଏହା ଏକ କ୍ରମବର୍ଦ୍ଧିଷ୍ଣୁ ପର୍ଯ୍ୟାୟ । ଏହା ସମ୍ପୂର୍ଣ୍ଣ ମନ୍ଥନରେ ବ୍ୟସ୍ତ ।

ଏହି ନବ ଆନ୍ଦୋଳନ ପ୍ରକୃତରେ ଏକ ସଂଘର୍ଷର ରୂପ ନେଲା ୧୯୭୫ ଜୁନ୍ ୨୬ରେ, ଏମର୍ଜେନ୍‌ସିର ଘୋଷଣା ଏବଂ ନେତୃମଣ୍ଡଳୀର ଗିରଫ ହେତୁ । କିନ୍ତୁ ଏ ଚିନ୍ତା ଓ ଭାବଧାରା ବହୁ ଆଗରୁ ଜୟପ୍ରକାଶ ଲୋକଙ୍କ ସମ୍ମୁଖରେ ରଖିଆସିଥିଲେ । ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସ୍ଥିର

ଥିଲେ ପନ୍ଥା ଓ ରଣକୌଶଳ ତଦନୁରୂପ ଆବଶ୍ୟକୀୟ ପରିସ୍ଥିତି ଦେଖି ସଂଗଠିତ କରିବାକୁ ହୁଏ ।

ଏମର୍ଜେନ୍‌ସି ଘୋଷଣାର ବହୁପୂର୍ବରୁ ୧୯୭୩ ମସିହା ଡିସେମ୍ବର ୨୯ ତାରିଖରେ 'ରାଡ଼ିକାଲ ହ୍ୟୁମାନିଷ୍ଟ'ଙ୍କର ସମ୍ମିଳନୀରେ ଭାଷଣ ଦେଇ ସେ ଯାହା କହିଥିଲେ ସେଥିରେ ଏ ନବ ସଂଗ୍ରାମର ସୂଚନା ମିଳେ—

ସେଥିରେ ସେ ଦର୍ଶାଇଥିଲେ—ଆମକୁ ଗଣତନ୍ତ୍ରର ବିକଳ୍ପ ରୂପ ଓ ତାଞ୍ଚା ତିଆରି କରିବାକୁ ପଡ଼ିବ । କେବଳ ରାଜନୀତିକ ଦୃଷ୍ଟିକୋଣରୁ ନୁହେଁ, ଧାର୍ମିକ ନ ହେଲେ ସୁଦ୍ଧା ଏ ବିକଳ୍ପ ପରିକଳ୍ପନା ନୈତିକତାକୁ ବାଦ୍ ଦେଇପାରିବ ନାହିଁ । ନୈତିକ ଭିତ୍ତି ନଥିବାରୁ ଆଜି ଭାରତର ରାଜନୀତିକ ଅଧୋଗତି ଘଟିଛି ଏବଂ ଆମେ ଏହା ରୋକିବା ଲାଗି ବଦ୍ଧ-ପରିକର । ଗାନ୍ଧିଜୀ ଯାହା ବରାବର ଉଦ୍ୟମ କରିଆସିଛନ୍ତି, ତାଙ୍କ ଜୀବନରେ ପୂର୍ଣ୍ଣ ସାଫଲ୍ୟ ପାଇ ପାଇପାରିଲେ ନାହିଁ; ମାତ୍ର ସାଧନ ଶୁଦ୍ଧି ନ ଥିଲେ ଲକ୍ଷ୍ୟପ୍ରାପ୍ତି ଯେ ସ୍ଥାୟୀ ହୋଇ-ପାରିବ ନାହିଁ ଏହା ଅତି ସ୍ପଷ୍ଟ । ବିଭିନ୍ନ ଦେଶର ବିପ୍ଳବର ଯାହା ପରିଣତି ହୋଇଛି, ତହିଁରୁ ଏହି ଶିକ୍ଷା ମିଳୁଛି ।

"ଆମକୁ ଲୋକଙ୍କ ପାଖକୁ ଫେରିଯିବାକୁ ହେବ । ଲୋକ-ରାଜ ପ୍ରତିଷ୍ଠା କରିବାକୁ ପଡ଼ିବ ଏବଂ ଲୋକ-ଗଣତନ୍ତ୍ରକୁ ସୁଦୃଢ଼ କରିବାକୁ ପଡ଼ିବ ।" ନେତାଜୀ ସୁଭାଷ ବୋଷ ବି ଏହିଭଳି ଡାକରା ଦିନେ ଦେଇଥିଲେ; ଅବଶ୍ୟ ସେ ପରିସ୍ଥିତି ଓ ମୂଳଭିତ୍ତି ଭିନ୍ନ ଥିଲା । ତାଙ୍କ ସମ୍ମୁଖରେ ସାମାଜିକ ଓ ଅର୍ଥନୈତିକ ଚିତ୍ର ସ୍ପଷ୍ଟ ନ ଥିଲା । ତଥାପି ତାଙ୍କର ଗାନ୍ଧିଜୀ ଓ ଅନ୍ୟମାନଙ୍କ ବିରୋଧରେ ଯେଉଁ ଅଭିଯୋଗ ଥିଲା, ସେଥିରେ ମୁଖ୍ୟ ଆଧାର ଥିଲା—ସମସ୍ତ କ୍ଷମତା ଲୋକଙ୍କ ହାତକୁ ଆସିବା ଦରକାର । କିନ୍ତୁ ଲୋକେ ତାହା ସ୍ଥିର କରିବେ କି ନାହିଁ, ତାହା ଅସ୍ପଷ୍ଟ ଥିଲା ।

ଜୟପ୍ରକାଶ ଆହ୍ୱାନ ଦେଲେ, ଏପରି ବିକଳ୍ପ ଲୋକ-ରାଜ ଓ ଲୋକ-ଗଣତନ୍ତ୍ର ଗଠନ କରିବାକୁ ହେବ ଯାହା ଲୋକେ ଗଢ଼ିବେ, ଲୋକେ ନେତୃତ୍ୱ ନେବେ । ମୁଁ ସେଥିଲାଗି ରାଜନୀତିକ ଦଳ—ଯେ କ୍ଷମତାରେ ଅଛନ୍ତି ବା କ୍ଷମତା ବାହାରେ ରହିଛନ୍ତି, ସେମାନଙ୍କୁ ଆହ୍ୱାନ କରୁନାହିଁ କିମ୍ବା ଲୋକ-ରାଜ ଗଠନ କରିବା ନିମନ୍ତେ ପାର୍ଲିମେଣ୍ଟ କିମ୍ବା ସରକାରକୁ ଆହ୍ୱାନ କରୁନାହିଁ । ମୋର ଆହ୍ୱାନ ପ୍ରତ୍ୟକ୍ଷ ଭାବରେ ସିଧାସଳଖ ଜନତା ପ୍ରତି, ବିଶେଷ ଭାବରେ ଯୁବକମାନଙ୍କୁ ।

ଆମ ଆଗରେ ଦଳ ଗଣତନ୍ତ୍ରର ୨୬ ବର୍ଷର ଅନୁଭୂତି ରହିଛି । ଏଥିଭିତରେ ପ୍ରାୟ ପ୍ରତ୍ୟେକ ରାଜନୀତିକ ଦଳ ଅଳ୍ପେ ବହୁତେ କ୍ଷମତା ପାଇଛନ୍ତି ଓ ଭୋଗ କରିଛନ୍ତି । ତାଙ୍କ କାର୍ଯ୍ୟ ଏବଂ ସେମାନେ କିଭଳି ଲୋକଙ୍କ ଲାଗି କଣ କରିପାରିଛନ୍ତି, ତହିଁର ସମ୍ୟକ୍ ଧାରଣା ଆମେ ପାଇଛେ । ସେମାନଙ୍କ ନିର୍ବାଚନ ଇସ୍ତାହାରରେ ହୁଏତ କିଛି ଫରକ୍ ରହିଛି; କିନ୍ତୁ

ବାସ୍ତବିକ ସେମାନଙ୍କର ସରକାର ବାହାରେ ଓ ଭିତରେ କାର୍ଯ୍ୟ ଦେଖିଲେ ଉଣେଇଶ ବିଶ୍‌ପର ଜଣାପଡ଼ିବ । ସମସ୍ତେ ଏକ ନଉକାରେ ଏକା ଢଙ୍ଗରେ ଚାଲିଛନ୍ତି । ପାର୍ଟି ଚାଳିତ ଗଣତନ୍ତ୍ରର ବଡ଼ ତ୍ରୁଟି ହେଲା ସମଗ୍ର ଲୋକଙ୍କ ଦ୍ୱାରା ନୁହେଁ, ଦଳଗୁଡ଼ିକହିଁ ଯେମିତି ଚାହୁଁଛନ୍ତି ସେହି ଅନୁଯାରେ ଏହା ଚାଳିତ ହେଉଛି । ତେଣୁ ଏହା ଦୋଷଯୁକ୍ତ ଓ ଅସନ୍ତୋଷଜନକ । ସାଧାରଣ ଭାବରେ ଦେଖିଲେ ଲୋକେ ଏପରି ଢଙ୍ଗର ଗଣତନ୍ତ୍ର ଉପରେ ବିରକ୍ତ ଓ ଅସନ୍ତୁଷ୍ଟ । ଲୋକଙ୍କ ଆଗରେ ଅନ୍ୟ କୌଣସି ବିକଳ୍ପ ପନ୍ଥା ନ ଥିବାରୁ ସେମାନେ ଅନିଚ୍ଛାସତ୍ତ୍ୱେ ଏଭଳି ଦଳମାନଙ୍କୁ ସାମୟିକ ଥରେ ଯାଇ ଭୋଟ ଦେଇ ଆସୁଛନ୍ତି; ମାତ୍ର ସେମାନଙ୍କର ଆଉ କିଛି ସମ୍ପର୍କ ରହୁନାହିଁ । ଯେମିତି ଚର୍ଚ୍ଚିଲ କହୁଥିଲେ ପାର୍ଲିମେଣ୍ଟାରି ଗଣତନ୍ତ୍ରର ଦୋଷ ଦୁର୍ବଳତା ରହିଛି ସତ୍ୟ, ମାତ୍ର ଏହା ଅପେକ୍ଷା ଅନ୍ୟ କିଛି ଉତ୍ତମ ପନ୍ଥା ଆବିଷ୍କାର ନ ହେଲା ପର୍ଯ୍ୟନ୍ତ ପାର୍ଲିମେଣ୍ଟାରି ଗଣତନ୍ତ୍ରହିଁ ସର୍ବୋତ୍କୃଷ୍ଟ ଶାସନ ପନ୍ଥା; ମୁଁ ଭାବୁଛି ଲୋକଙ୍କ ପାଖରେ ପ୍ରଚଳିତ ଗଣତନ୍ତ୍ର ଅପେକ୍ଷା ଆହୁରି ଉତ୍ତମ ଗଣତାନ୍ତ୍ରିକ ବ୍ୟବସ୍ଥା ରହିଛି । ତାହା ହେଉଛି "ପ୍ରକୃତ ଲୋକ ଗଣତନ୍ତ୍ର ।"

ଏହି ବିଷୟକୁ ଆହୁରି ବିସ୍ତୃତରୂପେ ବର୍ଣ୍ଣନା କରି ଜୟପ୍ରକାଶ ବୁଝାଇବାକୁ ଲାଗିଲେ—ଏହି ଉଦ୍ଦେଶ୍ୟରେ ମାନବେନ୍ଦ୍ର ରାୟ ତାଙ୍କ ଦଳ ଭାଙ୍ଗିଦେଲେ । ଗାନ୍ଧିଜୀଙ୍କର ମଧ୍ୟ ସେହିଭଳି ପରିକଳ୍ପନା ଥିବାରୁ ସେ କଂଗ୍ରେସ ଦଳକୁ ଭାଙ୍ଗିଦେଇ ତାହା ବଦଳରେ ଲୋକ ସେବକ ସଂଘର ବିକଳ୍ପ ପ୍ରସ୍ତାବ ରଖିଥିଲେ । ସେମାନେ କିଭଳି ରାଜନୀତିକ ଚାଞ୍ଚାର ଚିତ୍ର ଆଖିଆଗରେ ରଖିଥିଲେ ତାହା ଜଣାନାହିଁ; ମାତ୍ର ପ୍ରଚଳିତ ପଦ୍ଧତି ଅସମ୍ପୂର୍ଣ୍ଣ ଏବଂ ଲୋକ ଗଣତନ୍ତ୍ର ସ୍ଥାପନା କରିବାକୁ ପଡ଼ିବ ଏଭଳି ସୂଚନା ସେଥିରୁ ପରିଷ୍କାରରୂପେ ମିଳି ପାରୁଛି ।

ଜୟପ୍ରକାଶ ସେହି ସମ୍ମିଳନୀରେ ତାଙ୍କର ପ୍ରକୃତ ଲୋକ-ଗଣତନ୍ତ୍ରର ଏକ ଚିତ୍ର ରଖିଥିଲେ ।

ଏତେବେଳକୁ କୌଣସି ଆନ୍ଦୋଳନ ଆରମ୍ଭ ହୋଇନାହିଁ କିମ୍ବା ସମ୍ପୂର୍ଣ୍ଣ କ୍ରାନ୍ତିର ନାମ ସୁଦ୍ଧା ଉଠିନାହିଁ । ତାଙ୍କର କ୍ରିୟାଶୀଳ ମନ ଓ ଚିନ୍ତା ଅସମ୍ପୂର୍ଣ୍ଣ ଓ ଉପରିଆ ଗଣତନ୍ତ୍ରକୁ କିଭଳି ଲୋକ-ଗଣତନ୍ତ୍ରରେ ପରିଣତ କରିବାକୁ ହେବ, ସେଥିର ଅନୁସନ୍ଧାନ ଏବଂ ଯାହାକୁ କହନ୍ତି ଗବେଷଣା ରାଜ୍ୟରେ ବିଚରଣ କରୁଥିଲା । ପରବର୍ତ୍ତୀ କାଳରେ ସେ ଏହାର ଇଙ୍ଗିତ ଦେଇ ଲୋକମନରୁ ସନ୍ଦେହ ଦୂର କରିଛନ୍ତି ।

"ଏଥିରେ ଲୋକ ଓ ବ୍ୟବସ୍ଥାର ଏକ ସଙ୍ଗରେ ପରିବର୍ତ୍ତନ ହୋଇଯିବ । ଆଗପଛ ହୋଇ ନୁହେଁ—ଏକ ସଙ୍ଗରେ, ଏକ ସମୟରେ । ଏପରି ଏକ ସାମାଜିକ ବ୍ୟବସ୍ଥା ହେବ ଯେଉଁଥିରେ ବ୍ୟକ୍ତିବିଶେଷ ହିଁ ସମାଜ ଲାଗି ବଞ୍ଚିବ ଏବଂ ସମାଜ ବ୍ୟକ୍ତିବିଶେଷ ଲାଗି ତିଷ୍ଠି ରହିବ । ଏହା ଏକାଦିନକେ ହୋଇଯାଇପାରିବ ନାହିଁ । କୌଣସି ବିପ୍ଳବ ଏକାଦିନକେ ହୋଇନାହିଁ । ତେଣୁ ଆମ ଆନ୍ଦୋଳନ ଆଗେଇ ଆଗେଇ ଚାଲିବ । ଏଥିରେ ସଫଳ ହେବାକୁ

ହେଲେ ଆମ ମନ ଭିତରେ ପାଶ୍ଚାତ୍ୟ ଗଣତନ୍ତ୍ରର ଯେଉଁ ଛବି ବଦ୍ଧମୂଳ ଧାରଣା ସୃଷ୍ଟି କରିଯାଇଛି, ସେଥିରୁ ନିଜକୁ ମୁକ୍ତ କରିବାକୁ ପଡ଼ିବ ଏବଂ ନୂତନ ଚିନ୍ତା ଓ ନୂତନ ଭିତ୍ତି ବାହାର କରିବାକୁ ପଡ଼ିବ ।"

ସେହି ସମ୍ମିଳନୀରେ ୧୯୭୩ ମସିହାରେ ଯୁବସମାଜକୁ ଏକ ବିଶେଷ ନିବେଦନ କରି ଜୟପ୍ରକାଶ କହିଥିଲେ—

"ପ୍ରକୃତ ଲୋକ-ଗଣତନ୍ତ୍ର ଆଡ଼କୁ ଆଗେଇ ମାଡ଼ି ଚାଲିବା ଲାଗି, ଏକ ଲକ୍ଷ୍ୟରେ ଅଗ୍ରଗତି କରିବା ନିମନ୍ତେ ବାୟୁମଣ୍ଡଳ ଅନୁକୂଳ ରହିଛି । ମୋର ଦେଶର ଯୁବଶକ୍ତିକୁ ନିବେଦନ—ସେମାନେ ଏ ଅନୁକୂଳ ପରିସ୍ଥିତିର ସୁଯୋଗ ନିଅନ୍ତୁ । ବର୍ତ୍ତମାନ ଯୁଗ ଦାବି କରେ ସେମାନେ ଏକ ବୈପ୍ଳବିକ ଭାଗ ଗ୍ରହଣ କରନ୍ତୁ । ହେ ଦେଶର ଯୁବକ ଯୁବତୀ, ଏହି ଆଲୋକବର୍ତ୍ତିକା ହାତରେ ଧର; ଆଗୁସାର ହୁଅ । ଭାଗ୍ୟ ତୁମକୁ ନିମନ୍ତ୍ରଣ ଦେଉଛି, ସଫଳତା ତୁମକୁ ଅପେକ୍ଷା କରି ରହିଁରହିଛି ।"

୧୯୭୩ ମସିହାରୁ ଏ ଚିତ୍ର ସେ ଆଙ୍କିଥିଲେ, ଏହାକୁ ବାସ୍ତବରୂପ ଦେବା ନିମନ୍ତେ ବରାବର ଉଦ୍ୟମ କରୁଥିଲେ । ଅସଲ ଲକ୍ଷ୍ୟ ବିଷୟରେ ତାଙ୍କ ମନରେ ଯେ ପରିକଳ୍ପନା ରହିଥିଲା, ସେହିପରି କିଭଳି ସଙ୍ଗଠନ ଓ ନେତୃତ୍ୱ ହେବ ଏବଂ ସଂଗ୍ରାମର କି ସ୍ୱରୂପ ହେବ, ତାହା କାଳକ୍ରମେ କାର୍ଯ୍ୟର ଗତି ବଢ଼ିବା ସଙ୍ଗେ ସଙ୍ଗେ ପ୍ରକାଶିତ ହୋଇଛି ।

ବିପ୍ଳବର ସଫଳତା ଲାଗି ତିନୋଟି ଜିନିଷ ଲୋଡ଼ା—ସଙ୍ଗଠନ, ସଂଗ୍ରାମ ଓ ନେତୃତ୍ୱ । ତିନୋଟିର ପରସ୍ପର ସହିତ ଘନିଷ୍ଠ ଯୋଗାଯୋଗ ରହିଛି—ପରସ୍ପର ଉପରେ ପ୍ରତ୍ୟେକ ନିର୍ଭରଶୀଳ । ଗାନ୍ଧୀ ପ୍ରଦର୍ଶିତ ପନ୍ଥାରେ ଗତି କରି ଗାନ୍ଧୀଜୀଙ୍କ ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ପୂର୍ଣ୍ଣ କରିବାକୁ ପଡ଼ିବ । ଦଳବିହୀନ ଗଣତନ୍ତ୍ର ବିଷୟଟିକୁ ଲୋକେ ପରିହାସ କରୁଥିଲେ । ଗଣତନ୍ତ୍ର ତ ଦଳଗୁଡ଼ିକ ଦ୍ୱାରା ଚାଳିତ-ସରକାର ଓ ବିରୋଧ ଦୁଇଟିର ସଙ୍ଘର୍ଷ । ବିବାଦ, ସମାଲୋଚନା ଦ୍ୱାରା ଗଣତାନ୍ତ୍ରିକ ମର୍ଯ୍ୟାଦା ରକ୍ଷା ହେବ । ବିଭିନ୍ନ ଦଳ ନ ଥିଲେ ପୁଣି ବିବାଦ କିଭଳି ହେବ ? ତେଣୁ ଦଳବିହୀନ ଗଣତନ୍ତ୍ର ଏକ ଅବାସ୍ତବ ପରିକଳ୍ପନା ବୋଲି ଚିନ୍ତାଶୀଳ ଲୋକେ ବିଚାର କରୁଥିଲେ । ଇନ୍ଦିରା ଗାନ୍ଧୀ ଓ ଅନ୍ୟ ବିରୋଧୀ ଶକ୍ତିମାନେ ଏହି ବିଷୟଟିକୁ ଘେନି ଘୋର ସମାଲୋଚନା କଲେ । କିନ୍ତୁ ଲୋକଙ୍କ ମନରୁ ସନ୍ଦେହ ଦୂର କରିବା ନିମନ୍ତେ ଜୟପ୍ରକାଶ ସେ ସମ୍ବନ୍ଧରେ କଥାଟି ପରିଷ୍କାର କରିଦେଇଥିଲେ । ସେ କହିଲେ, ଦଳବିହୀନ ଗଣତନ୍ତ୍ର ଶ୍ରେଣୀହୀନ ଓ ଜାତିଶୂନ୍ୟ ସମାଜବାଦୀ ସମାଜ ଗଠନ ପରେ ସମ୍ଭବ । ବର୍ତ୍ତମାନ ତ ଗଣତନ୍ତ୍ର ରକ୍ଷା ଲାଗି ଏବଂ ଦେଶରୁ ଡିକ୍ଟେଟରସିପ୍ ରୋକିବା ଲାଗି ଲଢ଼ାଇ ! ବିରୋଧୀ ପକ୍ଷ ଲୋକଙ୍କ ଭିତରେ ଯେଉଁ ମାନସିକ କ୍ଷେତ୍ରରେ ବିଶୃଙ୍ଖଳା ସୃଷ୍ଟି କରିବାଲାଗି ଉଦ୍ୟମ କରୁଥିଲେ, ସେଥିରୁ କ୍ଷାନ୍ତ ହେଲେ ।

ସଂଗ୍ରାମର ଗତି କଣ ଏହା ଥିଲା ମୁଖ୍ୟ ପ୍ରଶ୍ନ । ଶାନ୍ତିପୂର୍ଣ୍ଣ ସଂଗ୍ରାମରେ ପ୍ରକୃତ ଆଇନ ଅମାନ୍ୟ ଓ ସତ୍ୟାଗ୍ରହ ଆଦି ଶେଷ ଅସ୍ତ୍ରରୂପେ ବ୍ୟବହାର କରିବାର କଥା । କିନ୍ତୁ

ସଂଘର୍ଷ ବା ବିବାଦ କିଛି ନ ଉପୁଜିଲେ ଲୋକଙ୍କ ଭିତରେ ଉନ୍ମାଦନା ଆସିବ ନାହିଁ । ସଂଘର୍ଷର ମନୋବୃତ୍ତି ନରହିଲେ ଏବଂ ପ୍ରତିଷ୍ଠିତ ସମାଜ ବା ଶାସନର ବିରୋଧ କରିବା ଭୂମିକା ଗ୍ରହଣ ନ କଲେ, ତାହା ଫଳପ୍ରଦ ହୋଇପାରିବ ନାହିଁ । ବିନୋବାଜୀଙ୍କ ପରି ତାତ୍ତ୍ୱିକ ବିଶ୍ଳେଷଣ ଖୁବ୍ କମ୍ ବ୍ୟକ୍ତିଙ୍କ ଦ୍ୱାରା ହୋଇପାରେ । ମାତ୍ର ଭୂଦାନ ସର୍ବୋଦୟ ଆନ୍ଦୋଳନର ବିଫଳତାର ମୂଳ କାରଣ ହେଲା ପ୍ରତିଷ୍ଠିତ ସରକାର ସହ ପ୍ରତିରୋଧ ଭାବ ନେବାର ଅନିଚ୍ଛା । ସରକାରୀ କଳ ସହ ସକଳ କାର୍ଯ୍ୟ ଏଭଳି ଜଡ଼ିତ ହୋଇ ରହିଗଲା ଯେ ଶେଷକୁ ଭୂଦାନ କାର୍ଯ୍ୟ ଏକ ସରକାରୀ ଶାଖା ହୋଇ ରହିଗଲା—ସରକାରୀ ଗ୍ରାଣ୍ଟଦ୍ୱାରା ଚଳିଲା ଏବଂ ସରକାର ସବୁ ଆଇନ ଗଢ଼ି ଭୂଦାନ ଯଜ୍ଞ ସମିତିମାନଙ୍କୁ ଅର୍ଥ ଦେଇ ବଞ୍ଚାଇ ରଖିଲେ । ସେହିହେତୁ ସର୍ବ-ସେବା-ସଙ୍ଘ ଗାନ୍ଧୀଜୀଙ୍କ ପନ୍ଥା ଧରିଥିଲା ସତ, ମାତ୍ର ଏହା ଏକ ନିର୍ଜୀବ ଓ କ୍ଳୀବ ଅନୁଷ୍ଠାନରେ ପରିଣତ ହୋଇଗଲା । ବିନୋବା ଖାଲି ଜୟପ୍ରକାଶଙ୍କୁ ଇନ୍ଦିରାଗାନ୍ଧୀଙ୍କ ସରକାର ବିରୁଦ୍ଧରେ କିଛି ନ କରିବାଲାଗି ପରାମର୍ଶ ଦେଇଥିଲେ ତାହା ନୁହେଁ, ଜୟପ୍ରକାଶଜୀ ଓ ସର୍ବ-ସେବା ସଙ୍ଘର ସଭାପତି ସିଦ୍ଧରାଜ ଏମର୍ଜେନ୍‌ସିରେ ଜେଲ ବରଣ କଲେ ସୁଦ୍ଧା ବିନୋବାଙ୍କ ଦୃଷ୍ଟିରେ ଏମର୍ଜେନ୍‌ସି ହେଲା ଅନୁଶାସନ ପର୍ବ । ତେଣୁ ବିନୋବାଙ୍କ ନାମକରଣ ହେଲା ସରକାରୀ-ସନ୍ଥ ବା ସାଧୁ । ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗର ଏପରି ଏକ କୁତ୍ସିତ ରୂପ ଲୋକଙ୍କ ସମ୍ମୁଖରେ ଥିବାବେଳେ ଜୟପ୍ରକାଶଙ୍କ ନେତୃତ୍ୱ ଏବଂ ତାଙ୍କର ସଂଗ୍ରାମୀ ମନୋଭାବ କେତେଦୂର ରହିବ ବା ଯାଇପାରିବ, ଏଥି ଲାଗି ଲୋକଙ୍କମନରେ ଘୋର ଆଶଙ୍କା ଜାତ ହେଉଥିଲା ।

ତେଣୁ ଜୟପ୍ରକାଶଙ୍କର ନେତୃତ୍ୱର ଏହା ଥିଲା ଏକ ଚରମ ପରୀକ୍ଷାର ମୁହୂର୍ତ୍ତ, ଇତିହାସର ନୂତନ ଅଧ୍ୟାୟ ଖୋଲିବାର ଏକ ଅପୂର୍ବ ସୁଯୋଗ । ସେ ସ୍ଥିର କରିନେଲେ ଯେ, ଅନ୍ୟାୟ ଅତ୍ୟାଚାର ଏଭଳି ବଳିପଡ଼ିଲାଣି ଏବଂ ଦେଶ କ୍ରମେ ଏଭଳି ଚରମ ଦୁର୍ଦ୍ଦଶାର ସମ୍ମୁଖୀନ ହେଉଛି, ଏତେବେଳେ ସଙ୍ଘର୍ଷ ଓ ପ୍ରତିବାଦ ଛଡ଼ା ଅନ୍ୟ ପନ୍ଥା ନାହିଁ । ସେ ନିଜେ ଲେଖିଛନ୍ତି—

"ଯଦି ସ୍ୱାଭାବିକ ରୀତିରେ ଏକ ବିପ୍ଳବ ପରେ ସାମାଜିକ ବିପ୍ଳବ ଆସିଯିବ ବୋଲି ଧରିନେବା, ତେବେ ସାମାଜିକ ପ୍ରଗତି ଓ ପରିବର୍ତ୍ତନ ଲାଗି କୌଣସି ଉଦ୍ୟମ କରାଯିବାର ଆବଶ୍ୟକତା ରହିନ୍ତା ନାହିଁ । ତାହାହେଲେ ଆମେ କଣ କରିବା ? ତାର ଏକମାତ୍ର ଉତ୍ତର ହେଉଛି— ଯେଉଁମାନେ ସମ୍ପୂର୍ଣ୍ଣ କ୍ରାନ୍ତିର ଧ୍ୱଜା ଉଠାଇଛନ୍ତି ଏବଂ ଭବିଷ୍ୟତ ଇତିହାସ ତାଙ୍କ ପକ୍ଷରେ ବୋଲି ଆଶା ବାନ୍ଧିଛନ୍ତି, ସେମାନଙ୍କୁ ନିଜକୁ ତ୍ୟାଗ କରିବାଲାଗି ବାହାରିପଡ଼ିବାକୁ ହେବ ଏବଂ ତାଙ୍କର ଯେ ନେତା, ତାଙ୍କୁ ଏଥିଲାଗି ପ୍ରଥମ ବଳି ପଡ଼ିବାକୁ ହେବ ।"

ଏହାହିଁ ଗାନ୍ଧିଜୀଙ୍କ ଅହିଂସ ସଂଗ୍ରାମର ସ୍ୱରୂପ ଏବଂ ଏହାହିଁ ପ୍ରକୃତରେ ଗାନ୍ଧୀ ନେତୃତ୍ୱ । ହିଂସା ଯୁଦ୍ଧରେ ସେନାପତି ପଛରେ ଥାଏ; ଲୁଚି ଛପି ଆତ୍ମରକ୍ଷାକରି ସୈନ୍ୟମାନଙ୍କୁ ବଳିପଡ଼ିବାକୁ ଛାଡ଼ିଦିଏ—ପଛରେ ଥାଇ ରଣର ପରିଚାଳନା କରେ; ରଣକୌଶଳ ଓ

ପେଶ୍ କଲେ । ଗାନ୍ଧୀ-ପ୍ରଦର୍ଶିତ ଶାନ୍ତିପୂର୍ଣ୍ଣ ସଂଗ୍ରାମର ଏହାହିଁ ବିଶେଷତ୍ୱ । ଲକ୍ଷ୍ୟ ସ୍ଥିର, ପଥ ନିର୍ଦ୍ଦିଷ୍ଟ, ନେତୃତ୍ୱ ସେନାନୀ ଆଗରେ ପ୍ରଥମ ପ୍ରହାର ସହିବା ଲଗି ତିଆର; ତ୍ୟାଗ ଓ କଷ୍ଟଭୋଗ ତାର ଅଙ୍ଗଭୂଷଣ; ତେଣୁ ସେ ଅପରାଜେୟ ।

ଘୋର ଅନ୍ଧକାର ଭିତରେ ଯେତେବେଳେ ସାରା ଭାରତର ରାଜନୀତିକ ଜୀବନ ଘୋର ବିପର୍ଯ୍ୟୟର ସମ୍ମୁଖୀନ, ଅର୍ଦ୍ଧଚେତନ, ନିର୍ଜୀବ ପରି ଶାସନ ଓ କର୍ତ୍ତୃତ୍ୱ ପାଖରେ ଆତ୍ମସମର୍ପଣ କରିବାର ମନୋବୃତ୍ତି ପ୍ରବଳରୁ ପ୍ରବଳତର ହୋଇଉଠୁଛି, ସେତେବେଳେ ଜୟପ୍ରକାଶ ନାରାୟଣ ଅଭୁତ ସାହସ ଓ ତେଜ ଦେଖାଇ ଡାକରା ଦେଲେ, ନେତୃତ୍ୱ ଦେଲେ—ଡିକ୍ଟେଟରସାହିକୁ ଧ୍ୱଂସ କରିବାକୁ ପଡ଼ିବ ଏବଂ ପ୍ରକୃତ ଲୋକ-ଗଣତନ୍ତ୍ର ଫେରାଇ ଆଣିବାକୁ ପଡ଼ିବ ।

ଜୟପ୍ରକାଶ ଯଦି ଚିରାଚରିତ ପ୍ରଥା ଉପରେ ନିର୍ଭର କରି ସଙ୍ଗଠନ ମଜବୁତ ହୋଇ ସାରିଲା ପରେ ଆନ୍ଦୋଳନ ବା ସଂଗ୍ରାମର ଚିନ୍ତା କରିଥାଆନ୍ତେ, ତେବେ କେବେହେଲେ ଏପରି ଏକ ବିରାଟ ପରିବର୍ତ୍ତନ ଭାରତରେ ହୋଇ ପାରି ନଥାନ୍ତା । ବିପ୍ଳବ ପଛରେ ଏକ ଆଦର୍ଶବାଦ ଦରକାର—ସେ ଆଦର୍ଶବାଦ ହେଲା ଗାନ୍ଧୀ-ଆଦର୍ଶ ଏବଂ ସେଥିଲାଗି ସଂଗ୍ରାମର ସ୍ୱରୂପ ହେଲା ସମ୍ପୂର୍ଣ୍ଣ କ୍ରାନ୍ତି । ଏହାର ନେତୃତ୍ୱ ଦରକାର—ଗାନ୍ଧୀ-ନେତୃତ୍ୱ ପରି ନେତା ହେଲେ ଜୟପ୍ରକାଶ ନାରାୟଣ । କେହି କେହି ତାଙ୍କୁ ଦ୍ୱିତୀୟ ଗାନ୍ଧୀ ବୋଲି ଆଖ୍ୟା ଦେଇଛନ୍ତି; ସେ ତା' ନାପସନ୍ଦ କରିଛନ୍ତି । ବାସ୍ତବିକ କ୍ଷେତ୍ରରେ ସେ ଭାରତବର୍ଷରେ ଯେଉଁ ଅଲୌକିକ ସାଫଲ୍ୟ ହାସଲ କରିପାରିଲେ, ତାହା ଗାନ୍ଧୀଜୀଙ୍କ ଜୀବନକାଳରେ ହୋଇପାରିଥିଲା କି ନା ସନ୍ଦେହ ।

# ବ୍ୟକ୍ତିଗତ ନୁହେଁ, ନୀତିଗତ

କେତେକ ସ୍ଥଳରେ ଉପହାସସ୍ୱରରେ ମନ୍ତବ୍ୟ କରାଯାଇଛି ଯେ ଭାରତରେ ଯେ ରାଜନୀତିକ ପରିବର୍ତ୍ତନ ଘଟିଗଲା, ସେଥିଲାଗି ସବୁଠାରୁ ଅଧିକ ଯଶ ଶ୍ରୀମତୀ ଗାନ୍ଧୀଙ୍କୁ ମିଳିବାର କଥା । ସେ ଯଦି ଜୟପ୍ରକାଶ ନାରାୟଣଙ୍କ ଆନ୍ଦୋଳନକୁ ନିଜର ବ୍ୟକ୍ତିଗତ କ୍ଷମତା-ଚ୍ଛିନ୍ନମୂଳକ ବୋଲି ବିଚାର କରି ନଥାନ୍ତେ ଏବଂ ନିଜ ହାତରେ ସମସ୍ତ କ୍ଷମତା ନେଇ ଏକଚ୍ଛତ୍ରବାଦ ପ୍ରତିଷ୍ଠା କରିନଥାନ୍ତେ, ତେବେ ଦେଶରେ ଏତେ ବିଷମ ପରିସ୍ଥିତି ହୋଇନଥାନ୍ତା ।

ପ୍ରତି ସଂଗ୍ରାମର ଇତିହାସରେ ମଧ୍ୟ ଏହାର ଦୃଷ୍ଟାନ୍ତ ମିଳେ । ଅତ୍ୟାଚାର ଦମନ ନିର୍ଯାତନା ଲୋକେ ସହ୍ୟ କରୁଥାଆନ୍ତି । ଲୋକଙ୍କର ଅସନ୍ତୋଷ ପ୍ରକାଶ କରିବା ନିମନ୍ତେ ମନୋବଳ ନଥାଏ; ତେଣୁ ମନ ଦବିଥାଏ; କୌଣସି ସଂଗଠିତ ଶକ୍ତି ନଥାଏ ପ୍ରତିରୋଧ କରିବା ନିମନ୍ତେ । ଭାଗ୍ୟର ଲେଖନ ଭାବି ଅସହାୟ ହୋଇ ଲୋକ ପଡ଼ିରହିଥାଆନ୍ତି । ଏହି ପୁଞ୍ଜିଭୂତ ଅସନ୍ତୋଷ ଯେମିତି ପ୍ରକାଶ ନପାଏ, ସେଥିଲାଗି ଶାସକବର୍ଗ ସମସ୍ତ କୌଶଳ ଓ ଦମନ-ଅସ୍ତ୍ର ପ୍ରୟୋଗ କରନ୍ତି । ଏହା ସ୍ୱେଚ୍ଛାଚାରୀ ଶାସନରେ ଚାଲେ ।

ମାତ୍ର ଭାରତରେ ଗଣତାନ୍ତ୍ରିକ ଶାସନ ଚାଲୁଥିବାବେଳେ ଏବଂ ବିଧାନସଭା, ପାର୍ଲିମେଣ୍ଟ ଓ ସାଧାରଣରେ ସରକାର ଓ ଦେଶର କାର୍ଯ୍ୟ ସମାଲୋଚିତ ହେବାର ପୂର୍ଣ୍ଣ ସ୍ୱାଧୀନତା ମିଳୁଥିଲାବେଳେ ଏମିତି ପରିସ୍ଥିତି କାହିଁକି ସୃଷ୍ଟି ହୋଇଥାଆନ୍ତା ! ଘଟଣାବଳୀ ଅନୁଧ୍ୟାନ କଲେ ଜଣାଯାଏ ଏହା ମୂଳରେ ଦୁଇଟି ପ୍ରଚ୍ଛନ୍ନ ଭୟ କାର୍ଯ୍ୟ କରିଛି ଏବଂ ସେହି ଭୟ ଯୋଗୁ ଇନ୍ଦିରା ଗାନ୍ଧୀ ସାରା ଦେଶରେ ଏପରି ଦାବାନଳ ଜଳିବାଭଳି ପରିସ୍ଥିତି ସୃଷ୍ଟି କରିଦେଲେ ।

ଇନ୍ଦିରା ଗାନ୍ଧୀ ଏକ ବ୍ୟବସ୍ଥା ଉପରେ ପ୍ରତିଷ୍ଠିତ ହୋଇଥିଲେ; ସେ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ସଫଳତାର ସହିତ ପ୍ରୟୋଗ କରି ନିଜର ଆଧିପତ୍ୟ ବିସ୍ତାର କରିଥିଲେ । କ୍ରମେ କ୍ରମେ ସମସ୍ତ ଗଣତାନ୍ତ୍ରିକ ବିଧିବିଧାନକୁ ସଂଶୋଧନ କରି ନିଜ ହାତରେ ଅଖଣ୍ଡ କ୍ଷମତା ରଖିପାରିଲେ । ଯାହା ଆଗରୁ କୁହାଯାଇଛି, ୧୯୭୨ ନିର୍ବାଚନ ପରେ ସେ ବିଚାର କଲେ— ଦେଶ ବୋଇଲେ ଇନ୍ଦିରା ଗାନ୍ଧୀ ଏବଂ ଇନ୍ଦିରା ଗାନ୍ଧୀ ବୋଇଲେ ଦେଶ । ଏହା ବିଚାରିଲା-ବେଳେ ସେ ଅବସ୍ଥାକୁ କିଭଳି ସ୍ଥାୟୀ ରଖିପାରିବେ, ସେଥିଲାଗି ଯୋଜନା ଚାଲିଲା ।

ସେଥିଲାଗି ଜୟପ୍ରକାଶ ଯଥାର୍ଥରେ ତାଙ୍କ 'କାରାଗାର କାହାଣୀ'ରେ ଲେଖିଛନ୍ତି—

"୧୯୬୯ରୁ ଶ୍ରୀମତୀ ଗାନ୍ଧୀ ଯାହା ସବୁ କରୁଛନ୍ତି, ସେଥିରୁ ଅନ୍ତତଃ ଜଣାପଡ଼ୁଛି ଯେ ସେ ଗଣତନ୍ତ୍ରକୁ ଭୟକରୁଛନ୍ତି—କାରଣ ଗଣତନ୍ତ୍ର ପଦ୍ଧତି ଠିକ୍‌ରୂପେ ଚାଲିଲେ ସେ ହୁଏତ କ୍ଷମତାରେ ରହି ନ ପାରନ୍ତି । କିନ୍ତୁ ଯାହା ପଛକେ ହେଉ, ସେ କ୍ଷମତାରେ ରହିବେ; ଛାଡ଼ିବେ ନାହିଁ । ଏହାହିଁ ମନୋଭାବ ।"

୧୯୭୨ ମସିହା ଜୁଲାଇ ୨୨ ତାରିଖରେ ଏକ ସାକ୍ଷାତ୍‌କାରରେ ଜୟପ୍ରକାଶ ନାରାୟଣ ଏହି ପ୍ରବୃତ୍ତି ଦେଶରେ ବୃଦ୍ଧି ପାଉଥିବାର ଆଶଙ୍କା କରି କହିଥିଲେ—

"ଦେଶରେ ଏକାଧିପତ୍ୟର ଆଶଙ୍କା ଦିନକୁ ଦିନ ବେଶି ଦେଖାଯାଉଛି ଏବଂ ଏତଦ୍‌ଦ୍ୱାରା ଗଣତାନ୍ତ୍ରିକ ଭିତ୍ତି ଉପରେ ଆଞ୍ଚ ଆସିବ । ବିରୋଧୀ ଦଳଗୁଡ଼ିକ ଦୁର୍ବଳ; ସମସ୍ତ କ୍ଷମତା ଏକ ଦଳ ହାତରେ ନୁହେଁ, କ୍ରମେ ଏକ ବ୍ୟକ୍ତି ହାତରେ ଯେ କେନ୍ଦ୍ରୀଭୂତ ହୋଇଯାଉଛି, ଜଣେ ଗଣତନ୍ତ୍ରବାଦୀ ଭାବରେ ଏହା ଭାବିଲା ବେଳକୁ ମୋ ମନରେ ଅବସାଦ ଆସୁଛି ।

ଏବେ ଖୁବ୍ ସମ୍ଭବତଃ ଏକପ୍ରକାର ରାଷ୍ଟ୍ରବାଦ (statism) ବା ଅମଲାତାନ୍ତ୍ରିକ ସମାଜବାଦର ବୃଦ୍ଧି ଘଟୁଛି । ରାଜନୀତିକ ଓ ଆର୍ଥନୀତିକ ଶକ୍ତିର ବିକେନ୍ଦ୍ରୀକରଣ ହେବା ଉଚିତ ।

ପ୍ରଧାନମନ୍ତ୍ରୀ ରାଜ୍ୟମାନଙ୍କରେ ମୁଖ୍ୟମନ୍ତ୍ରୀ ମନୋନୀତ କରୁଛନ୍ତି । ତାଙ୍କ ପଛରେ ରାଜ୍ୟ ବିଧାୟକଦଳର ବିଶ୍ୱାସ କିମ୍ବା ଅଧିକ ସଭ୍ୟଙ୍କର ସମର୍ଥନ ଥିବା-ନଥିବାରେ କିଛି ଯାଏ-ଆସେ ନା । ଏହା ଗଣତନ୍ତ୍ର ପକ୍ଷରେ ଭଲ ନୁହେଁ ।"

୧୯୭୧ ନିର୍ବାଚନରେ ଯେଉଁ ବିରୋଧୀ ଦଳ ମେଣ୍ଟ ଇନ୍ଦିରାଙ୍କ ବିରୁଦ୍ଧରେ ନିର୍ବାଚନ ଦ୍ୱନ୍ଦ୍ୱ କରିଥିଲା ସେମାନଙ୍କର ମୁଖ୍ୟ ସ୍ଲୋଗାନ୍ ଥିଲା—'ଇନ୍ଦିରା ହଟାଓ' । କଂଗ୍ରେସ ଦଳ ଅର୍ଥାତ୍ ଇନ୍ଦିରା ଗାନ୍ଧୀଙ୍କର ଧ୍ୱନି ଥିଲା—'ଗରିବୀ ହଟାଓ' । ସାଧାରଣ ଲୋକ ମନକୁ ଏହି ସ୍ଲୋଗାନ୍ ଜରିଆରେ ଇନ୍ଦିରା ଗାନ୍ଧୀ ବହୁ ପରିମାଣରେ ପ୍ରଭାବିତ କରିପାରିଥିଲେ । ସେ ଦାରିଦ୍ର୍ୟ ଦୂର କରିବାକୁ ଉଦ୍ୟମ କରୁଥିବାରୁ ଧନୀ ପ୍ରତିକ୍ରିୟାଶୀଳ ଦଳ ଏକାଠି ହୋଇ ତାଙ୍କୁ ହଟାଇବାକୁ ଚେଷ୍ଟା କରୁଛନ୍ତି ବୋଲି ଲୋକେ ବିଶ୍ୱାସ କଲେ । ଜୟପ୍ରକାଶଙ୍କର 'ଗଣତନ୍ତ୍ର ଉପରେ ବିପଦ' ଆନ୍ଦୋଳନ ଯଦି ଦେଶରେ ପ୍ରବଳ ହେବ, ତେବେ ତାର ପରିଣତି ଭୟାବହ ହେବା ଆଶଙ୍କାରେ ଏହା ଏକ ଇନ୍ଦିରା-ବିରୋଧୀ ଆନ୍ଦୋଳନ ବୋଲି ଚିତ୍ରଣ କରିବା ନିମନ୍ତେ ପ୍ରଚାର-ଯନ୍ତ୍ର ମୁଖର ହୋଇପଡ଼ିଲା । ଜୟପ୍ରକାଶ ନିଜେ କ୍ଷମତାକୁ ଆସିବାକୁ ଚାହୁଁ ନଥିଲେ; କେବେ ନିର୍ବାଚନ ଲଢ଼ି ନାହାନ୍ତି; କୌଣସି ଦଳଭୁକ୍ତ ନୁହନ୍ତି । ତେଣୁ ଇନ୍ଦିରାଙ୍କୁ ବ୍ୟକ୍ତିଗତ ଭାବରେ ହଟାଇବା ପ୍ରଚାର ତାଙ୍କ ବିରୁଦ୍ଧରେ ବିଶେଷ ଫଳପ୍ରଦ ହୋଇପାରିଲା ନାହିଁ । ସେତେବେଳକୁ ସେ ବିଭିନ୍ନ ଦଳଗୁଡ଼ିକର ସହଯୋଗ ନେଇ ନଥିଲେ କିମ୍ବା କୌଣସି ବିଧିବଦ୍ଧ ଆନ୍ଦୋଳନର କଳ୍ପନା ସୁଦ୍ଧା କରିନଥାନ୍ତି । ତେଣୁ ବିଦେଶୀ ଶକ୍ତିଗୁଡ଼ିକ ଇନ୍ଦିରା ଗାନ୍ଧୀଙ୍କୁ ହଟାଇବା ଲାଗି ଷଡ଼ଯନ୍ତ୍ର କରୁଛନ୍ତି ବୋଲି, ବିଶେଷଭାବରେ ଆମେରିକାର ଗୁପ୍ତଚର ଅନୁଷ୍ଠାନ ସି. ଆଇ. ଏ. ଏବଂ ଜୟପ୍ରକାଶ ତାଙ୍କଠାରୁ ସାହାଯ୍ୟ ପାଇ ଏଭଳି କରୁଛନ୍ତି

ବୋଲି ଅଭିଯୋଗ ଉଠାଇବାକୁ ଲାଗିଲା । ଏପରିକି ରାଜନୀତି କ୍ଷେତ୍ରରୁ ଏକପ୍ରକାର ଅବସର ନେବା ଅବସ୍ଥାରେ ରହିଥିବା ଭି. କେ. କୃଷ୍ଣମେନନ୍ ମଧ୍ୟ କହିବାକୁ ଲାଗିଲେ—"ଜୟପ୍ରକାଶ ଆନ୍ଦୋଳନ ଠିକ୍ ବାଟରେ ଚାଲୁନାହିଁ । ମୋର ଆଶଙ୍କା ଏଥିରେ ଏଭଳି ପରିସ୍ଥିତି ସୃଷ୍ଟି ହେଉଛି, ଯାହା ଫଳରେ ଆମର ଆଭ୍ୟନ୍ତରୀଣ ବ୍ୟାପାରରେ ବିଦେଶୀ ଶକ୍ତିର ହସ୍ତକ୍ଷେପ ପ୍ରବେଶ କରିବାର ସମ୍ଭାବନା ରହିବ ।"

ଜୟପ୍ରକାଶ ନିଜର ସାଧାରଣ ବକ୍ତୃତା, ଲେଖା ଓ ଅନ୍ୟସବୁ ଉପାୟରେ ପରିଷ୍କାର କରିଦେଲେ—ଏଥିରେ ବ୍ୟକ୍ତିଗତ ପ୍ରଶ୍ନ ନାହିଁ; ଏହା ମତଗତ ବିବାଦ । ଏପରିକି ମେ ୧୬ ତାରିଖ ୧୯୭୩ ମସିହାରେ ସେ ଇନ୍ଦିରା ଗାନ୍ଧୀଙ୍କୁ ଏକ ପତ୍ରରେ ଉଲ୍ଲେଖ କରିଥିଲେ—

"ମୁଁ ଏକଥା ପରିଷ୍କାର କରିଦେବାକୁ ଚାହେଁ ଯେ, ମୋ ପକ୍ଷରେ ଇନ୍ଦିରା-ବିରୋଧୀ ହେବାର କୌଣସି କାରଣ ନାହିଁ; ବରଂ ମୁଁ ତୁମର ମଙ୍ଗଳ କାମନା କରେ ଏବଂ ତୁମର ସଫଳତା ବାଞ୍ଛା କରେ ।"

ଏହାର ଜବାବ ଦେଇ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଲେଖିଥିଲେ—"ଆମର ରାଜନୀତିକ ମତଭେଦ ସତ୍ତ୍ୱେ ମୁଁ ବରାବର ଆପଣଙ୍କର ବନ୍ଧୁତ୍ୱର ସୁଯୋଗ ପାଇଆସିଛି ।"

ଲେଖକ ନିଜର ବ୍ୟକ୍ତିଗତ ଅଭିଜ୍ଞତାରୁ କହିପାରେ ଯେ, ଶ୍ରୀମତୀ ଗାନ୍ଧୀ ଜୟପ୍ରକାଶଙ୍କୁ ଏଭଳି ଲେଖିବା ପଛରେ କୌଣସି ଆନ୍ତରିକତା ନଥିଲା । ୧୯୭୫ ମସିହା ଜାନୁୟାରୀ ୨୨ ତାରିଖରେ ଲେଖକ ପ୍ରାୟ ଅଧଘଣ୍ଟାରୁ ଅଧିକ କାଳ ଶ୍ରୀମତୀ ଗାନ୍ଧୀଙ୍କୁ ଭେଟି ତାଙ୍କର ଓ ଜୟପ୍ରକାଶଙ୍କ ଭିତରେ ଏକ ମିଳାମିଶା କରିବା ଲାଗି ନିବେଦନ କରିଥିଲି । ଶ୍ରୀମତୀ ଗାନ୍ଧୀ ସେଭଳି ପ୍ରସ୍ତାବ ଗ୍ରହଣ କରିବା ଲାଗି ସଂପୂର୍ଣ୍ଣ ଅସ୍ୱୀକାର କରି କହିଲେ— "ଜୟପ୍ରକାଶ ମୋର ରକ୍ତ ଚାହାନ୍ତି ।"

ଶ୍ରୀ ଜୟପ୍ରକାଶ ନାରାୟଣ ଆନ୍ଦୋଳନର ସେ ଅବସ୍ଥାରେ, ଏପରିକି ୧୯୭୫ ମସିହାରେ, କେବଳ ଇନ୍ଦିରା ଗାନ୍ଧୀ-ବିରୋଧୀ କି, କଂଗ୍ରେସର ବି ବିରୋଧୀ ନଥିଲେ । ଲେଖକ ଜୟପ୍ରକାଶଙ୍କ ଆନ୍ଦୋଳନ ଆରମ୍ଭ ପରେ ପରେ କଂଗ୍ରେସ ଭିତରେ ଯେଭଳି ଅସହିଷ୍ଣୁ ଭାବ ଓ ଏକ-ଅଧିନାୟକବାଦର ଅନୁଭବ କଲି, ସେତେବେଳେ କଂଗ୍ରେସ ତ୍ୟାଗ କରି ଜୟପ୍ରକାଶଙ୍କ ଆନ୍ଦୋଳନ ସହ ସଂପୃକ୍ତ ହେବାର ଅଭିଳାଷ ପୋଷଣ କରିଥିଲି । ସେହି କଥାବାର୍ତ୍ତାବେଳେ କଂଗ୍ରେସ ତ୍ୟାଗର ପ୍ରସ୍ତାବ ଉଲ୍ଲେଖ କରିବାରୁ ଶ୍ରୀ ଜୟପ୍ରକାଶ ନାରାୟଣ କଂଗ୍ରେସରୁ ଇସ୍ତଫା ଦେବା ପ୍ରସ୍ତାବକୁ ନାପସନ୍ଦ କଲେ; ବରଂ ଜୋର୍ ଦେଇ କହିଲେ—"ଆପଣ କଂଗ୍ରେସ ଛାଡ଼ନ୍ତୁ ନାହିଁ—କଂଗ୍ରେସ ବ୍ୟତୀତ ଆଉ କେଉଁ ବିକଳ୍ପ ରାଜନୈତିକ ସଂଗଠନ ରହିଛି ଯେ ଆପଣ ଛାଡ଼ି ତହିଁରେ ଯୋଗଦେବେ ? କଂଗ୍ରେସ ଭିତରେ ରହି କମ୍ୟୁନିଷ୍ଟ ପ୍ରଭାବରୁ କଂଗ୍ରେସ ନେତୃତ୍ୱକୁ ରକ୍ଷା କରିବାର କାର୍ଯ୍ୟ କରନ୍ତୁ ।"

କଂଗ୍ରେସ ମଧ୍ୟ ଅଗଣତାନ୍ତ୍ରିକ ପ୍ରବୃତ୍ତିର ବିରୋଧ କରିବ ବୋଲି ଜୟପ୍ରକାଶ ଭରସା ରଖିଥିଲେ । ତେଣୁ ତାଙ୍କ ଆନ୍ଦୋଳନ କେବେ ବ୍ୟକ୍ତିବିଶେଷ ବିରୁଦ୍ଧରେ ନଥିଲା । ଏହା

ଇନ୍ଦିରା ଗାନ୍ଧୀଙ୍କୁ ଅଗୋଚର ଥିବ ବୋଲି ମୁଁ ବିଶ୍ୱାସ କରୁନାହିଁ । ନିଜର ରାଜନୀତିକ ଅଭିଳାଷ ସିଦ୍ଧ କରିବା ନିମନ୍ତେ ସେ ଏଭଳି ପ୍ରସ୍ତୁତିର ଆବଶ୍ୟକତା ଅନୁଭବ କରିଥିଲେ ।

ଅତ୍ୟାଗ୍ରହୀ ଶାସକ, ବିଶେଷତଃ ଏକଚ୍ଛତ୍ରବାଦୀଙ୍କ ଭିତରେ, ଥରେ ଭୟ ଉପୁଜିଲେ, ସେମାନେ ଯେ କୌଣସି ଅନ୍ୟାୟ ପଦକ୍ଷେପ ନେବାକୁ ପଶ୍ଚାଦ୍‌ପଦ ହୁଅନ୍ତି ନାହିଁ । କେବଳ ଇନ୍ଦିରା ଗାନ୍ଧୀଙ୍କ ମନରେ ଏଭଳି ଭୟ ଜାତ ହେବାରୁ ଯେ ୧୯୭୫ ଜୁନ ମାସରେ ସେ ଏମର୍ଜେନ୍‌ସି ଘୋଷଣା କରି ଦେଶରୁ ନାଗରିକ ଅଧିକାର ଖର୍ବ କଲେ, ଗଣତନ୍ତ୍ରର ହତ୍ୟା କଲେ, ସାମରିକ ଆଇନ ଅପେକ୍ଷା ଅଧିକ କଠୋର ନିର୍ମମ ଆଇନ ଅର୍ଡିନାନ୍‌ସ ଜାରିକଲେ, ତାହା ନୁହେଁ; ତାଙ୍କ ମନରେ ଓ ତାଙ୍କର ଏଭଳି ଅଗଣତାନ୍ତ୍ରିକ କାର୍ଯ୍ୟରେ ସହଯୋଗୀ କଂଗ୍ରେସ ଲୋକ ଓ କମ୍ୟୁନିଷ୍ଟ ପାର୍ଟି ପ୍ରାଣରେ ମଧ୍ୟ ଭୟ ଜାତ ହେଲି ଯେ ଜୟପ୍ରକାଶଙ୍କ ପ୍ରସ୍ତାବିତ ଗଣତନ୍ତ୍ର ଯଦି ଦେଶଲୋକଙ୍କ ସମର୍ଥନ ପାଇ ଦେଶରେ ଦୃଢ଼ ଓ ପ୍ରଭାବଶାଳୀ ହୋଇଯାଏ, ତେବେ ସର୍ବାଧିକ ପରାଜୟ ହେବ ସେଭଳି ଶକ୍ତିର । ସେମାନଙ୍କର ରାଜନୀତିକ କୌଶଳ ବିଫଳ ହେବ ।

ଏଠାରେ ୧୯୭୩ ମସିହାରେ ଶ୍ରୀ ଜୟପ୍ରକାଶ ନାରାୟଣ ତାଙ୍କ ଆନ୍ଦୋଳନଦ୍ୱାରା କିଭଳି ପରିବର୍ତ୍ତନ ଚାହିଁଥିଲେ, ଆଲୋଚନା କରିବା ପ୍ରାସଙ୍ଗିକ ହେବ । କାରଣ ତାଙ୍କ ପ୍ରସ୍ତାବିତ ନୀତି ଓ କାର୍ଯ୍ୟଗୁଡ଼ିକ ଯଦି ସେତେବେଳେ ସ୍ୱୀକୃତ ହୋଇଥାଆନ୍ତା, ତେବେ ଭାରତର ଗଣତନ୍ତ୍ର ପୂର୍ବପରି ସୁଦୃଢ଼ ରହିଥାଆନ୍ତା ଏବଂ ଦେଶକୁ ଏଭଳି ଏକ ଅଗ୍ନି-ପରୀକ୍ଷା ଭିତର ଦେଇ ଯିବାର ଆବଶ୍ୟକ ପଡ଼ିନଥାନ୍ତା । ଅବଶ୍ୟ ଯେଉଁ ସବୁ ଧ୍ୱଂସକାରୀ ଓ ଅବାଞ୍ଛିତ ରାଜନୀତିକ ଶକ୍ତି ଭାରତର ରାଜନୀତିକ୍ଷେତ୍ରରୁ ବିଲୀନ ହୋଇଗଲେ, ସେ ଶକ୍ତିଗୁଡ଼ିକ ମଧ୍ୟ ଲୋପପାଇଯାଇଥାନ୍ତେ । ତେଣୁ ସେମାନେ ଶେଷ ପର୍ଯ୍ୟନ୍ତ ସଂଗ୍ରାମ ନ କରି ଛାଡ଼ନ୍ତେ କିପରି !

୧୯୭୩ ବେଳକୁ ଦେଶ ଯେଉଁ ବ୍ୟାଧିଗ୍ରସ୍ତ ହୋଇଥିଲା, ଜୟପ୍ରକାଶ ତାହା ଉତ୍ତମ ରୂପେ ଉପଲବ୍ଧି କରିପାରିଥିଲେ ଏବଂ ସେଥି ସକାଶେ ପ୍ରଚଳିତ ପଦ୍ଧତିର ନିମ୍ନଲିଖିତ ସଂଶୋଧନ ଗଣତାନ୍ତ୍ରିକ ପଦ୍ଧତିରେ, ବିନା ଆନ୍ଦୋଳନରେ ଦାବି କରିଥିଲେ । କେବଳ ପ୍ରଧାନମନ୍ତ୍ରୀଙ୍କୁ ବାରମ୍ବାର ଲେଖି ନ ଥିଲେ, ୧୯୭୩ ମସିହାରେ ରାଜନୀତିକ ଦୁର୍ନୀତି ଦୂର କରିବା ନିମନ୍ତେ ନିର୍ଦ୍ଦିଷ୍ଟ ପ୍ରସ୍ତାବ ଘେନି ଦୁଇଥର ଭେଟି ଆଲୋଚନା କରି ନିରାଶ ହୋଇ ଫେରିଥିଲେ । ୧୯୭୩ ମେ ମାସରେ ମଧ୍ୟ ଭାରତ ପାର୍ଲିମେଣ୍ଟର ପ୍ରତ୍ୟେକ ସଦସ୍ୟଙ୍କ ନିକଟକୁ ତାଙ୍କର ନିର୍ଦ୍ଦିଷ୍ଟ ପ୍ରସ୍ତାବଗୁଡ଼ିକ ପୁସ୍ତିକା ଆକାରରେ ଛପାଇ ବାଣ୍ଟିଥିଲେ ଏବଂ ନିବେଦନ କରି କହିଥିଲେ—

"ପ୍ରିୟ ବନ୍ଧୁଗଣ ! ମୁଁ ଦେଶର ତିନୋଟି ଅତି ଜୀବନ୍ତ ସମସ୍ୟା ସମ୍ପର୍କରେ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରି । ଏ ବିଷୟଗୁଡ଼ିକ ସମ୍ବନ୍ଧରେ ତୁରନ୍ତ କାର୍ଯ୍ୟବିଧାନ

ହେବା ବାଞ୍ଛନୀୟ ବୋଲି ଏକପ୍ରକାର ସର୍ବସମ୍ମତ ଜାତୀୟ ଦାବି ଉଠିଛି । ଯଥାସମ୍ଭବ ମୁଁ କେତେକ କାର୍ଯ୍ୟକାରୀ ଓ ବାସ୍ତବ ପ୍ରସ୍ତାବ ମଧ୍ୟ ଦେଇଛି । ତାହା ଅପେକ୍ଷା ଆହୁରି ଅଧିକ ଏବଂ ଉତ୍ତମ ପ୍ରସ୍ତାବ ବି କେହି ଦେଇପାରନ୍ତି । ତାହା ଆପଣମାନଙ୍କର ଓ ପାର୍ଲିମେଣ୍ଟର ବିବେଚନାର ବସ୍ତୁ । ମୋର ଆପଣମାନଙ୍କ ନିକଟରେ ଏକମାତ୍ର ଅଳି ଯେ, ମୁଁ ଯେଉଁ ସମସ୍ୟାଗୁଡ଼ିକ ଉତ୍ଥାପନ କରିଛି, ସେଗୁଡ଼ିକ ପ୍ରତି ଆପଣଙ୍କର ସକ୍ରିୟ ଓ ଜରୁରି ବିଗ୍ଭର ଦୃଷ୍ଟି ପଡ଼ୁ । ଏଗୁଡ଼ିକ ସମଗ୍ର ଜାତିର ସମସ୍ୟା—ଦଳଗତ ନୁହେଁ । ଆପଣମାନେ ଯଦି ଏ ବିଷୟଗୁଡ଼ିକୁ ଏକ ରଚନାତ୍ମକ ଦୃଷ୍ଟିକୋଣରୁ ବିଗ୍ଭର କରିବେ, ତେବେ ଶାସକ ଓ ବିରୋଧୀଦଳ ଏକତ୍ର ମିଳି ଏକ କାର୍ଯ୍ୟକାରୀ ଯୋଜନାମାରେ ପହଞ୍ଚି ନ ପାରିବାର କୌଣସି କାରଣ ମୁଁ ଦେଖିପାରୁନାହିଁ । ବିଭିନ୍ନ ମତ ସମ୍ବନ୍ଧରେ ବାରମ୍ବାର ଟଣାଭିଡ଼ା ପରିବର୍ତ୍ତେ ଏକ ସ୍ଥାୟୀ ଅଚଳ ଅବସ୍ଥାକୁ ଭାଙ୍ଗିବା ଲାଗି ନିର୍ଦ୍ଦିଷ୍ଟ ଦିଗରେ ଗୋଟିଏ ପଦକ୍ଷେପର ମୂଲ୍ୟ ବହୁତ ବେଶି ।

କଂଗ୍ରେସର ପାର୍ଲିମେଣ୍ଟରେ ଅତ୍ୟଧିକ ବହୁମତ ରହିଛି ଏବଂ ପାର୍ଟି-ଦୃଷ୍ଟିକୋଣରୁ ଗ୍ଭହିଁଲେ ଆପଣାର ପ୍ରସ୍ତାବ ଅକ୍ଳେଶରେ ପାସ୍ କରାଇ ନେଇ ପାରିବ । ଜାତୀୟ ସ୍ୱାର୍ଥ ଅପେକ୍ଷା ଦଳସ୍ୱାର୍ଥକୁ କଂଗ୍ରେସ ଦଳ ଅଧିକ ଗୁରୁତ୍ୱ ଦେଇପାରେ । କିନ୍ତୁ ମୁଁ ଆଶା କରୁଛି, ଦୂରଦୃଷ୍ଟିରୁ ବିଷୟଗୁଡ଼ିକ ବିଗ୍ଭର ହେବ ଏବଂ ଏପରି ଦଳଗତ ଲାଳସାକୁ ପରିହାର କରାଯିବ, ବିରୋଧ ସହ ଯଥାସମ୍ଭବ ସର୍ବାଧିକ ସମ୍ମତିରେ କାର୍ଯ୍ୟ କରିବାର ପ୍ରୟାସ ଦେଖାହେବ । ମୁଁ ମଧ୍ୟ ଏତଦ୍ଦ୍ୱାରା ବିରୋଧୀଦଳଗୁଡ଼ିକୁ ଅନୁରୋଧ କରୁଛି, ସେମାନେ ଦଳଗତ ଦୃଷ୍ଟିକୋଣ ଛାଡ଼ନ୍ତୁ ଏବଂ କେବଳ ଜାତୀୟସ୍ୱାର୍ଥ ହିଁ ସେମାନଙ୍କର ଚିନ୍ତା ଓ କାର୍ଯ୍ୟକୁ ପ୍ରଭାବିତ କରୁ ।"

ଦେଶରେ ସଂଘର୍ଷ ନୁହେଁ ସମାଧାନ ଲାଗି, ଦେଶର ନୈତିକ ମାନଦଣ୍ଡକୁ ଉଚ୍ଚ-ସମ୍ମାନ ଦେବାଲାଗି, ଦେଶର ଗଣତାନ୍ତ୍ରିକ ପରମ୍ପରାକୁ ବଜାୟ ରଖିବା ଲାଗି ଏବଂ ଗଣତାନ୍ତ୍ରିକ ପଦ୍ଧତିକୁ ସୁଦୃଢ଼ କରିବା ନିମନ୍ତେ ଦେଶପ୍ରେମୀ ଜୟପ୍ରକାଶଙ୍କର ଏହା ଥିଲା ଦେଶର ଭାଗ୍ୟ-ନିୟନ୍ତା ଏବଂ ନୀତି-ନିର୍ଦ୍ଧାରକ ଭାରତର ସଂସଦ ସଦସ୍ୟଙ୍କ ପ୍ରତି ଏକ ବ୍ୟାକୁଳ ନିବେଦନ ।

ଯେଉଁ ବିଷୟଗୁଡ଼ିକ ଉପରେ ସେ ଜୋର୍ ଦେଇଥିଲେ, ଯାହାର ତୁରନ୍ତ ସମାଧାନ ନହେଲେ ଦେଶର ଗଣତନ୍ତ୍ର ବିପନ୍ନ ହେବ ଏବଂ ଦେଶ ଏକନାୟକତ୍ୱ ଆଡ଼କୁ ଗତି କରିଯିବାର ସମ୍ଭାବନା ବରାବର ରହିବ, ସେଗୁଡ଼ିକର ସଂକ୍ଷିପ୍ତ ସୂଚନା ଏଠାରେ ଦିଆଯାଇପାରେ । ଏହା ବିଗ୍ଭର କଲାବେଳେ ଏ କଥା ମଧ୍ୟ ସ୍ମରଣ ରଖିଲେ ଉତ୍ତମ ହେବ ଯେ, ଏସବୁ ୧୯୭୩ ମସିହାର ଘଟଣା, ଗୁଜରାଟ କିମ୍ବା ବିହାରରେ ଆନ୍ଦୋଳନ ଆରମ୍ଭ ହେବା ବହୁପୂର୍ବର ।

ବିଷୟଗୁଡ଼ିକ ସଂକ୍ଷିପ୍ତରେ ନିମ୍ନପ୍ରକାରର :

(୧) ଭ୍ରଷ୍ଟାଚାର—

ଏକ ଦାବି ହେଉଛି ଭ୍ରଷ୍ଟାଚାର ନିରାକରଣ । ଏହା ଆଉ କେବଳ ଏକ ନୈତିକ ପ୍ରଶ୍ନ ହୋଇ ରହିନାହିଁ । ଆମକୁ ଏହାର ନିରାକରଣ କରିବାକୁ ପଡ଼ିବ । ଏହାର ମୂଳରେ କୁଠାରାଘାତ କରିବା ଦରକାର । ମୁଁ ପ୍ରଥମେ କାହିଁକି ରାଜନୀତିକ ଓ ଶାସନରେ ଥିବା ଦୁର୍ନୀତିର ଲୋପ ଚାହୁଁଛି ? କାରଣ ଏହାର ମୂଳ ଉତ୍ସ ସେହି ସ୍ତରରେ ରହିଛି । ଏହି ଧାରାରେ ଲୋକଙ୍କ ଜୀବନର ସକଳ ବିଭାଗ ଦୂଷିତ ହୋଇଗଲଣି ।

ନିର୍ବାଚନ ଲଢ଼ିବା ଲାଗି ପ୍ରଧାନମନ୍ତ୍ରୀଙ୍କର କୋଟି କୋଟି ଟଙ୍କା ଦରକାର ପଡ଼ୁଛି । ଧନପତିମାନେ ପ୍ରତ୍ୟକ୍ଷ ଭାବରେ ପ୍ରଧାନମନ୍ତ୍ରୀଙ୍କ ହାତରେ ଧନ ଦେବା ଲାଗି ବ୍ୟଗ୍ରତା ଦେଖାଉଛନ୍ତି । ସେମାନେ ଏହାକୁ ଏକ ଚକ୍ର ସ୍ୱରୂପ ଦେଉଛନ୍ତି; ଯେ ଏକଲକ୍ଷ ଦେଉଛି, ସେ ସେଥିରୁ ଦଶଲକ୍ଷ ଫାଇଦା ଉଠାଇବାକୁ ଚାହେଁ ।

ଶାନ୍ତନମ୍, ଓ୍ୱାଞ୍ଚୁ ଓ ଶାସନ ସଂସ୍କାର କମିଟି ଏ ସମ୍ବନ୍ଧରେ ସେମାନଙ୍କର ବିଭିନ୍ନ ସୁପାରିଶ ଦେଇଛନ୍ତି । ମୁଁ ମଧ୍ୟ କେତେକ ପ୍ରସ୍ତାବ ଦେଇଛି । ତଥାପି ଦିଲ୍ଲୀରେ କ୍ଷମତା-ଧିକାରୀଗଣ ଏ ବିଷୟରେ ନୀରବ ରହିଛନ୍ତି ।

ଭ୍ରଷ୍ଟାଚାର କେବଳ ମନ୍ତ୍ରୀଙ୍କ ଭିତରେ ସୀମାବଦ୍ଧ ନୁହେଁ । ମ୍ୟୁନିସିପାଲିଟିଗୁଡ଼ିକରେ ଏବଂ ବ୍ୟବସାୟ ଭିତରେ ଭ୍ରଷ୍ଟାଚାର ଭର୍ତ୍ତିହୋଇଛି ।

ଯେଉଁମାନେ ଭ୍ରଷ୍ଟାଚାର ଦୂର କରିବେ, ସେମାନେ ଅନ୍ତତଃ ସଚ୍ଚୋଟ ହେବା ଦରକାର ।

(୨) ମୌଳିକ ନାଗରିକ ଅଧିକାର—

ମୌଳିକ ସ୍ୱାଧୀନତା ରକ୍ଷା ବିଷୟରେ ସମସ୍ତେ ଏକମତ । ପାର୍ଲିମେଣ୍ଟର ଅଧିକାର ରହିଛି ସ୍ୱାଧୀନତାର ମୌଳିକ ଅଧିକାରକୁ ବି ସଂଶୋଧନ କରିପାରିବ । ଏ ବିଷୟରେ କିନ୍ତୁ ସୁପ୍ରିମ କୋର୍ଟ ପୂରା ଓ ସାର୍ବଭୌମ କ୍ଷମତା ଅଛି ବୋଲି ସ୍ପଷ୍ଟ କହିଲେ । ସୁପ୍ରିମ୍ କୋର୍ଟଙ୍କ ମତରେ ସମ୍ବିଧାନର ମୌଳିକ ଗଠନତନ୍ତ୍ରକୁ ଆଞ୍ଚ ଆସିବା ପରି ସଂଶୋଧନ କରାଯାଇ ପାରିବନାହିଁ ।

ପାର୍ଲିମେଣ୍ଟର ସଂପୂର୍ଣ୍ଣ ଅଧିକାର ବିଷୟରେ କାହାରି ବିଶେଷ ଆପତ୍ତି ନାହିଁ । ମାତ୍ର ଏଭଳି ଅଧିକାର ଯଦି ଭିନ୍ନ ଭାବରେ ବ୍ୟବହୃତ ହୁଏ, ତେବେ ଦେଶରେ ବିଷମ ପରିସ୍ଥିତି ସୃଷ୍ଟି ହେବ । ପ୍ରଧାନମନ୍ତ୍ରୀ ଓ ଅନ୍ୟ ନେତାମାନେ ନିର୍ଭର ପ୍ରତିଶ୍ରୁତି ଦେଇଛନ୍ତି ଯେ ଲୋକଙ୍କ ସ୍ୱାର୍ଥବିରୋଧରେ କେବେ ପାର୍ଲିମେଣ୍ଟର ଏ ଅଧିକାର ପ୍ରୟୋଗ ହେବ ନାହିଁ । କିନ୍ତୁ ଭବିଷ୍ୟତ ପାର୍ଲିମେଣ୍ଟ ଲାଗି ଏପରି ଗ୍ୟାରେଣ୍ଟି କିଏ ଦେବ ? ଏବେ ବି ଶାସକଦଳ

ଭିତରେ ପ୍ରଭାବଶାଳୀ ବ୍ୟକ୍ତି ରହିଛନ୍ତି ଯେଉଁମାନଙ୍କର ଗଣତନ୍ତ୍ରପ୍ରତି ପୂର୍ଣ୍ଣ ଅନୁରକ୍ତି ନାହିଁ ଏବଂ ପ୍ରଧାନମନ୍ତ୍ରୀ ନାପସନ୍ଦ କରିବା ସତ୍ତ୍ୱେ ଏକ 'ସୀମାବଦ୍ଧ ଡିକ୍ଟେଟରଶିପ୍'ର ପ୍ରସ୍ତାବ ଉଠାଇଛନ୍ତି । ବର୍ତ୍ତମାନ ଯଦିଓ ସମ୍ଭାବନା ଅତି ଊଣା ଜଣାପଡ଼ୁଛି, ତଥାପି ଏପରି ମତ ଯେ କ୍ରମେ ସଂଖ୍ୟାଧିକ ସମର୍ଥନ ଲଭ କରିବ ନାହିଁ, କିଏ କହିବ ? ଏପରି ହେଲେ ଡିକ୍ଟେଟରଶିପ୍-ପକ୍ଷବାଦୀମାନେ ସମ୍ବିଧାନକୁ ବ୍ୟବହାର କରି ଗଣତନ୍ତ୍ରର ଧ୍ୱଂସ କରିବେ । ଇତିହାସରେ ପୁଣି ଥରେ ଦେଖାଯିବ ଯେ ଗଣତନ୍ତ୍ର ହିଁ ଗଣତନ୍ତ୍ରକୁ ହତ୍ୟା କରିବାର ଏକ ଅସ୍ତ୍ରରୂପେ ବ୍ୟବହୃତ ହୋଇପାରିଲା ।

ତେଣୁ ଏଭଳି ପରିସ୍ଥିତି ଘଟିବାରେ ବାଧା ଦେବା ଦୃଷ୍ଟିରୁ ପାର୍ଲିମେଣ୍ଟ କେବଳ ସମ୍ପତ୍ତି ବିଷୟକ ଦଫା ଭିନ୍ନ ଅନ୍ୟ ମୌଳିକ ସ୍ୱାଧୀନତା ଅଧିକାର ଉପରେ ହସ୍ତକ୍ଷେପ କରିବ ନାହିଁ ବୋଲି ନିଜ ଉପରେ ପ୍ରତିବନ୍ଧ ଲଗାଇବା ଉଚିତ ।

(୩) ବିଚାରବିଭାଗର ସ୍ୱାଧୀନତା—

ଏଥିଭିତରେ ବିଚାର ବିଭାଗ ବିଷୟରେ ଏପରି କେତେକ ଘୋଷଣାମାନ କରାଯାଇଛି, ଯେଉଁଥିରେ ଶାସନ କର୍ତ୍ତୃପକ୍ଷ ବିଚାର ବିଭାଗକୁ ଭୟ ଦେଖାଇ ତାଙ୍କ ଆଜ୍ଞାନୁସାରେ କାର୍ଯ୍ୟ କରିବାକୁ ବାଧ କଲାଭଳି ଏକ ବାୟୁମଣ୍ଡଳ ସୃଷ୍ଟି ହୋଇଛି ।

ବିଚାରପତିମାନଙ୍କ ନିଯୁକ୍ତି ଏବଂ ବିଶେଷ ଭାବରେ ଯେପରି ସୁପ୍ରିମ କୋର୍ଟର ପ୍ରଧାନ ବିଚାରପତି ନିଯୁକ୍ତ କରାଗଲା ଓ ସିନିଅର ବ୍ୟକ୍ତିଙ୍କୁ ବାଦ୍ ଦେଇ ଜଣେ ଜୁନିଅର ବିଚାରପତିଙ୍କୁ ନିଯୁକ୍ତ କରାଗଲା, ସେଥିରେ ଏହି ନିଯୁକ୍ତି ଓ ଅନ୍ୟାନ୍ୟ ବିଷୟରେ କେତେକ ନିର୍ଦ୍ଦିଷ୍ଟ ନୀତି ଅନୁସରଣ କରାନଗଲେ ଏବଂ ବିଚାରବିଭାଗ ଶାସନ କର୍ତ୍ତୃପକ୍ଷଙ୍କ ଅଧୀନ ଅବସ୍ଥାକୁ ଆସିଗଲେ, ଗଣତନ୍ତ୍ର ସମ୍ପୂର୍ଣ୍ଣରୂପେ ଦୋହଲିଯିବ । ବିଚାର ବିଭାଗର ସ୍ୱାଧୀନତା ଅକ୍ଷୁଣ୍ଣ ରଖିବା ଲାଗି ବିରୋଧ ପକ୍ଷ ମଧ୍ୟ ଗୃହୀତ । ଦେଶରେ ଥିବା ସବୁ ବାର୍ ଆସୋସିଏସନ୍, ବିରୋଧୀ ଦଳ, ପାର୍ଲିମେଣ୍ଟ—ମିଳିତ ଭାବରେ ବିଚାର ବିଭାଗରେ ବିଚାରପତିଙ୍କ ନିଯୁକ୍ତି ଓ ଅନ୍ୟାନ୍ୟ ଦାୟିତ୍ୱ ବିଷୟରେ ଏକ ସର୍ବସମ୍ମତ ନୀତି ଅନୁସୃତ ହେବା ଉଚିତ ।

ଏଥିରୁ ଦେଖାଯିବ ଯେ ଗଣତନ୍ତ୍ରର ରକ୍ଷା ଲାଗି କେତେକ ନିତାନ୍ତ ରକ୍ଷାକବଚକୁ ପ୍ରାଧାନ୍ୟ ଦେଇ ଜୟପ୍ରକାଶ ଏସବୁ ଦାବି ପାର୍ଲିମେଣ୍ଟ ସଭ୍ୟମାନଙ୍କ ପାଖରେ ରଖିଥିଲେ ଏବଂ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ମଧ୍ୟ ପତ୍ରଦ୍ୱାରା ଜଣାଇଥିଲେ । ଏଥିରେ ସମ୍ପୂର୍ଣ୍ଣ କ୍ରାନ୍ତିର ଉଲ୍ଲେଖ ନାହିଁ କିମ୍ବା ସମ୍ପୂର୍ଣ୍ଣ କ୍ରାନ୍ତିରେ ସେ ଯେଉଁ ଅନ୍ୟ ଆର୍ଥିକ ଓ ସାମାଜିକ ପରିବର୍ତ୍ତନର କଳ୍ପନା କରୁଛନ୍ତି, ସେ ବିଷୟରେ କିଛି ଚର୍ଚ୍ଚା କରିନାହାନ୍ତି । ମୂଳ ନୀତି ହେଲା ଗଣତାନ୍ତ୍ରିକ ନୀତି ଓ ପଦ୍ଧତି କିଭଳି ସୁଦୃଢ଼ ହେବ ଏବଂ ଦେଶରେ ଏକନାୟକତ୍ୱର ଚେର ମାଡ଼ିବାକୁ ଯେମିତି ସୁଯୋଗ ନମିଳିବ ।

ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଏହି ମୌଳିକ ଓ ମୁଖ୍ୟ ଦାବିଗୁଡ଼ିକ ସମ୍ବନ୍ଧରେ କୌଣସି ସନ୍ତୋଷଜନକ ଜବାବ ନ ଦେଇ ବରଂ ଲେଖିଲେ—ଯଦି ନୈରାଶ୍ୟବାଦ ପ୍ରଚାର କରାଯାଏ ଏବଂ ଦକ୍ଷିଣ ଓ ବାମପନ୍ଥୀ ପ୍ରତିକ୍ରିୟାବାଦୀଙ୍କ ଏକ ମିଳିତ ଫ୍ରଣ୍ଟ କରାଯାଏ, ସେଥିରେ ଦେଶପକ୍ଷରେ ବଡ଼ ବିପଦ; ନଚେତ୍ ଗଣତନ୍ତ୍ର, ବିଚାର ବିଭାଗର ସ୍ୱାଧୀନତା ଓ ମୌଳିକ ଅଧିକାର ଉପରେ କିଛି ବିପଦ ପହଞ୍ଚିନାହିଁ । ଏତେ ବଡ଼ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ବିଷୟରେ ପ୍ରଧାନମନ୍ତ୍ରୀଙ୍କର ଏଭଳି ଉଦାସୀନ ଓ ବେପରୁଆ ମନୋବୃତ୍ତି ଜୟପ୍ରକାଶଙ୍କୁ ଆହୁରି ଦୁଃଖ ଦେଲା । ସେ ଜବାବରେ ଲେଖିଲେ—"ମୁଁ ତୁମକୁ ଦେଶର ପ୍ରଧାନମନ୍ତ୍ରୀ ଭାବରେ ଦେଶର ଏଭଳି କେତେକ ମନ୍ଦ ଇଙ୍ଗିତକୁ ରୋକିବା ଓ ଗଣତନ୍ତ୍ରକୁ ମଜବୁତ କରିବା ଉଦ୍ଦେଶ୍ୟରେ ପତ୍ର ଲେଖିଥିଲି । ଏଠାରେ ଆମେ ତୁମେ କଣ କରୁଛେ ବା କରିବା, ସେ ପ୍ରଶ୍ନ ଉଠୁନାହିଁ । ଏ କଥା ଭୁଲିଯିବା ଉଚିତ ନୁହେଁ ଯେ, କେଣେ କିଛି କ୍ଷମତାରେ ଚିରସ୍ଥାୟୀ ହୋଇ ରହିପାରିବ ନାହିଁ । ତୁମେ ଥିବା ପର୍ଯ୍ୟନ୍ତ ସବୁ ନିରାପଦ ରହିଛି ବୋଲି ଯୁକ୍ତି ସ୍ୱୀକାର କରିନେଲେ ବି, ଭବିଷ୍ୟତ ସରକାରର ଯେ ଗଣତନ୍ତ୍ର ଓ ସମାଜବାଦ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଭିନ୍ନ ଧାରଣା ରହିବ ନାହିଁ, ଏହା କିଏ ଆଜିଠୁଁ କହିପାରିବ ? ତେଣୁ ବ୍ୟକ୍ତିଗତଭାବରେ କିଏ କଣ କରୁଛି ବା କରିବ, ସେ ପ୍ରଶ୍ନ ଉପରେ ନିର୍ଭର କରି ଭବିଷ୍ୟତକୁ ଛାଡ଼ି ଦିଆଯାଇ ନପାରେ । ଆମକୁ ଏଭଳି ବିପଦକୁ ଏଡ଼ିବା ଦୃଷ୍ଟିରୁ ଶାସନଗତ ବିଧି-ନିଷେଧ ଓ ସମ୍ବିଧାନର ଆବଶ୍ୟକୀୟ ସଂଶୋଧନ କରିବାକୁ ପଡ଼ିବ ।

ଦେଶର ପ୍ରଧାନମନ୍ତ୍ରୀ ଭାବରେ ଏ ବିଷୟଗୁଡ଼ିକ ବିଚାରକୁ ନେବା ଲାଗି ମୁଁ ତୁମକୁ ପୁଣି ଥରେ ଅନୁରୋଧ କରିବି । ମାତ୍ର ତୁମେ ଯାହା ଲେଖିଛ, ତାହାହିଁ ଯଦି ତୁମର ବିଚାର-ସିଦ୍ଧ ମତ ହୋଇଥାଏ, ତେବେ ମୁଁ ନିରାଶ ଓ ଦୁଃଖିତ ହେବି ସିନା ! ଦେଶ ପକ୍ଷରେ ଏଭଳି ଜୀବନ୍ତ ଓ ସୁଦୂରଗାମୀ ସମସ୍ୟା ବିଷୟରେ ପୁଣି ଥରେ ବିଚାର କରିବା ନିମନ୍ତେ ତୁମଠାରୁ କଣ ଆଶା କରାଯାଇ ପାରିବ ନାହିଁ !"

ଏଥିରୁ ଦେଖାଯିବ, ପୂର୍ଣ୍ଣରୂପେ ଗାନ୍ଧୀପନ୍ଥା ଅନୁସରଣ କରି, କୌଣସି ଦଳ କିମ୍ବା ଗୋଷ୍ଠୀ ପ୍ରଭାବରେ ନ ପଡ଼ି, ରାଜନୀତିକ କ୍ଷମତା-କନ୍ଦଳର ବାହାରେ ନିଜକୁ ରଖି, ଦେଶର ମୌଳିକ ଅଧିକାର ରକ୍ଷା ନିମନ୍ତେ ଜୟପ୍ରକାଶଜୀ ବ୍ୟକ୍ତିଗତ ଭାବରେ କିଭଳି ଉଦ୍ୟମ କରିଥିଲେ । ସେ ଉଭୟ ଶାସକ ଓ ବିରୋଧୀଙ୍କୁ, ଏକତ୍ର ଏକ ଉଦ୍ଦେଶ୍ୟରେ ଜାତିକୁ ରକ୍ଷା କରିବା ନିମନ୍ତେ ଓ ମିଳିତଭାବରେ କାର୍ଯ୍ୟ କରିବାର ଆବଶ୍ୟକତା ବିଷୟରେ ଜୋର୍ ଦେଇଛନ୍ତି । ମାତ୍ର ତାଙ୍କର ଏଭଳି ନିବେଦନକୁ ପ୍ରତ୍ୟାଖ୍ୟାନ କରାଯାଇଛି । ଏଥିରୁ ଆହୁରି ପ୍ରମାଣିତ ହେଉଛି ଯେ, ଇନ୍ଦିରା ଗାନ୍ଧୀ ଏମର୍ଜେନ୍‌ସିର ବହୁ ପୂର୍ବରୁ ଦେଶକୁ ଏକଚ୍ଛତ୍ରବାଦ ଆଡ଼କୁ ନେବାଲାଗି ମନସ୍ଥ କରିଥିଲେ ଏବଂ ସେଥିଲାଗି ପ୍ରସ୍ତୁତ ହେଉଥିଲେ ମଧ୍ୟ । ଏଥିରେ ମୌଳିକ ନୀତିଗତ ପ୍ରଭେଦ ସ୍ପଷ୍ଟ ପରିଲକ୍ଷିତ ହେଉଛି; ବ୍ୟକ୍ତିବିଶେଷର ବିଷୟଟି ଉତ୍ଥାପନ କରିବା ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ।

# ରାଜନୀତିକ ନେତୃତ୍ୱର ନୈତିକ ଅଧଃପତନ

ଭାରତର ଏହି ଗଣତନ୍ତ୍ର ରକ୍ଷା ବା ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନର କ୍ରମ-ଅଗ୍ରଗତିରେ ଜୟପ୍ରକାଶଙ୍କର ପାର୍ଲିମେଣ୍ଟ ମେମ୍ବରମାନଙ୍କର ଦୃଷ୍ଟିକୁ ଆଣିଥିବା ତିନୋଟି ମୁଖ୍ୟ ସମସ୍ୟା ଏବଂ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଲେଖିଥିବା ପତ୍ର ଓ ତାହାର ଜବାବ ଅତୀବ ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ଊଣା-ଅଧିକେ ଲବଣ ସତ୍ୟାଗ୍ରହ ଆରମ୍ଭ ପୂର୍ବରୁ ମହାତ୍ମା ଗାନ୍ଧୀ ସେବକାଳର ଇଂରେଜ ଭାଇସରାୟ ଲର୍ଡ଼ ଇରଉଇନ୍‌ଙ୍କୁ ଲେଖିଥିବା ପତ୍ର ସହ ସମାନ, କହିଲେ ଚଳେ । ଫରକ୍ ଏତିକି ଯେ, ଗାନ୍ଧୀଜୀ ଓ କଂଗ୍ରେସ ଆଗରୁ ସ୍ଥିର କରିସାରିଥିଲେ ଆଇନ ଅମାନ୍ୟ ଓ ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରିବା ନିମନ୍ତେ, ପୂର୍ଣ୍ଣ ସ୍ୱାଧୀନତା ହାସଲ ଲାଗି; କିନ୍ତୁ ଏ କ୍ଷେତ୍ରରେ ଜୟପ୍ରକାଶଜୀ କୌଣସି ସଂଗ୍ରାମ କଥା ବିଚାରକୁ ବି ନେଇ ନଥିଲେ, କିମ୍ବା କୌଣସି ଦଳ ବା ସଂଗଠନ ତାଙ୍କ ସହ ଏକମତ ହୋଇପାରିନଥିଲା । ଏପରିକି ଗାନ୍ଧୀଙ୍କର ଏକମାତ୍ର ଦାର୍ଶନିକ ଉତ୍ତରାଧିକାରୀ ରୂପେ ବୋଲାଇହେଉଥିବା ବିନୋବାଜୀ ମଧ୍ୟ ତାଙ୍କ ସହିତ ଏକମତ ନଥିଲେ । ସେ ମୂଳରୁ ଇନ୍ଦିରା-ସରକାର ସହିତ ବାଚନିକ ବିବାଦ କରିବାର ବି ପକ୍ଷପାତୀ ନଥିଲେ । ମହାତ୍ମା ଗାନ୍ଧୀଙ୍କର ଇରଉଇନ୍‌ଙ୍କୁ ଥିଲା ଚରମପତ୍ର; ମାତ୍ର ଏହା ଜୟପ୍ରକାଶଙ୍କର ଆମ ଦେଶର ପାର୍ଲିମେଣ୍ଟ ଓ ପ୍ରଧାନମନ୍ତ୍ରୀଙ୍କ ନିକଟକୁ ଥିଲା ପ୍ରଥମ ରାଜନୀତିକ ପତ୍ର; ସଂଗ୍ରାମ ନୁହେଁ—ସଂଶୋଧନ ଲାଗି, ସମାଧାନ ଲାଗି ।

ଗାନ୍ଧୀଜୀ ଏକ ଅସଲ ଅର୍ଥନୀତିକ ଅସୁବିଧାକୁ କେନ୍ଦ୍ର କରି ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ବିରାଟ ଜନଜାଗରଣ ସୃଷ୍ଟି କରିପାରିଲେ । ସେ ଅସୁବିଧାଟି, ଅର୍ଥାତ୍ ଲବଣ ଉପରେ କର ଦେବା, 'ସାଧାରଣ ଜନତା'କୁ ପ୍ରତ୍ୟକ୍ଷ ଭାବରେ ସ୍ପର୍ଶ କରୁଥିଲା । ବ୍ରିଟିଶ ସାମ୍ରାଜ୍ୟବାଦୀ ଶୋଷଣର ନଗ୍ନ ରୂପ ସାଧାରଣ ଜନତା ଉପଲବ୍ଧି କରିପାରିଲା ନିଜର ଦୈନନ୍ଦିନ ଅନୁଭୂତିରୁ; ତେଣୁ ସେ ବିଦ୍ରୋହ କରି ଉଠିଲା—ଦେଶର ସ୍ୱାଧୀନତାପ୍ରାପ୍ତି ଲାଗି ଏବଂ ବ୍ରିଟିଶ ସରକାରର ଧ୍ୱଂସସାଧନ ଲାଗି ।

ଆମ ଦେଶର ୨୮ ବର୍ଷର ସ୍ୱାଧୀନ ରାଜ୍ୟରେ ଅର୍ଥନୀତିକ ଦୁର୍ଗତି ବୃଦ୍ଧି ପାଉଥିବା ସ୍ଥଳେ, ରାଜନୀତିକ କ୍ଷେତ୍ରରେ ନୈତିକ ଅଧୋଗତି ହିଁ ମୁଖ୍ୟତଃ ସାମାଜିକ, ଅର୍ଥନୀତିକ ଓ ରାଜନୀତିକ ପ୍ରଗତିରେ ପ୍ରଧାନ ଅନ୍ତରାୟ ହୋଇ ଛିଡ଼ା ହୋଇଥିଲା । ପ୍ରତ୍ୟେକ କ୍ଷେତ୍ରରେ ଲୋକେ ହାଡ଼େ ହାଡ଼େ ଏହା ଅନୁଭବ କରୁଥିଲେ । ଏହା ଥିଲା ଭାରତର ଗଣତନ୍ତ୍ରପକ୍ଷରେ ସବୁଠାରୁ ବଡ଼ ଜଟିଳ ପ୍ରଶ୍ନ—ରାଜନୀତିକ ଦୁର୍ନୀତି । ଏହା ଥିଲା ସର୍ବବ୍ୟାପୀ; ଏକ କଳଙ୍କ

ରୂପେ କର୍କଟ ରୋଗ ପରି ସମାଜର ସବୁସ୍ତରରେ ସବୁ କ୍ଷେତ୍ରକୁ ପ୍ରବେଶ କରି ଭିତରେ ଖାଇ-ଯାଇଥିଲା; ବାହାରେ ଦେଖାଯାଉଥିଲା ଏକ କ୍ଷୁଦ୍ର ସଂକେତ; ଯେମିତି କର୍କଟ ରୋଗରେ ହୁଏ । ଠିକଣା ସମୟରେ ଗାନ୍ଧିଜୀ କହିଭଳି, ଜୟପ୍ରକାଶ ନାରାୟଣ ଇନ୍ଦିରା ଗାନ୍ଧୀ ଶାସନ ଓ ଭାରତୀୟ ଗଣତନ୍ତ୍ରର ଅତି ନିଗୂଢ଼ ହୃଦକନ୍ଦରରେ ପ୍ରବେଶ କରିପାରିଲେ ଏହି ସମସ୍ୟାଟିକୁ ଉତ୍ଥାପନ କରି ଏବଂ ତାକୁ ଅଗ୍ରାଧିକାର ଦେଇ । ବୀଣାବାଦକ ଯେଭଳି ବାଦ୍ୟଚାଳନା ପ୍ରକ୍ରିୟାରେ ଅତି ସୂକ୍ଷ୍ମ ଭାବରେ ଅଙ୍ଗୁଳି ଚାଳନା କରି ବୀଣା-ଝଙ୍କାରରେ ମନୁଷ୍ୟ ହୃଦୟରେ ଶିହରଣ ସୃଷ୍ଟି କରିଥାଏ, ସେହିଭଳି ଜୟପ୍ରକାଶ ରାଜନୀତିକ ଦୁର୍ନୀତି ବିଷୟ ଉତ୍ଥାପନ କରି ରାଜନୀତିକ ରୋଗର ମୂଳ କାରଣ କେବଳ ନୁହେଁ, ସାରା ଜାତିର ଅନ୍ତରର ଅକୁହା ବାଣୀ ପ୍ରକାଶ କରି ଜନମନକୁ ଆକର୍ଷଣ କଲେ ଏବଂ ଶାସକ କର୍ତ୍ତୃପକ୍ଷଙ୍କ ହୃଦୟରେ ଭୀତି ଓ ଅସ୍ଥିରତା ପ୍ରବେଶ କରିଗଲା ।

ଏ ବ୍ୟାଧି କିଛି ନୂତନ ଦେଖାଦେଲା ତାହା ନୁହେଁ । ପଣ୍ଡିତ ନେହେରୁଙ୍କ ଅମଳରୁ ହିଁ ଏହା ଆରମ୍ଭ ହୋଇଥିଲା—ଶାସନ ସହ ଏବଂ କ୍ଷମତା ସହ ଦୁର୍ନୀତି ଯେଭଳି ଏକ ଆତ୍ମିକ ପାରିବାରିକ ସଂପର୍କ ପରି ଅତି ଘନିଷ୍ଠଭାବରେ ଜଡ଼ିତ ହୋଇ ରହିଥାଏ—ଅନ୍ତର୍ନିହିତ ଗୁଣ କେବଳ ସୁବିଧା ଓ ସୁଯୋଗ ଦେଖି ଆତ୍ମପ୍ରକାଶ କରେ । ଏ ପ୍ରଲୋଭନ ଓ ପ୍ରଭାବକୁ ଅତିକ୍ରମ କରିବା ଲାଗି ଲୋଡ଼ା ନୈତିକ ଶକ୍ତି । ସେହି ଶକ୍ତିର ଅଭାବଯୋଗୁଁ ବହୁ ଦେଶର ନେତୃତ୍ୱ ଓ ଶାସନାଧିପତି ଏହାକୁ ବଶ କରି ନ ପାରି ଏବଂ ଏହାର ଶିକାର ହୋଇଥିବାରୁ, ବୃହତ୍ ସାମ୍ରାଜ୍ୟ ଓ ଶାସକମାନଙ୍କର ପୃଥିବୀ ଇତିହାସରେ ପତନ ହୋଇଛି । ଏହି ବିଂଶ ଶତାବ୍ଦୀରେ, ଚୀନ ଭଳି ଆମରି ପରି ଏକ ଏସୀୟ ଓ ଅର୍ଦ୍ଧ-ବିକଶିତ ଦେଶରେ ଚରମ ଜାତୀୟବାଦୀ ଚ୍ୟାଙ୍ଗ୍-କାଇ-ସେକ୍‌ଙ୍କର ପତନର ଦୃଷ୍ଟାନ୍ତ ରହିଛି ।

ନେହେରୁଙ୍କ ଅମଳରେ ଏହି ବ୍ୟାଧି ନିରାକରଣ ଲାଗି ବହୁବାର ଦାବି ଆନ୍ଦୋଳନ ହୋଇଛି । ଏ ସମ୍ପର୍କରେ ମୋର ନିଜର କୃତି ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ; ଯଦିଓ ନିଜ କଥା ଲେଖିବା ଏକ ରୁଚିବିରୁଦ୍ଧ କାର୍ଯ୍ୟ । ମୋ ପରି ଏକ କ୍ଷୁଦ୍ର ଲୋକର ବଡ଼ିମା ଦେଖାଇବାର କିଛି ନାହିଁ କିମ୍ବା ମୋର ନିଜର ଯଶଗାନ କରିବା ଉଦ୍ଦେଶ୍ୟରେ ଏହା ଉଲ୍ଲେଖ କରୁନାହିଁ ।

ଘଟଣାଟି ଐତିହାସିକ ସତ୍ୟ ଏବଂ ଆମେ ଯେଉଁ ରାଜନୀତିକ ସମସ୍ୟା ସମ୍ପର୍କରେ ବିସ୍ତୃତ ଆଲୋଚନା କରୁଥାଉଁ ତାହା ସହିତ ସମ୍ପୂର୍ଣ୍ଣରୂପେ ଆନ୍ଦୋଳନର ଏକ ଅଙ୍ଗ ବୋଲି କୁହାଯାଇପାରେ । ଉଚ୍ଚ ରାଜନୀତି କ୍ଷେତ୍ରରେ ଦୁର୍ନୀତି ବ୍ୟାପିଥିବାର ସମସ୍ତେ ଅନୁଭବ କରୁଥିଲେ; ମାତ୍ର ନେହେରୁଙ୍କ ବ୍ୟକ୍ତିତ୍ୱ, ତାଙ୍କର ସାଧୁତା, ନୈତିକ ନେତୃତ୍ୱ ଓ ପ୍ରଭାବ ଏତେ ଅଧିକ ଥିଲା ଯେ, କୌଣସି ବାଚନିକ, ବୈଧାନିକ ଓ ଶାସନଗତ ପ୍ରତିବନ୍ଧକ ବା କାରଣ ନଥିବା ସତ୍ତ୍ୱେ, ନେହେରୁଙ୍କ ପ୍ରତି ଯେଉଁ ଭକ୍ତିମିଶ୍ରିତ ଭୟ ରହିଥାଏ ତାହାଯୋଗୁ,

ତାଙ୍କ ଅମଳରେ ଓ ତାଙ୍କ ନେତୃତ୍ୱରେ ରହିଥିବା ତାଙ୍କର ସହଯୋଗୀ ସହକର୍ମୀଙ୍କ ବିରୁଦ୍ଧରେ କିଛି ଅଭିଯୋଗ ଆଣିବାକୁ କେହି ହିମ୍ମତ କରିପାରୁନଥିଲେ । ଏହା ଯେତେ ଭୟଜନକ ନୁହେଁ, ତେତେ ସେଭଳି ନେତୃତ୍ୱ ପ୍ରତି ସମ୍ମାନଯୋଗ୍ୟ—ଏଭଳି କଥା ପ୍ରକାଶ୍ୟରେ ଉଠାଇଲେ ସେ ସମ୍ମାନରେ ଆଞ୍ଚ ଆସିଯିବ ନାହିଁ ତ ! ଏ ଥିଲା ବିଚାର । ସେମିତି ମୋର କାଲି ପରି ସ୍ମରଣ ହେଉଛି, ଲାଲବାହାଦୁର ଶାସ୍ତ୍ରୀ ସ୍ୱରାଷ୍ଟ୍ର-ମନ୍ତ୍ରୀ ଥିବାବେଳେ ଏକ ଭ୍ରାମାତ୍ମକ ବିବୃତି ଖଣ୍ଡନ କରିବା ନିମନ୍ତେ ମୁଁ ଯେଉଁଦିନ ବିବୃତି ଦେବାକୁ ଲୋକସଭାରେ ଦିନ ଓ ସମୟ ଧାର୍ଯ୍ୟ ହୋଇଥାଏ, ସେଦିନ ସେହି ଲୋକସଭାକକ୍ଷରେ ଆଙ୍ଗ୍ଲୋଇଣ୍ଡିଆନ୍ ନେତା ବନ୍ଧୁ ଫ୍ରାଙ୍କ୍ ଆନ୍ଥୋନୀ ମୋ ପାଖରେ ପହଞ୍ଚି ମୋର ବିବୃତି ଦେଖିବାକୁ ଚାହିଁଲେ; ମତେ ବିବୃତି ଦେବାରୁ ନିବୃତ୍ତ କରିବାଲାଗି ନୁହେଁ, ସେ ତାହା କରିପାରନ୍ତେ ନାହିଁ । ଲାଲବାହାଦୁର ଦେଇଥିବା ତଥ୍ୟରେ କିଛି ଅସତ୍ୟ ରହିଥିଲା, ଏହା ସମସ୍ତଙ୍କୁ ଜଣାଥିଲା । ମୁଁ ସେହି ବିଷୟ ଦର୍ଶାଇଲା-ବେଳେ କାଳେ ଲାଲବାହାଦୁରଙ୍କ ପ୍ରତି କିଛି କର୍କଶ ଭାଷା ବା ଶବ୍ଦ ବ୍ୟବହାର କରିଥିବି, ଏହା ଦେଖିବା ତାଙ୍କର ଅଭିପ୍ରାୟ ଥିଲା । ଲାଲବାହାଦୁର ତାଙ୍କୁ ଏଥିଲାଗି ଆଗରୁ କହିଥିଲେ କି ନାହିଁ ମତେ ଜଣାନାହିଁ; ମୁଁ ସେ କଥା କେବେ ତାଙ୍କୁ ପଚାରିନାହିଁ—ମାତ୍ର ତତ୍କାଳୀନ ନେତାମାନଙ୍କ ଲାଗି ବିରୋଧପକ୍ଷ ମନରେ କିଭଳି ଆଦର ଓ ବିଚାର ରହିଥିଲା, ଏହା ତାହିଁର ଏକ ନିଦର୍ଶନ ।

ତେଣୁ ୧୯୬୩ ମସିହା ଫେବୃୟାରୀ ୨୧ ତାରିଖରେ ଭାରତୀୟ ଲୋକସଭାରେ ନେହେରୁଙ୍କ ଉପସ୍ଥିତିରେ ତାଙ୍କର ମନ୍ତ୍ରିମଣ୍ଡଳର ସଦସ୍ୟ ଭ୍ରଷ୍ଟାଚାର କାରବାରରେ ଜଡ଼ିତ ବୋଲି ମୁଁ ଯେତେବେଳେ ଉଲ୍ଲେଖ କଲି, ସେଥିରେ ନେହେରୁ କିଭଳି ଅଧୀର ହୋଇପଡ଼ିଲେ, ସାରା ପାର୍ଲିମେଣ୍ଟରେ କିପରି ବିଶୃଙ୍ଖଳା ଖେଳିଗଲା ଏବଂ ଦେଶର ସମ୍ବାଦପତ୍ର ଓ ଆନ୍ତର୍ଜାତିକ ସମ୍ବାଦ ସରବରାହ କିପରି ଏକ ଅତି ଗୁରୁତର ଘଟଣା ରୂପେ ଏହାର ପ୍ରକାଶ ଓ ପ୍ରଚାର କରିଥିଲେ, ତାହା ଘଟଣାସ୍ଥଳରେ ଉପସ୍ଥିତ ନ ଥିବା ବ୍ୟକ୍ତି ପକ୍ଷରେ ଅନୁଭବ କରିବା ମୁସ୍କିଲ । ମୋର ଏଭଳି ଅଭିଯୋଗ ପ୍ରମାଣିତ ହେଲା । କେଶବ ଦେଓ ମାଲବ୍ୟଙ୍କ ପରି ଏକ କ୍ୟାବିନେଟ୍ ପାହ୍ୟାର ମନ୍ତ୍ରୀ ଏବଂ ନେହେରୁଙ୍କର ୪୦ ବର୍ଷର ସହଯୋଗୀଙ୍କୁ ମନ୍ତ୍ରୀପଦ ଛାଡ଼ିବାକୁ ପଡ଼ିଲା । ଏ ଗୋଟିଏ ଘଟଣା ପଶ୍ଚାତ୍ତରେ ଆହୁରି କିଭଳି ବହୁ ଉଚ୍ଚ ରାଜନୀତିକ ସ୍ତରରେ ଦୁର୍ନୀତିମୂଳକ ଘଟଣା ପଦାକୁ ଆସିଲା ଏବଂ ଓଡ଼ିଶାର ବିଜୁ ପଟ୍ଟନାୟକ ଓ ବୀରେନ୍ ମିତ୍ରଙ୍କୁ ସରକାରୀ ପଦବୀରେ ରହିବାଲାଗି ଅଯୋଗ୍ୟ ବୋଲି ଘୋଷଣା କରାଯାଇ ପଦତ୍ୟାଗ କରିବା ନିମନ୍ତେ ପଡ଼ିଲା, ସେ ସବୁ ସମ୍ବନ୍ଧରେ କାହାର ଆଗ୍ରହ ଥିଲେ ସେବକାଳରେ ଓଡ଼ିଆରେ "କୃଷକ ପ୍ରକାଶନୀ" ଦ୍ୱାରା ପ୍ରକାଶିତ "ସି. ବି. ଆଇ. ରିପୋର୍ଟ ଓ ଅନାସ୍ଥା ପ୍ରସ୍ତାବ" ଏବଂ ଲେଖକ ଦ୍ୱାରା ପ୍ରକାଶିତ ଇଂରେଜୀ **'C. B. I. Report on Orissa'** କିମ୍ବା ଲିଖିତ ଇଂରେଜୀ ପୁସ୍ତକ **'Political Corruption in India'** ପାଠକରିପାରନ୍ତି ।

ଏହା ଏଠାରେ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ହେଉଛି, ନେହେରୁଙ୍କ ସମୟରେ ବି ରାଜନୀତିକ ଦୁର୍ନୀତି ରହିଥିଲା—ସମ୍ପୂର୍ଣ୍ଣ ଲୋପ ପାଇନଥିଲା ଏବଂ ଆମେମାନେ ଯେ ପ୍ରକାଶ୍ୟ ଅଭିଯୋଗ କରିଥିଲୁ, ତାର ପୂରା ସନ୍ତୋଷଜନକ ସମାଧାନ ହୋଇଥିଲା ବୋଲି କୁହାଯାଇ ପାରିବ ନାହିଁ । ତାହା ପୁଣି ଉଠିଥିଲା ଏକ ରାଜନୀତିକ ବିରୋଧ ହେତୁ—ଜୟପ୍ରକାଶ ତାଙ୍କର ଅଭିଯୋଗ କୌଣସି ବ୍ୟକ୍ତିବିଶେଷ ବିରୁଦ୍ଧରେ କିମ୍ବା ରାଜନୀତିକ ଉଦ୍ଦେଶ୍ୟରେ ଉଠାଇ ନଥିଲେ । ରାଜନୀତିକ ବିରୋଧୀ ପକ୍ଷରୁ ଉଠିଥିବା ଅଭିଯୋଗକୁ ଦଳ ଗୃହରେ ପଡ଼ି ଏହା ରାଜନୀତିକ ଉଦ୍ଦେଶ୍ୟ-ପ୍ରଣୋଦିତ ବୋଲି କେତେକ ସ୍ଥଳରେ ମନ୍ତବ୍ୟ କରିଥିଲେ ସୁଦ୍ଧା, ପଣ୍ଡିତ ନେହେରୁ ଏଥିରେ ଥିବା ନୈତିକ ଦିଗ ଓ ରାଜନୀତିକ ଚରିତ୍ର ଉପରେ ଏହାର ପ୍ରତିକ୍ରିୟା ଦୃଷ୍ଟିରୁ ପୂର୍ଣ୍ଣ ତଦନ୍ତ ଲାଗି ସମ୍ମତ ହୋଇଗଲେ ଏବଂ କରାଇଲେ ମଧ୍ୟ । ଲେଖକ ଏଭଳି ଅଭିଯୋଗ ପାର୍ଲିମେଣ୍ଟରେ ଉଠାଇବାର ୫ ଘଣ୍ଟା ଭିତରେ ନେହେରୁଙ୍କଠାରୁ ପତ୍ର ଆସିଗଲା—"ମୁଁ କିଛି ଜାଣିନଥିଲି, ପ୍ରଥମ ଥର ଲାଗି ଶୁଣିଲି । ବିଶେଷ ବିବରଣୀ ବାହାର କରିବା ନିମନ୍ତେ କେନ୍ଦ୍ର ଗୁଇନ୍ଦା ବିଭାଗକୁ ସାଙ୍ଗେ ସାଙ୍ଗେ ସମ୍ବାଦ ପଠାଉଛି ।" ତାର କିଛି କ୍ଷଣ ପରେ ତତ୍କାଳୀନ କଂଗ୍ରେସ ପାର୍ଲିମେଣ୍ଟାରୀ ପାର୍ଟିର ମୁଖ୍ୟ କାରପରଦାର ଓ ମନ୍ତ୍ରୀ ଧାଇଁଆସିଲେ ମୋ ପାଖକୁ କିଛି ନିର୍ଦ୍ଦିଷ୍ଟ ତଥ୍ୟ ଥିଲେ ଦେବାଲାଗି—ନେହେରୁ ପଠାଇଛନ୍ତି; ସେଗୁଡ଼ିକ ସେ ନିଜେ ତଦନ୍ତ କରିବେ । ଦେଶର ନୈତିକତା ଏହିଭାବରେ ରକ୍ଷାହୋଇଥିଲା ଓ ଗଣତନ୍ତ୍ର ପଦ୍ଧତିର ମର୍ଯ୍ୟାଦା ପ୍ରତିଷ୍ଠା ହେଉଥିଲା ।

କିନ୍ତୁ ପରବର୍ତ୍ତୀ କାଳରେ ତାଙ୍କର କନ୍ୟା ଇନ୍ଦିରା ଗାନ୍ଧୀ ଏଭଳି ଦୁର୍ନୀତିକୁ ଖାଲି ପ୍ରଶ୍ରୟ ଦେଲେ ନାହିଁ—ତାଙ୍କର ଗୋଚରରେ ଓ ପ୍ରତ୍ୟକ୍ଷ ପ୍ରରୋଚନାରେ କିଭଳି ବ୍ୟାପକ ଦୁର୍ନୀତିମୂଳକ କାର୍ଯ୍ୟମାନ ହୋଇଛି, ତହିଁର ବିସ୍ତୃତ ବିବରଣୀ ଏବେ ପ୍ରକାଶ ପାଉଛି । ସେଥିରେ ରାଜନୀତିକ ନେତୃତ୍ୱର ଯେ ପୂର୍ଣ୍ଣରୂପେ ନୈତିକ ଅଧଃପତନ ହୋଇଥିଲା ଏବଂ ଲୋକେ ସେମାନଙ୍କ ଉପରୁ ପୂର୍ଣ୍ଣରୂପେ ଆସ୍ଥା ହରାଇବସିଥିଲେ ଏହା ଅତି ନିଗ୍ରହ ବାସ୍ତବତା । ଏହି ବାସ୍ତବତାକୁ ହିଁ ଜୟପ୍ରକାଶ ଦେଶ ତଥା ଦେଶର ଶାସକବର୍ଗଙ୍କ ଦୃଷ୍ଟି-ଗୋଚର କରିଥିଲେ । ସେ ଲେଖିଥିଲେ—

"ପ୍ରଧାନମନ୍ତ୍ରୀ, ମୋର ମନେହେଉଛି, ଏବେ ବୁଝିସାରିବେଣି ଯେ କେବଳ ଅପ୍ରତିଦ୍ୱନ୍ଦ୍ୱୀ କ୍ଷମତାପ୍ରାପ୍ତି ଯଥେଷ୍ଟ ନୁହେଁ; ବ୍ୟକ୍ତିଗତ ଲୋକପ୍ରିୟତା ଓ ଲୋକଙ୍କ ଭକ୍ତି ଆକର୍ଷଣ କରିବା ଶକ୍ତି ଯଥେଷ୍ଟ ନୁହେଁ; ବହୁସଂଖ୍ୟାରେ ନିର୍ବାଚନ ବିଜୟ ଯଥେଷ୍ଟ ନୁହେଁ; ରାଷ୍ଟ୍ରୀୟକରଣ, ଯାହାକୁ ଭୁଲରେ ଜାତୀୟକରଣ ଆଖ୍ୟା ଦିଆଯାଉଛି, ତାହା ଯଥେଷ୍ଟ ନୁହେଁ—ଏସବୁଗୁଡ଼ିକୁ ଏକତ୍ର ବିଚାରକଲେ ବି ଯାହା ହୋଇଛି, ତାହା ବି ଯଥେଷ୍ଟ ନୁହେଁ । କାରଣ ଏହା ଯଦି ହୋଇଥାଆନ୍ତା, ତେବେ ଦେଶ ଆଜି ଯେ ଅବସ୍ଥାରେ ପଡ଼ିଛି ସେଭଳି ହୋଇ ରହିନଥାନ୍ତା । ପ୍ରଧାନମନ୍ତ୍ରୀ ଯଦି ଏତିକ ହୃଦୟଙ୍ଗମ କଲେଣି, ତେବେ ସେ ନିଜେ ନିଜକୁ ନିଶ୍ଚୟ ପ୍ରଶ୍ନ କରିଥିବେ—ତାହାହେଲେ କେଉଁଠି ଭୁଲ୍ ତ ? ଆମେ କଣ ହରାଇବସିଛୁ ?

ମୁଁ ଜାଣେ ନାହିଁ ତାଙ୍କ ପାଖରେ ଏଥିର କୌଣସି ଉତ୍ତର ରହିଛି କି ନାହିଁ; କିନ୍ତୁ ମୋ ପାଖରେ ଜବାବ ଅଛି । ଏହା କୁହାଯାଉଛି ସାହାଯ୍ୟ କରିବାଲାଗି—କାହା ବିରୁଦ୍ଧରେ ଅଭିଯୋଗ କରିବାଲାଗି ନୁହେଁ, କିମ୍ବା କାହାକୁ ନିନ୍ଦା କରିବା ନିମନ୍ତେ ନୁହେଁ । ଆମେ ହରାଇଛୁ—ଆମ ଦେଶର ରାଜନୀତିକ ନେତୃତ୍ୱର ନୈତିକ କର୍ତ୍ତୃତ୍ୱ—ଏହାର ସମ୍ପୂର୍ଣ୍ଣ ବିପର୍ଯ୍ୟୟ ଘଟିଛି ।

ମୁଁ 'ଦକ୍ଷିଣ ପ୍ରତିକ୍ରିୟାବାଦୀ' ଏବଂ 'ବାମପନ୍ଥୀ ନିଆଁଗିଳା'ଙ୍କ କଥା କହୁନାହିଁ । କିନ୍ତୁ ଦେଶର ସାଧାରଣ ଲୋକ ଯାହା ବିଶ୍ୱାସ କରୁଛି, ତାହା ଯଦି ପ୍ରଧାନମନ୍ତ୍ରୀ ଆଜିଅବଧି ଜାଣିପାରିନାହାନ୍ତି, ତେବେ ସେ ପ୍ରକୃତ ସମ୍ବାଦ ପାଉନାହାନ୍ତି କିମ୍ବା ରଖୁନାହାନ୍ତି ବୋଲି ବୁଝାଯିବ । ସାଧାରଣ ଲୋକ ବିଶ୍ୱାସ କରିବାକୁ ଲାଗିଲାଣି ଯେ, ସମସ୍ତେ ନ ହେଲେ ସୁଦ୍ଧା ଅଧିକାଂଶ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ଗ୍ରାମପଞ୍ଚାୟତ ପ୍ରେସିଡ଼େଣ୍ଟଠାରୁ ଆରମ୍ଭ କରି ପାର୍ଲିମେଣ୍ଟ ମେମ୍ବର ପର୍ଯ୍ୟନ୍ତ ପ୍ରତିନିଧିଗଣ, ସମସ୍ତେ ନହେଲେ ସୁଦ୍ଧା ଅଧିକାଂଶ, ଉଚ୍ଚ ନୀଚ ସବୁସ୍ତରର ସରକାରୀ କର୍ମଚାରୀ ଭ୍ରଷ୍ଟାଚାରୀ ପାଲଟିଗଲେଣି । ଭ୍ରଷ୍ଟାଚାର ବିଭିନ୍ନ ରୂପରେ ବ୍ୟାପିଗଲାଣି । ଲୋକଙ୍କର ଏ ସାଧାରଣ ଧାରଣା ଭିତରୁ କେନ୍ଦ୍ରର ମନ୍ତ୍ରୀମାନେ ବି ବାଦ୍ ପଡ଼ୁନାହାନ୍ତି; ଅବଶ୍ୟ ସେମାନେ ଜନତାଙ୍କଠାରୁ ବହୁ ଦୂରରେ ଥାଆନ୍ତି । ପ୍ରଧାନମନ୍ତ୍ରୀଙ୍କର ନିଜର ଚିତ୍ର ବି ଆଜି ମେଘାଚ୍ଛନ୍ନ ହୋଇଗଲାଣି; ଅବଶ୍ୟ ଏବେ ବି ଅନ୍ୟମାନଙ୍କ ଅପେକ୍ଷା ତାଙ୍କଠାରେ ଲୋକଙ୍କର ଅଧିକ ବିଶ୍ୱାସ ରହିଛି ।

ହୁଏତ ଉପରେ ଯାହା ବର୍ଣ୍ଣିତ ହେଲା, ତାହା ଏକ ଅତିରଞ୍ଜିତ ଚିତ୍ର ହୋଇ-ଆଇପାରେ । ଭଗବାନଙ୍କୁ ଜଣା, ମୁଖ୍ୟମନ୍ତ୍ରୀଙ୍କ ସମେତ ମନ୍ତ୍ରୀମାନଙ୍କ ଭିତରେ ଲୋକପ୍ରତିନିଧି ଓ ଅଫିସରମାନଙ୍କ ମଧ୍ୟରେ କେତେଜଣ ସାଧୁ ରହିଛନ୍ତି । କିନ୍ତୁ ଜନତା ଭିତରେ ଜାଣିବାର ଏକ ଅଦ୍ଭୁତ ଶକ୍ତି ରହିଛି ଏବଂ ସେମାନଙ୍କର ଧାରଣା ସାଧାରଣତଃ ଠିକ୍ ହୋଇଅଛି । ତାହା ଛଡ଼ା ବର୍ତ୍ତମାନ ସର୍ବବ୍ୟାପୀ ଦୁର୍ନୀତିସହ ସେମାନେ ପ୍ରତ୍ୟକ୍ଷ ସମ୍ପର୍କରେ ବରାବର ଆସୁଥିବାରୁ ସାଧାରଣ ଗପ କଥା ସେମାନେ କହୁନାହାନ୍ତି—ପ୍ରତ୍ୟକ୍ଷ ଭୁକ୍ତଭୋଗୀ ସେମାନେ । କାହାର ପକେଟ ଗରମ୍ ନ କଲେ ସରକାରୀ, ଅର୍ଦ୍ଧସରକାରୀ ବା କୌଣସି ବ୍ୟାଙ୍କର ଶାଖା ଅଫିସରେ ବି ତାଙ୍କ ପକ୍ଷରେ କୌଣସି କାର୍ଯ୍ୟ କରାଇନେବା ମୁସ୍କିଲ ହେଉଛି । ଏହାର ଅସଂଖ୍ୟ ଉଦାହରଣ ଦିଆଯାଇପାରିବ । ଲୋକଙ୍କ ଦୃଷ୍ଟିରେ, ବିନୋବାଜୀଙ୍କ ଭାଷାରେ, ଭ୍ରଷ୍ଟାଚାର ଶିଷ୍ଟାଚାରରୂପେ ଗଣ୍ୟ ହେଲାଣି । ଏସବୁ ତ ହେଲା ତଳସ୍ତରରେ ସେମାନଙ୍କର ନିଜର ବ୍ୟକ୍ତିଗତ ଅନୁଭୂତି; ମାତ୍ର ଅନ୍ୟ ଉପର ସ୍ତରମାନଙ୍କରେ, ଏପରିକି ଦିଲ୍ଲୀରେ ବି, କଣ ସବୁ ଚାଲିଛି, ସେ ବିଷୟରେ ଜନତା ଯଥେଷ୍ଟ ଶୁଣିବାକୁ ପାଇଲାଣି । ସେ ସବୁକୁ ମିଶାଇ ସେ ତାର ମତ ସ୍ଥିର କରିପାରିଛି ।

ସହରରେ ବାସକରୁଥିବା ବୁଦ୍ଧିଜୀବୀ—ସେମାନଙ୍କ ଭିତରୁ ଅଧିକାଂଶ ନିଷ୍ପକ୍ଷ ଓ କୌଣସି ପାଖକୁ ଆଉଜିନଥିବା ବ୍ୟକ୍ତିମାନଙ୍କ ଆଗରେ ଏ ଚିତ୍ରଟି ଆହୁରି କାଳିମାପୂର୍ଣ୍ଣ ।

ଏଭଳି ପରିସ୍ଥିତିରେ ଯଦି ବିରୋଧୀଙ୍କ ସମେତ ସମଗ୍ର ରାଜନୀତିକ ନେତୃତ୍ୱର—ମାତ୍ର କେତେକଙ୍କ ବ୍ୟତୀତରେକେ ପୂର୍ଣ୍ଣ ନୈତିକ କର୍ତ୍ତୃତ୍ୱର ପତନ ଘଟିଛି, ସେଥିରେ ବିସ୍ମିତ ହେବାରେ କିଛି ନାହିଁ ।

ଏହାର ପରିଣତି କଣ ହୋଇଛି ? ସରକାରୀ କଳରେ ଏବଂ ସରକାରର ରାଜନୀତିକ ସଙ୍ଗଠନରେ ନେତା ଓ କର୍ମୀ ସକଳ ଲୋକ ଏକପ୍ରକାର ପକ୍ଷାଘାତ ରୋଗଗ୍ରସ୍ତ ହୋଇ-ସାରିଲେଣି । କେତେକ ଭଲ ହୋଇ ରହିଥାଇପାରନ୍ତି, ମାତ୍ର ତାଙ୍କ ସଂଖ୍ୟା ଅତି ନଗଣ୍ୟ । ସେମାନେ କୌଣସି କାମକୁ ଆସିବେ ନାହିଁ । ଏପରିକି ଏକ ପରିସ୍ଥିତିରେ ଏହା ଅତି ସ୍ୱାଭାବିକ ଯେ ସରକାରର ଅତି ଉତ୍ତମ ପରିକଳ୍ପିତ ନୀତି ଓ ଯୋଜନା କେବଳ କାଗଜ ଭିତରେ ରହିଯାଏ କିମ୍ବା ବିକଳାଙ୍ଗ ହୋଇଯାଏ ଏବଂ ସେଥିରୁ ରାଜନୀତିକଗଣ, ସରକାରୀ ଏବଂ ଆମର ଅପେକ୍ଷାକୃତ ଉତ୍ତମ ଅବସ୍ଥାପନ୍ନ ବ୍ୟକ୍ତିମାନେ ଯେ ବ୍ୟକ୍ତିଗତ ଫାଇଦା ଉଠାନ୍ତି । ଏପରିକି ରିଲିଫ୍ ପାଣ୍ଠି, ଚାଉଳ ଓ ଖାଦ୍ୟଜିନିଷ, ଶିଶୁଖାଦ୍ୟର ବି ଦୁରୁପଯୋଗ ହେଉଛି । ପ୍ରାୟ ସମସ୍ତ ଲୋକହିତକର ଯୋଜନା, ତୁରନ୍ତ ନିଯୁକ୍ତି ଓ ବିକାଶ ଯୋଜନା ଆଦି କାର୍ଯ୍ୟକ୍ରମ ହୁଏତ କାର୍ଯ୍ୟକାରୀ ହୋଇପାରୁନାହିଁ କିମ୍ବା ସେ କାର୍ଯ୍ୟର କିଛି ସ୍ଥାୟୀ ଫଳ ଫଳୁନାହିଁ । ଯାହାକୁ ଦେଶର ଅତି ଆବଶ୍ୟକୀୟ ରାଷ୍ଟ୍ରୀୟ ବିକାଶ ଯୋଜନା ବୋଲି କୋଟି କୋଟି ପୁଞ୍ଜି ଲଗାଣ କରାଯାଉଛି, ତାହା ଏପରି ଅତଳଗର୍ଭକୁ ଚାଲିଯାଉଛି ଯେ ଯେତେ ବହୁଳ ଅର୍ଥ ଯାଉଛି, ତାହା ଆଉ ଉଦ୍ଧାର କରିବା ସମ୍ଭବ ହେଉନାହିଁ । ଭୂସଂସ୍କାର ଏବଂ ସେହି ପ୍ରକାର ଅନ୍ୟ ସଂସ୍କାରମୂଳକ କାର୍ଯ୍ୟ ଅକାମୀ ହୋଇଗଲାଣି । ଭୂମିହୀନ ଲୋକଙ୍କୁ ଦିଆଯାଉଥିବା ଭୂମିକୁ ପ୍ରଭାବଶାଳୀ ରାଜନୀତିକ, ଅଫିସର ଏବଂ ତାଙ୍କ ଆତ୍ମୀୟ ବନ୍ଧୁବାନ୍ଧବମାନେ ମାଡ଼ିବସୁଛନ୍ତି । କଣ୍ଟ୍ରୋଲ ବିଫଳ ହେଲଣି ଏବଂ କଳାବଜାର ବେଶ୍ ବୃଦ୍ଧି ପାଉଛି । ଏକ ସମାନ୍ତରାଳ କଳାବଜାର ଅର୍ଥନୀତି ଦେଶରେ ନିରାଲମ୍ବ ଭାବରେ ବୃଦ୍ଧି ହୋଇଚାଲିଛି ଏବଂ ସେଥିରେ ଅସାଧୁ ରାଜନୀତିକଗଣ ଜୀବିକା ନିର୍ବାହ କରୁଛନ୍ତି । ସର୍ବୋଚ୍ଚ ପାର୍ଟି ନେତାଙ୍କ ସମ୍ମତି ଓ ପୂର୍ଣ୍ଣ ଜ୍ଞାତସାରରେ ଏ ଇଥିରୁ ଅଧିକ ପରିମାଣରେ ନିର୍ବାଚନ ଲାଗି ଅର୍ଥ ଆସୁଛି । ଲୋଭ ଆଶାରେ ଏବଂ କିଛି ସଦ୍ୟ ପ୍ରାପ୍ତି ପରେ ବ୍ୟବସ୍ଥାପକମାନେ ଦଳତ୍ୟାଗ କରୁଛନ୍ତି—ଥରକୁ ଦିଥର—ତାର ସୀମା ନାହିଁ । ହୁଏ ତ ଧନ, ମନ୍ତ୍ରୀପଦ କିମ୍ବା ତତ୍ସମାନ କୌଣସି ପଦବୀ ମିଳିବା ଆଶାରେ ଚତୁର୍ଦ୍ଦିଗରେ ବିଶୃଙ୍ଖଳା ଯେପରି ଘର କରି ରହିଗଲାଣି । ନୈତିକ ଅଧଃପତନ ହେବା ଯୋଗୁଁ ଯେଉଁସବୁ ମନ୍ଦ ପରିଣତି ଘଟିଛି, ତାର ତାଲିକା ଏମିତି କରିବସିଲେ ଶେଷ ହେବ ନାହିଁ । ମାତ୍ର ଉପରେ ଯେତିକି ଲେଖାଗଲା, ତାହା ଉଦାହରଣ ଲାଗି ଯଥେଷ୍ଟ ।"

ମୋର ମନେହୁଏନା ଭାରତର ସେକାଳର ଅବସ୍ଥା ସହ ଯେଉଁମାନେ ପରିଚିତ ଥିବେ ବା ସ୍ମରଣ ରଖିଥିବେ, ସେମାନେ ଏହାଠାରୁ ବାସ୍ତବ ଚିତ୍ର ଆଉ କିଛି ହୋଇପାରିବ ବୋଲି କହିବେ ।

ଏଥିପୂର୍ବେ ଅନ୍ୟାନ୍ୟ ଏହାଠାରୁ ଅପେକ୍ଷାକୃତ ଭଲ ଅବସ୍ଥାରେ ରାଜନୀତିକ ଦଳ ତରଫରୁ ବି ଉଠାଯାଉଥିବା ଅଭିଯୋଗ ବିଷୟରେ ତଦନ୍ତ କରିବାଲାଗି କିଭଳି ପଣ୍ଡିତ ନେହେରୁ ତୁରନ୍ତ ବ୍ୟବସ୍ଥା କରୁଥିଲେ ତାର ଉଲ୍ଲେଖ କରାଯାଇଛି । କିନ୍ତୁ ଦେଶ ଏତେ ବଡ଼ ବିଷମ ପରିସ୍ଥିତିର ସମ୍ମୁଖୀନ ହୋଇଥିବାବେଳେ ସହଯୋଗ ଓ ସାହାଯ୍ୟ କରିବାର ନିବେଦନକୁ ଇନ୍ଦିରା ଗାନ୍ଧୀ କେବଳ ପ୍ରତ୍ୟାଖାନ କଲେ ନାହିଁ, ବୈରିତାର ଭାବ ଦେଖାଇଲେ ।

ଦୋଷୀ ମନ ପାପ ଛୁଇଁଲାପରି କେହି ଦେଶରେ ନୈତିକ ଅବନତି ଘଟୁଛି ବୋଲି କହିଲେ ତାହା ଇନ୍ଦିରା ଗାନ୍ଧୀ ନିଜ ଉପରକୁ ଟାଣିନେଉଥିଲେ ଏବଂ ଦେଶବାସୀ ଏପରିକି ନିଜ ଦଳର ସାଙ୍ଗସାଥୀଙ୍କ ପ୍ରତି ବଡ଼ ଅସନ୍ତୁଷ୍ଟ ହୋଇପଡ଼ିଲେ ।

# ଜନବିଦ୍ରୋହର ପ୍ରଥମ ସଙ୍କେତ

ଜୟପ୍ରକାଶଙ୍କର ଏଭଳି ସତର୍କ-ଘଣ୍ଟି ଶାସକ କର୍ତ୍ତୃପକ୍ଷଙ୍କ ପ୍ରାଣରେ ଛନକା ପୂରାଇଲା, ସନ୍ଦେହ ନାହିଁ । ଏଥିରେ ନେତୃମଣ୍ଡଳୀ ଆତଙ୍କିତ ହେଲେ, ବିଶେଷ ଭାବରେ ଇନ୍ଦିରା ଗାନ୍ଧୀ ଗତ କେତେ ବର୍ଷ ଭିତରେ ଯେଭଳି ଦୂଷିତ ପନ୍ଥାରେ ନିଜର ନେତୃତ୍ୱ ପ୍ରତିଷ୍ଠା କରିଥିଲେ ଏବଂ ଶାସନକ୍ଷମତା ହାତରେ ରଖିଥିଲେ, ଏପରି ପ୍ରକାଶ୍ୟ ସମାଲୋଚନା ତାଙ୍କ ପକ୍ଷରେ ଅସହନୀୟ ହୋଇପଡ଼ିଲା । ସେ ଏହାକୁ ଏକ ବ୍ୟକ୍ତିଗତ ଆକ୍ରମଣ ବୋଲି ଧାରଣା ନେବାର ଆଉ ଏକ କାରଣ ହେଉଛି, ଜୟପ୍ରକାଶଙ୍କ ଆନ୍ଦୋଳନ ସେତେବେଳକୁ କୌଣସି ରାଜନୀତିକ ଦଳଦ୍ୱାରା ପୂର୍ଣ୍ଣରୂପେ ସମର୍ଥିତ ହୋଇନଥାଏ କିମ୍ବା ସେମାନେ ଏଥିରେ ସେଭଳି କିଛି ଅଂଶ ଗ୍ରହଣ କରି ଭଲ ଆଗ୍ରହ ଦେଖାଉନଥାନ୍ତି । ଜୟପ୍ରକାଶଙ୍କ ପ୍ରଚାର ଫଳରେ କଂଗ୍ରେସ ଦଳ ବା ଇନ୍ଦିରା ଗାନ୍ଧୀ କ୍ଷମତାଚ୍ୟୁତ ହେବାର ତାତ୍କାଳିକ ସମ୍ଭାବନା ନଥାଏ । ଜୟପ୍ରକାଶ ମଧ୍ୟ ଅନ୍ୟ ରାଜନୀତିକ ଦଳମାନଙ୍କର ସମାଲୋଚନା କରିବା ଛାଡ଼ିନଥାନ୍ତି; କାରଣ ତାଙ୍କର ଉଦ୍ଦେଶ୍ୟ ଥିଲା—ଏ ଯେଉଁ ବ୍ୟାଧି ଆମ ସମାଜ ଓ ରାଜନୀତିକୁ ଗ୍ରାସ କରିଛି, ତାର ମୂଳୋତ୍ପାଟନ କଲେ ଗଣତନ୍ତ୍ର ଓ ସମାଜବାଦ ରକ୍ଷା ହୋଇପାରିବ । ଭାରତର ବିରୋଧୀ ଓ କ୍ଷମତାସୀନ ପ୍ରାୟ ସବୁ ଦଳଗୁଡ଼ିକ ଦିନେ ନା ଦିନେ କ୍ଷମତାରେ ବସିଛନ୍ତି ଏବଂ ଏବେ ବି କ୍ଷମତାରେ ବସିବାର ପ୍ରୟାସରେ ଅଛନ୍ତି । ସେମାନଙ୍କର ଦୃଷ୍ଟିକୋଣ କ୍ଷମତାପ୍ରାପ୍ତି ରାଜନୀତିରେ ସୀମାବଦ୍ଧ । ସେ କ୍ଷମତାପ୍ରାପ୍ତି ପୁଣି ନିର୍ବାଚନ ଜରିଆରେ । ଯେଉଁ ନିର୍ବାଚନ ପଦ୍ଧତି ଦେଶରେ ଚାଲିଛି ଏବଂ ଯାହା ଲୋକ-ପ୍ରତିନିଧି ଶାସନର ମୂଳ ଆଧାର ହୋଇ ରହିଛି, ତାହା ବହୁ ପରିମାଣରେ ଅର୍ଥ ଓ ନାନା ଅସତ୍ ଉପାୟରେ ଚାଳିତ ହେଉଛି । ସେ ଅସତ୍ ଉପାୟ ଗ୍ରହଣ କରିବା ଲାଗି ଶାସନ ଓ ବିରୋଧୀ କୌଣସି ଦଳ ପରାଙ୍ମୁଖ ନୁହନ୍ତି । କିନ୍ତୁ ଏ ପ୍ରକ୍ରିୟାରେ ଶାସକଦଳ ହିଁ ଅପେକ୍ଷାକୃତ ସୁବିଧାଜନକ ପରିସ୍ଥିତିରେ ଅଛି । ତେଣୁ ଯାହା ଘଟୁଛି, ଶାସକଦଳ ସେଥିଲାଗି ବହୁ ପରିମାଣରେ ଦାୟୀ—ଶାସକଦଳ ଓ ଶାସନକୁ ସୁଧାରିପାରିଲେ ଏଥିରେ କିଛି ପରିମାଣରେ ସଫଳତା ମିଳିପାରିବ ।

ଏହି ଭୂମିକା ହେତୁ, ଜୟପ୍ରକାଶଙ୍କ ଆନ୍ଦୋଳନ ଇନ୍ଦିରାଙ୍କୁ କ୍ଷମତାରୁ ତଡ଼ିବା ନିମନ୍ତେ ପ୍ରତ୍ୟକ୍ଷ ଭାବରେ ଉଦ୍ଦିଷ୍ଟ ହୋଇନଥିଲେ ସୁଦ୍ଧା, କିମ୍ବା ଇନ୍ଦିରା ଗାନ୍ଧୀଙ୍କ ସହିତ ତାଙ୍କର କୌଣସି ବ୍ୟକ୍ତିଗତ ପ୍ରତିଦ୍ୱନ୍ଦ୍ୱିତା ନାହିଁ ଏହା ଘୋଷଣା କଲେ ସୁଦ୍ଧା, ଏହାର ଅଭିବୃଦ୍ଧି ନିଶ୍ଚିତଭାବରେ ଶାସକଦଳ ଓ ଇନ୍ଦିରା-ନେତୃତ୍ୱ ବିରୋଧରେ ଯିବ—ଏ କଥା

କମେ ଅନୁଭୂତ ହେଉଥିଲା ଏବଂ ଇନ୍ଦିରା ଗାନ୍ଧୀ ସେ ବିଷୟରେ ସଚେତନ ହୋଇପଡ଼ିଲେ ଏବଂ ଏହାର ପ୍ରତିରୋଧ ଲାଗି ନାନା ଉପାୟ ଚିନ୍ତା କରିବାକୁ ଲାଗିଲେ ।

ଏଣେ ଜୟପ୍ରକାଶ ନାରାୟଣ ଏହି ଆନ୍ଦୋଳନକୁ ସର୍ବଭାରତୀୟ ସ୍ତରରେ ଲୋକସମ୍ପୃକ୍ତିକୁ ଆଣିବା ନିମନ୍ତେ ଗଣତନ୍ତ୍ରର ସୁରକ୍ଷା ଲାଗି ଏକ ନାଗରିକ ସଂଗଠନ ଆରମ୍ଭ କରିଦେଲେ । ଏହା ୧୯୭୪ ମସିହାର ପ୍ରଥମାର୍ଦ୍ଧର ଘଟଣା; ମାତ୍ର ବାସ୍ତବିକ ଗଣତନ୍ତ୍ରର ସୁରକ୍ଷା ଓ ବିକାଶ ଲାଗି ଏକ ମହାଭାରତୀୟ ସ୍ତରର ସଂଗଠନ କରିବାର ଆବଶ୍ୟକତା ବହୁପୂର୍ବରୁ ଅନୁଭବ କରାଯାଇଥିଲା । ୧୯୭୨ ସେପ୍ଟେମ୍ବର ୧୭ ତାରିଖରେ ଏକ ପ୍ରାରମ୍ଭିକ ସମ୍ମିଳନୀରେ ଏଭଳି ଏକ ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା । ତାହା କେବଳ ବିଚାର ଅବସ୍ଥାରୁ ଆଉ ଅଗ୍ରସର ହୋଇପାରିନଥିଲା । ଏବର ସଂଗଠନଟି ଆହୁରି ବ୍ୟାପକ ଏବଂ କର୍ମଠ ହେବାର ବ୍ୟବସ୍ଥା ହେଲା । ଦେଶର ଏଭଳି ଅଧୋଗତି ଓ ଦୁର୍ଦ୍ଦିନ ବେଳେ ଲୋକ-ସାଧାରଣଙ୍କର ସମାଲୋଚନା ଓ ଭିନ୍ନ ମତ ପ୍ରକାଶ କରିବାର ଅଧିକାର, ସାଧାରଣ ସ୍ୱାଧୀନତା ରକ୍ଷା, ସମ୍ବାଦପତ୍ର ଓ ବିଚାର ବିଭାଗର ସ୍ୱାଧୀନତା ଏବଂ ଉପର ସ୍ତରରେ ଥିବା ଦୁର୍ନୀତିର ନିରାକରଣ ଆଦି ବିଷୟରେ ଲୋକମତ ଗଠନ କରିବା ଏବଂ ଲୋକଙ୍କୁ ଏ ବିଷୟରେ ଅବହିତ କରାଇବା ହେଲା ଏହାର ମୁଖ୍ୟକାର୍ଯ୍ୟ । ଏହି ସଂଗଠନରେ ଯୋଗ ଦେବା ନିମନ୍ତେ କିଛି ବାଧା ନ ଥିଲା; ଯେଉଁମାନେ ଏହାର ଉଦ୍ଦେଶ୍ୟରେ ଏକମତ, ସେମାନେ ଯୋଗ ଦେଇ ପାରିବେ । କେବଳ ରାଜନୈତିକ ଦଳର କର୍ମକର୍ତ୍ତାଙ୍କୁ ଏହାର ଦ୍ୱାର ରୁଦ୍ଧ ହୋଇଥିଲା । କାରଣ ଜୟପ୍ରକାଶ ସ୍ପଷ୍ଟରୂପେ ଏହି ସମ୍ମିଳନୀରେ ଘୋଷଣା କରି-ଦେଇଥିଲେ—

"କେହି ଯେପରି ନ ଭାବୁ ଯେ, କେବଳ ଶାସକଦଳ ହିଁ ଦୁର୍ନୀତି ବା ନିର୍ବାଚନ ପ୍ରଣାଳୀରେ ନାନା ଦୋଷଯୁକ୍ତ କାର୍ଯ୍ୟ କରିବା ନିମନ୍ତେ ଦାୟୀ । ଯେତେ ଆଦର୍ଶବାଦ କହନ୍ତୁ ପଛକେ, ଯେଉଁ ଦଳ ତାର ନିର୍ବାଚନ ବିଜୟ ଦୃଷ୍ଟିରୁ ଏଭଳି କରିବାର ମଉକା ବା ଆବଶ୍ୟକତା ଅନୁଭବ କରିଛି, ତାହା କରିବାରେ ଦ୍ୱିଧାବୋଧ କରିନାହିଁ; କାରଣ ସେମାନଙ୍କର ମୂଳ ଲକ୍ଷ୍ୟ ହେଲା ଯେନକେନ-ପ୍ରକାରେଣ ନିର୍ବାଚନରେ ଜୟଲାଭ ।

ଆମ ଦେଶରେ ସମସ୍ୟା କେବଳ ନୁହେଁ ଦୁର୍ନୀତି ବା ହିଂସା ଆଚରଣ; ମାତ୍ର ସମସ୍ୟା ହେଉଛି ଏ ଦେଶର ଲୋକେ ଭ୍ରଷ୍ଟାଚାର ବା ହିଂସାକୁ ସ୍ୱୀକାର କରିଯାଉଛନ୍ତି । ଲୋକେ ଧୀରେ ଧୀରେ ବିଶ୍ୱାସ କରିବାକୁ ଲାଗିଲେଣି ଯେ ଗଣତନ୍ତ୍ର ଜରିଆରେ ନୁହେଁ, ଅନ୍ୟ ଉପାୟରେ ହିଁ କାର୍ଯ୍ୟ ହାସଲ ହୋଇପାରିବ; କୌଣସି ସଭ୍ୟସମ୍ମତ କିମ୍ବା ଶାନ୍ତିପୂର୍ଣ୍ଣ ପନ୍ଥାରେ ସରକାର ଉପରେ କିଛି ପ୍ରଭାବ ପକାଇ ହେବ ନାହିଁ । ଏହା ଏକ ଅତି ବିପଜ୍ଜନକ ପରିସ୍ଥିତି । ଏହାର ପରିଣତି ଗଣତନ୍ତ୍ରର ଭବିଷ୍ୟତ ପକ୍ଷରେ ମାରାତ୍ମକ—ଏହାକୁ ଦୂର କରିବାକୁ ହେବ ଏବଂ ଏଥିଲାଗି ପ୍ରବଳ ଜନମତ ଜାଗ୍ରତ ହେବା ଉଚିତ ।

ଏହା ବୃଦ୍ଧିଜୀବୀଙ୍କର ଏକ ସଂଗଠନ ଥିଲା ଏବଂ ସ୍ଥାନେ ସ୍ଥାନେ ବଡ଼ ବଡ଼ ସହରଗୁଡ଼ିକରେ ଏହାର କାର୍ଯ୍ୟ ପରିସର ସୀମାବଦ୍ଧ ରହିଲା । ମାତ୍ର ଭାରତର ବୁଦ୍ଧିଜୀବୀ, ଯେଉଁମାନେ କି ପ୍ରଚଳିତ ଗତିବିଧିରେ ଅଶାନ୍ତ ଓ ଅସ୍ୱସ୍ତି ଅନୁଭବ କରୁଥିଲେ, କିନ୍ତୁ କୌଣସି ମତାମତ ପ୍ରକାଶ ନ କରି ନୀରବ ରହୁଥିଲେ, ସେମାନଙ୍କ ଭିତରେ ଏକ ମାନସିକ ଦ୍ୱନ୍ଦ୍ୱ ଉପୁଜିଲା; ଭବିଷ୍ୟତ ଲାଗି ଚିନ୍ତା ପଶିଲା ଏବଂ ଏଭଳି କାର୍ଯ୍ୟ ପ୍ରତି ସେମାନେ କ୍ରମେ ଆକୃଷ୍ଟ ହେଲେ । ଏହା ସାଙ୍ଗକୁ ଯୁବକ ଓ ଛାତ୍ରମାନଙ୍କ ଭିତରେ ବି କ୍ରମେ ଏହି ଆନ୍ଦୋଳନର ପ୍ରତିକ୍ରିୟା ପ୍ରବେଶ କଲା । ଗୁଜରାଟ, ବିହାର ଓ ଅନ୍ୟାନ୍ୟ ପ୍ରଦେଶରେ ଲୋକ-ଆନ୍ଦୋଳନ ମୁଣ୍ଡ ଟେକିଲା ଏବଂ ଯୁବକ, ଛାତ୍ର ଓ ଅନ୍ୟ ସବଳଶ୍ରେଣୀ ଭିତରେ ଅଦ୍ଭୁତ ଜାଗରଣ ଖେଳିଗଲା ।

ଗୁଜରାଟ ଆନ୍ଦୋଳନର ବିଶେଷତ୍ୱ ହେଉଛି, ଛାତ୍ର ଓ ଯୁବକମାନେ ଏହି ଆନ୍ଦୋଳନ ଆରମ୍ଭ କଲେ—ସେମାନଙ୍କର ପ୍ରତ୍ୟକ୍ଷ ସଂଗ୍ରାମ ହେଲା କର୍ତ୍ତୃପକ୍ଷଙ୍କ ସହ ନିଜର ବିଦ୍ୟାଳୟଜନିତ ଅସୁବିଧା ହେତୁ; କଂଗ୍ରେସ ଶାସନର ଅଧିକାଂଶ ଦୋଷ ଥାଏ; କଂଗ୍ରେସ ଦଳ ଭିତରେ ବି ଦଳାଦଳି ଥାଏ । ଆନ୍ଦୋଳନକୁ ଦବାଇବା ନିମନ୍ତେ ଯାବତୀୟ ଦମନ ଅସ୍ତ୍ର ପ୍ରୟୋଗ କରାଗଲା । କ୍ରମେ ଛାତ୍ରମାନେ ତାଙ୍କ ଆନ୍ଦୋଳନ ସହିତ ଜନସାଧାରଣଙ୍କର ମୁଖ୍ୟ ଦାବି ଦରଦାମ ବୃଦ୍ଧି, ଦୁର୍ନୀତି ଓ ଶାସନର ବ୍ୟଭିଚାର ଉଠାଇଲେ ଏବଂ ଜନତା ଓ ଛାତ୍ର ଯୁବକଙ୍କର ମିଳିତ ଆନ୍ଦୋଳନ ଫଳରେ ଏକ ଅଭୂତପୂର୍ବ ଜନଜାଗରଣ ଦେଖାଦେଲା । ଏହି ଅଜେୟ ଶକ୍ତି ହାତରେ ଶାସକଗୋଷ୍ଠୀର ପରାଜୟ ଘଟିଲା । କଂଗ୍ରେସ ଶାସନର ଅବସାନ ହେଲା । ବିହାର ଓ ଅନ୍ୟାନ୍ୟ ପ୍ରଦେଶରେ ଗୁଜରାଟ ଆନ୍ଦୋଳନର ପ୍ରଭାବରେ ଲୋକ-ଆନ୍ଦୋଳନ ଅଧିକ ତୀବ୍ର ରୂପ ଧାରଣ କଲା । ଗୁଜରାଟରେ କଂଗ୍ରେସ ସରକାର ଆନ୍ଦୋଳନ ପ୍ରତି ଯେପରି ନିଷ୍ଠୁର ଆଚରଣ ଦେଖାଇଲା ଏବଂ ରାଜନୀତିକ ଓ ଅନ୍ୟ ମିଥ୍ୟା ପ୍ରଚାରରେ ଏହାକୁ ଯେଭଳି ଭାଙ୍ଗିବାର ଉଦ୍ୟମ ହୋଇଥିଲା, ତାହା ସମ୍ପୂର୍ଣ୍ଣ ବ୍ୟର୍ଥ ହୋଇଗଲା । ଲୋକଙ୍କ ଆଗରେ ଶେଷକୁ ଇନ୍ଦିରା ଗାନ୍ଧୀଙ୍କୁ ମୁଣ୍ଡ ନୁଆଁଇବାକୁ ପଡ଼ିଲା । କଂଗ୍ରେସ ମନ୍ତ୍ରିମଣ୍ଡଳର ପତନ ହୋଇ ରାଷ୍ଟ୍ରପତି ଶାସନ ଜାରୀ କରିବାକୁ କେନ୍ଦ୍ର କର୍ତ୍ତୃପକ୍ଷ ବାଧ୍ୟ ହେଲେ । ଯେଉଁ ଇନ୍ଦିରା ଗାନ୍ଧୀ ସବୁଠାରୁ ଅଧିକ ଲୋକପ୍ରିୟ ଏବଂ ତାଙ୍କୁ ଚ୍ୟାଲେଞ୍ଜ କରିବା ଭଳି ଦେଶରେ ଆଉ କୌଣସି ଦଳ ବା ଶକ୍ତି ନାହିଁ ବୋଲି ପୂରା ଦମ୍ଭରେ ଚାଲିଥିଲେ, ତାଙ୍କର ସେ ଅଭିମାନ ଓ ଅହଙ୍କାର ଉପରେ ପ୍ରଥମେ ଧକ୍‌କା ଲାଗିଲା ଗୁଜରାଟ ଆନ୍ଦୋଳନ ପରେ । ଏହାର ଫଳସ୍ୱରୂପ ଲୋକ-ଆନ୍ଦୋଳନ ପୂର୍ଣ୍ଣରୂପେ କଂଗ୍ରେସବିରୋଧୀ ପାଲଟିଗଲା ଏବଂ ଜୟପ୍ରକାଶ ଏହି ଆନ୍ଦୋଳନକୁ ପୂର୍ଣ୍ଣ ସମର୍ଥନ ଦେବାରୁ ଜୟପ୍ରକାଶଙ୍କ ପ୍ରତି ବିରୋଧ ମତଗତି ପ୍ରଖର ହେଲା ।

ଏକ ଲୋକ-ଆନ୍ଦୋଳନରେ କିଛି ପରିମାଣରେ ହିଂସାମୂଳକ କାର୍ଯ୍ୟ ହେବା କିଛି ବିଚିତ୍ର ନୁହେଁ; ତାହାଛଡ଼ା ଗୁଜରାଟ ଆନ୍ଦୋଳନ ପଶ୍ଚାତ୍‌ରେ କୌଣସି ନିର୍ଦ୍ଦିଷ୍ଟ ରାଜନୀତିକ

ଦଳର ପ୍ରରୋଚନା, ପ୍ରେରଣା ବା ଚାଳନା ନଥିଲା । ଏହା ଥିଲା ଏକପ୍ରକାର ସ୍ୱତଃସ୍ଫୂର୍ତ୍ତି ଆନ୍ଦୋଳନ—ଶାନ୍ତିପୂର୍ଣ୍ଣ ସମାଧାନ ସମ୍ଭବ ନ ହେବାରୁ ଏବଂ ପ୍ରାଥମିକ ଅସୁବିଧାର ସନ୍ତୋଷଜନକ ସମାଧାନ ପରିବର୍ତ୍ତେ ଶାସନ କର୍ତ୍ତୃପକ୍ଷଙ୍କର ନିଷ୍ଠୁର ଦମନର ପ୍ରତିକ୍ରିୟା ସ୍ୱରୂପ ଲୋକେ ଭିନ୍ନ ପନ୍ଥା ଗ୍ରହଣ କଲେ । ତେଣୁ ଯେଉଁ ଉପାୟରେ ସେମାନେ ଦାବି ହାସଲ କଲେ, ତାହା ଲୋକମନରେ ପ୍ରତିକ୍ରିୟା ସୃଷ୍ଟି କଲାନାହିଁ । ଏକ ଅନାଚ୍ଛନ୍ନ ପ୍ରତିଷ୍ଠିତ ସରକାର ଇନ୍ଦିରା ଗାନ୍ଧୀଙ୍କ ପରି ପ୍ରଧାନମନ୍ତ୍ରୀଙ୍କ ଆସ୍ଥିତ୍ୱ କରି ଯେ ଯଥାର୍ଥ ଦାବି ହାସଲ କରାଯାଇପାରିଲା, ଏହା ଲୋକପ୍ରାଣରେ ବିଶ୍ୱାସ ଓ ଆତ୍ମପ୍ରତ୍ୟୟ ଜାଗ୍ରତ କରାଇଲା ।

ଏହି ଆନ୍ଦୋଳନ ସମ୍ପର୍କରେ ଜୟପ୍ରକାଶ ନାରାୟଣ ନିଜେ ଯାହା ଲେଖିଛନ୍ତି ତାହା ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ । ସେ ଲେଖିଛନ୍ତି—

"ଗୁଜରାଟ ଓ ବିହାରର ଛାତ୍ର ବିଦ୍ରୋହ ଯେ ଏତେ ଶୀଘ୍ର ଏକ ବିରାଟ ଜନ-ବିଦ୍ରୋହରେ ପରିଣତ ହୋଇଗଲା, ତାହା ବିଭିନ୍ନ ଢଙ୍ଗରେ ଭିନ୍ନ ଲୋକଙ୍କ ଦ୍ୱାରା ଚର୍ଚ୍ଚିତ ହେଉଛି । ଯେଉଁମାନେ କ୍ଷମତାରେ ଅଛନ୍ତି, ସେମାନେ ବିଚାରୁଛନ୍ତି ଯେ ଏସବୁ କାନ୍ଦୋଳ ପଛରେ ବିରୋଧୀ ଦଳଗୁଡ଼ିକର ହାତ ରହିଛି । କିନ୍ତୁ କେହି ଯଦି ତଳେଇ ବିଷୟଟିକୁ ଦେଖେ, ସେ ଜାଣିପାରିବ ଯେ ଛାତ୍ରମାନଙ୍କର ବହୁ ଦାବି ବହୁକାଳରୁ ପଡ଼ିଥିଲା । ସେମାନେ ନାନାପ୍ରକାରେ ତାର ପ୍ରତିକାର ଲାଗି ଉଦ୍ୟମ କରୁଥିଲେ । କେହି ତାଙ୍କ କଥାରେ କର୍ଣ୍ଣପାତ କଲେ ନାହିଁ କିମ୍ବା ସେଥିରେ ଗୁରୁତ୍ୱ ଦେଲେ ନାହିଁ । ତା' ସାଙ୍ଗକୁ ଅଗ୍ନି ଜଳାଇଲା ଭଳି କେତେକ ଘଟଣା ହେବାରୁ ଉତ୍ତେଜନା ସୃଷ୍ଟି ହୋଇଗଲା ।

ଲୋକେ ବି ଭ୍ରଷ୍ଟାଚାର, ଅତ୍ୟଧିକ ମୂଲ୍ୟବୃଦ୍ଧି, ବ୍ୟବହାର୍ଯ୍ୟ ଜିନିଷପତ୍ରର ଅଭାବ ଏବଂ ଶିକ୍ଷା-ବ୍ୟବସ୍ଥାର ଚରମ ବିଫଳତା ଯୋଗୁଁ ଅସୁବିଧା ଭୋଗ କରୁଥିଲେ ଏବଂ ଛାତ୍ରମାନେ ଯେତେବେଳେ ଏସବୁ ଅସୁବିଧା ବିରୁଦ୍ଧରେ ଆନ୍ଦୋଳନ କଲେ ଓ ବିଶ୍ୱବିଦ୍ୟାଳୟ ବା କଲେଜ ଭିତରେ ଏହାକୁ ସୀମାବଦ୍ଧ କରି ରଖିଲେ ନାହିଁ, ସେତେବେଳେ ସେମାନଙ୍କର ପରସ୍ପରର ଏକ ଘନିଷ୍ଠ ଯୋଗ ସ୍ଥାପିତ ହୋଇଗଲା ଏବଂ ଏହା ଏକ ଲୋକ-ଆନ୍ଦୋଳନରେ ପରିଣତ ହେଲା ।

କେତେକ ବିରୋଧୀ ଦଳ ଏଥିରେ ସୁଯୋଗ ନେବା ସ୍ୱାଭାବିକ । ସେମାନେ କଂଗ୍ରେସର ବଦ୍‌ନାମ କରି ନିଜର ଶକ୍ତି ବୃଦ୍ଧି କରିବାକୁ ଉଦ୍ୟମ କଲେ । ସେଥିରେ ତାଙ୍କୁ ଦୋଷ ଦେଇ ହେବ ନାହିଁ; କାରଣ ପ୍ରତ୍ୟେକ ଦଳ ଏକ ଦଳଗତ ରାଜ୍ୟରେ ଏଭଳି ଢଙ୍ଗରେ ନିଜକୁ ପ୍ରତିଷ୍ଠିତ କରିବାକୁ ଚେଷ୍ଟା କରେ ।

କିନ୍ତୁ ଏକଥା ନିଶ୍ଚିତ ଯେ, ଗୁଜରାଟ ଓ ବିହାରରେ ଯେଉଁ ଆନ୍ଦୋଳନ ଚାଲିଛି ଏହାର ନେତୃତ୍ୱ କୌଣସି ଗୋଟିଏ ଦଳ ବା ଦଳସମଷ୍ଟି ପାଖକୁ ଯାଇନାହିଁ । ଦୁଇଟିଯାକ

ଆନ୍ଦୋଳନ ମୁଖ୍ୟତଃ ନିର୍ଦ୍ଦଳୀୟ ହୋଇ ରହିଛି । ସେମାନେ ଯେ କ୍ଷମତାରେ ଆଉ ପଛକେ ସେଥିପ୍ରତି କୋର୍‌ ନ ଦେଇ ଦାବି ଉପରେ ଗୁରୁ ଦେଇଛନ୍ତି । ମନ୍ତ୍ରିମଣ୍ଡଳର ଇସ୍ତଫା ଓ ବିଧାନସଭାଭଙ୍ଗ ଦାବି ଉଠିବାର ଏକମାତ୍ର କାରଣ ହେଉଛି ଯେ, ଏହି ଦୁଇଟି ରାଜ୍ୟର ସରକାର ଛାତ୍ରମାନଙ୍କ ପ୍ରତି ହେଉଥିବା ଅନ୍ୟାୟର ବିଚାର କରିବା ପରିବର୍ତ୍ତେ ଭୀଷଣ ଦମନ ପ୍ରୟୋଗ କଲେ ।

ଏହି ଆନ୍ଦୋଳନର ଗୋଟିଏ ତାତ୍ପର୍ଯ୍ୟପୂର୍ଣ୍ଣ ଶିକ୍ଷା ହେଉଛି, ଆମ ଜନତା, ଏପରିକି ଏକ ପଛୁଆ ବିହାର ରାଜ୍ୟରେ ବି ଦେଖାଇଦେଲେ ଯେ ସେମାନେ ଗୁଣ୍ଡିବନ୍ଧା ବଳଦ ପରି ଆଉ ନିର୍ଯାତନା ସହିବାକୁ ପ୍ରସ୍ତୁତ ନୁହନ୍ତି କିମ୍ବା ଅନ୍ୟାୟର ନୀରବ ନିଃସହାୟ ଦର୍ଶକ ଭାବରେ ରହିବାକୁ ଚାହାଁନ୍ତି ନାହିଁ । ଦେଶ ସ୍ୱାଧୀନତାପ୍ରାପ୍ତି ପରେ ଏଭଳି ଘଟଣା ପ୍ରଥମ ।

ସେମାନଙ୍କର ବିଦ୍ରୋହକୁ କ୍ଷମତାସୀନ ଲୋକେ ଅଗଣତାନ୍ତ୍ରିକ ଓ ଅବୈଧାନିକ ବୋଲି ବିଚାର କରିପାରନ୍ତି । କିନ୍ତୁ ଯେଉଁସବୁ ବୈଧାନିକ ପନ୍ଥା ଓ ଗଣତାନ୍ତ୍ରିକ ବ୍ୟବସ୍ଥା ରହିଛି, ତାହା ଯଦି ଲୋକଙ୍କୁ କିଛି ପ୍ରତିକାର ଦେବାରେ ବ୍ୟର୍ଥ ହେବ, ତେବେ ଲୋକଙ୍କର କର୍ତ୍ତବ୍ୟ କଣ ? ଲୋକଙ୍କର ଅଧିକାର ଅଛି ପାଞ୍ଚବର୍ଷ ପରେ ସରକାର ବଦଳାଇ ଦେଇ ପାରନ୍ତି; ମାତ୍ର ଏବେ ଯାହା ଓ ଯେପରି ସବୁ ହେଉଛି, ସେଥିରେ ଏ କଥାର କୌଣସି ମୂଲ୍ୟ ନାହିଁ ।

ଏକେ ତ ଆମର ନିର୍ବାଚନ ପଦ୍ଧତିର ଦୋଷତ୍ରୁଟି ସଂଶୋଧିତ ହେଉନାହିଁ ଏବଂ ସଭ୍ୟମାନେ ଦଳବଦଳ କରି ଯେଭଳି ଅଶୋଭନୀୟ ପରିସ୍ଥିତି ସୃଷ୍ଟି କରୁଛନ୍ତି, ତାକୁ ରୋକିବାଲାଗି କେନ୍ଦ୍ର କର୍ତ୍ତୃପକ୍ଷ କୌଣସି ପଦକ୍ଷେପ ନେବାକୁ ସମ୍ପୂର୍ଣ୍ଣ ଅନିଚ୍ଛୁକ । ତେଣୁ ଲୋକଙ୍କର ଏପରି ପ୍ରତିନିଧି ଓ ସରକାର ଉପରୁ ବିଶ୍ୱାସ ପୂରାପୂରି ତୁଟିଗଲାଣି ।

ଏଭଳି ବିଶ୍ୱାସ ଯଦି ଲୋକମନରେ ଦୃଢ଼ ହୋଇଯାଏ, ତେବେ ଏ ଦେଶ କ୍ରମେ ଡିକ୍ଟେଟରସିପ୍‌ ବା ଏକନାୟକତ୍ୱ ଦିଗରେ ଅଗ୍ରଗତି କରିବ । ତେଣୁ ଆମ ଦେଶ ପକ୍ଷରେ ଏହା ଏକ ଶୁଭ ସୂଚନା ଯେ, ଆମ ଦେଶ ଗଣତନ୍ତ୍ରର ପ୍ରକୃତ ମାଲିକ ଦେଶର ଜନତା ବିଦ୍ରୋହ କରି ଉଠିଛନ୍ତି; ଅବୈଧାନିକ ହେଲେ ସୁଦ୍ଧା ଶାନ୍ତିପୂର୍ଣ୍ଣ ଉପାୟରେ ନିଜର ଅଧିକାର ହାସଲ ଲାଗି ଦୃଢ଼ତା ଦେଖାଇଛନ୍ତି ଏବଂ ତାଙ୍କର ମନର ବଳ ଓ ମିଳିତ ଶକ୍ତି ହେତୁ କ୍ଷମତାସୀନ ଦଳର ପତନ ହେଉଛି ।”

ଏଭଳି ପରିସ୍ଥିତିର ସମ୍ମୁଖୀନ ହେବା ନିମନ୍ତେ ଇନ୍ଦିରା ଗାନ୍ଧୀ ନିଜର କୌଶଳ ସ୍ଥିର କରିବା ସ୍ୱାଭାବିକ । ଗୁଜରାଟ ଆନ୍ଦୋଳନରେ ହିଂସାକୁ ସେ ବଡ଼ ଭାବରେ ଚିତ୍ରଣ କଲେ ଏବଂ ସର୍ବୋଦୟ କର୍ମୀମାନେ କିଭଳି ହିଂସାତ୍ମକ କାର୍ଯ୍ୟକୁ ପ୍ରଶ୍ରୟ ଦେଉଛନ୍ତି, ତାହାର ସମାଲୋଚନା ଆରମ୍ଭ କରିଦେଲେ । ଏଠାରେ ଉଲ୍ଲେଖଯୋଗ୍ୟ ହେଉଛି, ଜୟପ୍ରକାଶ ପ୍ରଥମରୁ ଗୁଜରାଟ ଆନ୍ଦୋଳନ ସହ ସମ୍ପୃକ୍ତ ନ ଥିଲେ କିମ୍ବା ପରେ ବି ଗୁଜରାଟ ଆନ୍ଦୋଳନ

ଚଳାଇବାର ବା ଅନ୍ୟ କୌଣସି ପ୍ରକାରେ ସେଥିସହ ସେ ସମ୍ପୃକ୍ତ ନ ଥିଲେ । ଗୁଜରାଟର ସର୍ବୋଦୟ କର୍ମୀଙ୍କ ନିମନ୍ତ୍ରଣକ୍ରମେ ସେ ଗୁଜରାଟ ଆନ୍ଦୋଳନ ପର୍ଯ୍ୟବେକ୍ଷଣ କରିବାକୁ ଯାଇଥିଲେ ଏବଂ ସେଠାରେ ୨/୩ ଦିନ ରହିଥିଲେ ।

ରାଜନୀତିକ ଦଳମାନଙ୍କୁ ରାଜନୀତିକ ପ୍ରତିଦ୍ୱନ୍ଦ୍ୱିତାପ୍ରସୂତ ହୋଇ ଏଭଳି ଜନ-ଅସନ୍ତୋଷ ସୃଷ୍ଟି କରୁଛନ୍ତି ବୋଲି କହିଦେବାଟା ସହଜ । ମାତ୍ର ଜୟପ୍ରକାଶଙ୍କ ବିରୁଦ୍ଧରେ ସେଭଳି ଅଭିଯୋଗ କାର୍ଯ୍ୟକାରୀ ହେବ ନାହିଁ । କିନ୍ତୁ ସର୍ବୋଦୟ ଆନ୍ଦୋଳନ ଭିତରେ ଭେଦ ସୃଷ୍ଟିକରାଇବାର ଉଦ୍ୟମ ହେଲା, ଜୟପ୍ରକାଶଙ୍କ ପଛରେ ଥିବା ନୈତିକ ବଳକୁ ଭାଙ୍ଗିବା ନିମନ୍ତେ । ଇନ୍ଦିରା ଗାନ୍ଧୀ ଏହି ଅବସରରେ ବିନୋବାଙ୍କ ସହ ସମ୍ପର୍କ ସ୍ଥାପନ କରି ସର୍ବୋଦୟ ଶିବିରରେ ଭେଦ ପୂରାଇଲେ । ସର୍ବୋଦୟ କର୍ମୀମାନେ ଜୟପ୍ରକାଶଙ୍କ ଇଙ୍ଗିତରେ ଗୁଜରାଟ ପରି ସ୍ଥାନରେ ହିଂସାମୂଳକ କାର୍ଯ୍ୟକୁ ଉତ୍ସାହିତ କରୁଛନ୍ତି ବୋଲି ଏକ ଧାରଣା ଜାତ କରାଗଲା । ବିନୋବା ହୁଏତ ସେପରି ଅଭିଯୋଗକୁ ପୂର୍ଣ୍ଣରୂପେ ବିଶ୍ୱାସ କରି ନଥିବେ; କାରଣ ପରେ ସେ କହିଥିବା ପ୍ରକାଶ ଯେ, ଜୟପ୍ରକାଶଙ୍କ ସହିତ ଯଦିଓ ମୋର ବହୁଦିନରୁ ସାକ୍ଷାତ୍ ବା ଆଲୋଚନା ହୋଇନାହିଁ, ତଥାପି ତାଙ୍କ ସହ ଦୀର୍ଘକାଳର ସମ୍ପର୍କରୁ ମୁଁ ଯାହା ଜାଣେ ଜୟପ୍ରକାଶ ହିଂସା ଆନ୍ଦୋଳନକୁ ଉତ୍ସାହିତ କରୁଛନ୍ତି, ଏପରି ନୁହେଁ । ଲୋକଙ୍କ ଭିତରେ ଯେପରି ଅସନ୍ତୋଷ ବ୍ୟାପିଛି ଏବଂ ତାର ପ୍ରତିକାରର ଉପାୟ ମିଳୁନାହିଁ, ସେପରି ଅବସ୍ଥାରେ ଏକପ୍ରକାର ଆନ୍ଦୋଳନ ଅବଶ୍ୟମ୍ଭାବୀ ବୋଲି ଜୟପ୍ରକାଶ କହୁଛନ୍ତି । କିନ୍ତୁ ଏହା କହିବା ସାଙ୍ଗେ ସାଙ୍ଗେ ବିନୋବା ଏହା ମଧ୍ୟ କହିଲେ ଯେ, ବର୍ତ୍ତମାନ ପରିସ୍ଥିତିରେ ଭାରତରେ ସରକାର ବିରୁଦ୍ଧରେ ଅହିଂସକ ଆନ୍ଦୋଳନ ମଧ୍ୟ କରାଯିବା ଅନୁଚିତ । ଲୋକ-ଅସନ୍ତୋଷ ବୃଦ୍ଧି ପାଇବାର ଅଗଣିତ କାରଣ ରହିଛି । ପରିସ୍ଥିତି ଦିନକୁଦିନ ଖରାପ ଆଡ଼କୁ ଗତି କରୁଛି । କିନ୍ତୁ କୌଣସି ସରକାରବିରୋଧୀ ଆନ୍ଦୋଳନଦ୍ୱାରା କିମ୍ବା ରାଷ୍ଟ୍ରପତି ଶାସନ ପ୍ରଚଳନଦ୍ୱାରା ମୂଲ୍ୟହ୍ରାସ ହୋଇଯିବ ନାହିଁ କିମ୍ବା ଭ୍ରଷ୍ଟାଚାର ଲୋପ ହୋଇଯାଉନାହିଁ । ଭ୍ରଷ୍ଟାଚାର, ମୂଲ୍ୟବୃଦ୍ଧି, ବେକାରି ଏବଂ ଛାତ୍ର ଅଶାନ୍ତି ଆନ୍ଦୋଳନାତ୍ମକ ମନୋଭାବରେ ଲୋପ ହୋଇପାରିବ ନାହିଁ ।

ବିନୋବାଜୀ ଏଭଳି ବିବୃତି ଦ୍ୱାରା ପ୍ରକାରାନ୍ତରେ ଗୁଜରାଟ ଆନ୍ଦୋଳନର ନିନ୍ଦା କଲେ । ହିଂସା ଅଭିଯୋଗ ଅମୂଳକ ବୋଲି ଜଣାଇଲେ ସୁଦ୍ଧା ସର୍ବୋଦୟର ମୁଖ୍ୟ ହିସାବରେ ସେ ଜୟପ୍ରକାଶଙ୍କର ଆନ୍ଦୋଳନାତ୍ମକ ପଥକୁ ପସନ୍ଦ କରୁନାହାନ୍ତି, ଏହା ସାଧାରଣରେ ଜଣାଇଦେଲେ ।

ଏଣେ ଇନ୍ଦିରାଙ୍କ ନେତୃତ୍ୱ ଓ କଂଗ୍ରେସ ସରକାର ବିରୁଦ୍ଧରେ ଜୟପ୍ରକାଶଙ୍କ ଆନ୍ଦୋଳନ ତୋଫାନବେଗରେ ଗତି କରୁଥିବାବେଳେ ଇନ୍ଦିରା ଗାନ୍ଧୀ ସର୍ବୋଦୟ ଶିବିରରେ ବିନୋବା ଓ ଜୟପ୍ରକାଶଙ୍କ ଭିତରେ ଏକ ଫାଟ ସୃଷ୍ଟି କରାଇ ଦେଇ ପାରିଲେ । ପରିଶେଷରେ ଏହିସବୁ ଘଟଣାକୁ କେନ୍ଦ୍ର କରି ଭାରତରେ ସର୍ବୋଦୟ ଆନ୍ଦୋଳନ ମଧ୍ୟରେ କି ଭଳି ବିବାଦ

ଉପସ୍ଥିତ ହେଲା ଏବଂ ତାହା ଦ'ଭାଗ ହୋଇଗଲା, ତାହା ଏକ ଦୁର୍ଭାଗ୍ୟଜନକ ଘଟଣା । କିନ୍ତୁ ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନ ମଧ୍ୟରେ ସମୁଦ୍ରମନ୍ଥନ ହେଲାଭଳି ଭାରତର ସବୁ ରାଜନୀତିକ ଦଳ, ଗୋଷ୍ଠୀ ଓ ମତବାଦ ମଧ୍ୟରେ ଯେଭଳି ମନ୍ଥନ ହୋଇଗଲା, ସେଥିରୁ ସର୍ବୋଦୟ ବାଦ୍ ଯିବାଟା ଏକ ବିରଳ ଘଟଣା ହୋଇ ରହିଯାଇଥାନ୍ତା ।

ଜୟପ୍ରକାଶ ବିନୋବାଜୀଙ୍କୁ ଜବାବ ଦେଇ କହିଥିଲେ—

"ମୁଁ ମୋ ତରଫରୁ ପରିଷ୍କାର କରି ଦେବାକୁ ଚାହେଁ ଯେ, ମୁଁ ଅନୁଭବ କରୁଛି, ମୁଁ ଯଦି ମନ୍ତ୍ରୀମଣ୍ଡଳର ଇସ୍ତଫା ଏବଂ ବିଧାନସଭାଭଙ୍ଗ ଦାବିକୁ ପୂର୍ଣ୍ଣ ସମର୍ଥନ ଜଣାଇ ନଥାନ୍ତି, ତେବେ ଜଣେ ନାଗରିକ ଭାବରେ ମୋର ଦାୟିତ୍ୱ ତୁଲାଇବାରେ ଅକ୍ଷମତା ଦେଖାଇଥାନ୍ତି । ଯଦି ସର୍ବୋଦୟ ଦର୍ଶନ ମୋର ଏଭଳି କାର୍ଯ୍ୟରେ ପ୍ରତିବନ୍ଧକ, ତେବେ ସେ ଦର୍ଶନକୁ ମୁଁ ଏତଦ୍ୱାରା ପ୍ରତ୍ୟାଖ୍ୟାନ କରୁଛି । ମୁଁ ଅନ୍ତତଃ ଏହି ବ୍ୟାଖ୍ୟା ଗ୍ରହଣ କରୁନାହିଁ । ବାସ୍ତବିକ ଜଣେ ସର୍ବୋଦୟ କର୍ମୀ ଭାବରେ ମୋର ଯାହା ଦାୟିତ୍ୱ ବୋଲି ମୁଁ ବୁଝେ, ସେଥିରେ ମୁଁ ବୁଝେ, ଗଣତାନ୍ତ୍ରିକ ବ୍ୟବସ୍ଥା ଓ ଗଣତାନ୍ତ୍ରିକ କ୍ଷମତାର ଯେଭଳି ଅପପ୍ରୟୋଗ କରାଯାଉଛି, ତା ବିରୁଦ୍ଧରେ ଯେତେ ଶକ୍ତିଶାଳୀଭାବରେ ସମ୍ଭବ ମୋର ସ୍ୱର ଉତ୍ତୋଳନ କରିବା ଏବଂ ଲଢ଼ାଇ କରିବା ଓ ସଫଳତା ସହକାରେ ନିନ୍ଦା କରିବା ହେଉଛି ମୋର କର୍ତ୍ତବ୍ୟ ।"

# ଓଡ଼ିଶା ହିଁ ଆନ୍ଦୋଳନର ଜନ୍ମସ୍ଥଳୀ

ଏହି ଶିରୋନାମାଟି ପାଠକଙ୍କ ମନରେ ବିସ୍ମୟ ଜାତ କରିପାରେ; ମାତ୍ର ଯାହା ସବୁ ଯେପରି ଘଟିଛି, ସେଥିରେ ଓଡ଼ିଶା ଯେ ପ୍ରଥମରୁ ଇନ୍ଦିରା-ଜୟପ୍ରକାଶ ବିବାଦରେ ମୁଖ୍ୟ ପ୍ରଶ୍ନ ହୋଇ ରହିଆସିଛି, ଏଥିରେ ସନ୍ଦେହ ନାହିଁ ।

୧୯୭୪ ମସିହା ଜୁନ୍ ୧୬ ତାରିଖରେ 'ଷ୍ଟେଟ୍‌ସ୍‌ମ୍ୟାନ'ରେ ପ୍ରକାଶିତ ସମ୍ବାଦରୁ ପ୍ରକାଶ, ଜୟପ୍ରକାଶ କହିଲେ—

"ମୁଁ ଶ୍ରୀମତୀ ଗାନ୍ଧୀଙ୍କ ସହିତ ବସି ଭ୍ରଷ୍ଟାଚାର ଦୂର କରିବା ନିମନ୍ତେ ଉପାୟ ବାହାର କରିବାଲାଗି ଇଚ୍ଛୁକ ଅଛି; ମାତ୍ର ଏଥିରେ କି ଲାଭ ? ଦୁର୍ନୀତିର ମୂଳ କାରଣ ହେଉଛି ବେଆଇନ ଟଙ୍କା ଗ୍ରହଣ କରିବା ଏବଂ ଏପରି ଟଙ୍କା ଗ୍ରହଣ କରିବା ଉଚିତ ନୁହେଁ ବୋଲି ଉଠାଇବା-ମାତ୍ରେ ହିଁ ଆମର କଥାବାର୍ତ୍ତା ଶେଷ ହୋଇଯିବ । ଏ କଥା ଜଣାଶୁଣା ଯେ, ଏଭଳି ଦାନ ପଛରେ ମତଲବ ଥାଏ ଦେଣ-ନେଣ—ମୁଁ ପାଞ୍ଚଲକ୍ଷ ଦେବି—ତୁମେ ମତେ ଗୋଟାଏ ଲାଇସେନ୍‌ସ ଦେବ । ଏପରି ପରିସ୍ଥିତିରେ ଭ୍ରଷ୍ଟାଚାର କେମିତି ବନ୍ଦ ହେବ ମତେ କହିଲ ?"

ସେ ପୁଣି କହିଲେ—ଭ୍ରଷ୍ଟାଚାର ଆଜି କେବଳ ଏକ ନୈତିକ ପ୍ରଶ୍ନ ହୋଇ ରହି ନାହିଁ । ଲୋକଙ୍କର ଖାଦ୍ୟ ସହି ଏହା ଜଡ଼ିତ ହୋଇଗଲାଣି । ଲକ୍ଷ ଲକ୍ଷ ଟଙ୍କା ନିର୍ବାଚନ ମାରେ ଯାଉଛି । ଏହି ଧନ ସବୁ ଦରିଦ୍ରଙ୍କ ମଙ୍ଗଳ ଲାଗି ଉଦ୍ଦିଷ୍ଟ । ମୁଁ ଏ ପର୍ଯ୍ୟନ୍ତ ଦୁର୍ନୀତି ବନ୍ଦ କରିବା ନିମନ୍ତେ ଯେତେ ପ୍ରସ୍ତାବ ଦେଇଛି, କୌଣସି ଗୋଟିକ ବିଷୟରେ ବି ଶ୍ରୀମତୀ ଗାନ୍ଧୀ ନିଜର ପ୍ରତିକ୍ରିୟା ଦେଇନାହାନ୍ତି ।

କେତେ ମାସ ପୂର୍ବେ ମୁଁ ନିର୍ବାଚନ ପାଣ୍ଠି ସଂଗ୍ରହ କଥା ଉଠାଇଥିଲି । ସେ କହିଲେ –'ଆମ ପାଖରେ ଧନ ନାହିଁ ।' ଏ କଥା ଶୁଣି ମୁଁ ଚକିତ ହୋଇପଡ଼ିଲି । ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟାନ୍ତ ଭାବରେ ଓଡ଼ିଶାର ଯେଉଁ ଉପନିର୍ବାଚନରେ ନନ୍ଦିନୀ ଶତପଥୀ ଜିଣିଥିଲେ, ସେ କଥା ଉଲ୍ଲେଖ କଲି । ମୁଁ ତାଙ୍କୁ କହିଲି—ପଶ୍ଚିମ-ବଙ୍ଗଳାର ତତ୍‌କାଳୀନ ଜଣେ ମନ୍ତ୍ରୀଙ୍କଠାରୁ ମୁଁ ଶୁଣିଛି ଯେ, ଏହି ଉପନିର୍ବାଚନରେ ୩୦ ଲକ୍ଷରୁ ଅଧିକ ଟଙ୍କା ବ୍ୟୟ ହୋଇଥିଲା । ତାଙ୍କ ନିଜ ଦଳର ଲୋକ ମତେ ଏ କଥା କହିଛନ୍ତି । ଶ୍ରୀମତୀ ଗାନ୍ଧୀ ଜଣାଇଲେ ଯେ ଶ୍ରୀମତୀ ଶତପଥୀ କେଉଁଠୁ ଏତେ ଟଙ୍କା ଆଣିଲେ ତାଙ୍କୁ ଜଣାନାହିଁ । ତାଙ୍କର ମତିଗତି ଯେତେବେଳେ ଏହିପ୍ରକାର, ସେଥିରେ କିଛି ଲାଭପ୍ରଦ କଥାବାର୍ତ୍ତା ହୁଅନ୍ତା କିପରି ?"

ସାଧାରଣରେ ସରକାରୀ କାର୍ଯ୍ୟକଳାପର କୌଣସି ଚର୍ଚ୍ଚା କରିବା ପୂର୍ବରୁ, ୧୯୭୩ ମସିହାରେ ଜୟପ୍ରକାଶ ନାରାୟଣ ଦୁଇଥର ଶ୍ରୀମତୀ ଗାନ୍ଧୀଙ୍କ ସହିତ ସାକ୍ଷାତ୍ କରିଥିଲେ ଏବଂ ତାଙ୍କ ସହିତ ଦୁର୍ନୀତି ଦୂର କରିବା ବିଷୟରେ ହିଁ ମୁଖ୍ୟତଃ ଆଲୋଚନା କରିଥିଲେ । ଦୁଇଥରଯାକ ତାଙ୍କ କଥାକୁ ଶ୍ରୀମତୀ ଗାନ୍ଧୀ କିଛି ଗୁରୁତ୍ୱ ଦେଇନଥିଲେ । ଏଥିରୁ ଓଡ଼ିଶା ବିଷୟଟି କେଉଁଭଳି ନଗ୍ନ ସତ୍ୟ, ତାହା ଓଡ଼ିଶା ରାଜନୀତିକ କ୍ଷେତ୍ରରେ ସମସ୍ତଙ୍କୁ ଜଣା । ଏବେ ପୁଣି ନନ୍ଦିନୀ ଶତପଥୀଙ୍କ କଟକ ଘର ଖାନତଲାସ ହୋଇ ସେଥିରୁ ଏହି ଉପନିର୍ବାଚନ ସମ୍ବନ୍ଧରେ ଯାହା ତଥ୍ୟ ବାହାରିଛି, ସେଥିରେ ଏହି ସତ୍ୟତାର ବହୁ ପ୍ରମାଣ ମିଳୁଛି । କେବଳ ଇନ୍ଦିରା ଗାନ୍ଧୀ ନୁହନ୍ତି, ନନ୍ଦିନୀ ଶତପଥୀଙ୍କର ମଧ୍ୟ ବ୍ୟକ୍ତିଗତ କ୍ରୋଧ ବରାବର ଜୟପ୍ରକାଶ ନାରାୟଣଙ୍କ ଉପରେ ରହିଛି । ୧୯୬୯ ମସିହାର ଘଟଣା, ଯାହାର ଲେଖକ ହେଉଛି ପ୍ରତ୍ୟକ୍ଷଦର୍ଶୀ । ଆମମାନଙ୍କର ନିମନ୍ତ୍ରଣରେ ଜୟପ୍ରକାଶ ଓଡ଼ିଶା ଗସ୍ତରେ ଆସିଥାଆନ୍ତି । ଲେଖକ ବରାବର ତାଙ୍କ ସହ ରହିଥାଏ । ନନ୍ଦିନୀ ସେତେବେଳକୁ ଶତପଥୀ ହୋଇ ନ ଥାଆନ୍ତି—ନନ୍ଦିନୀ ପାଣିଗ୍ରାହୀ ଥାଆନ୍ତି ରେଭେନ୍ସା କଲେଜର ଛାତ୍ରୀ ଏବଂ କମ୍ୟୁନିଷ୍ଟ ପାର୍ଟି ସହ ସମ୍ପୃକ୍ତ । ଜୟପ୍ରକାଶ କଟକ ଷ୍ଟେସନରୁ ଓହ୍ଲାଇ ଜିପ୍‌ରେ ଉଠିଲାବେଳକୁ ତାଙ୍କ ଉପରକୁ ପଚାସଢ଼ା ଲେମ୍ବୁ ଓ ଅଣ୍ଡା ଫିଙ୍ଗିଥିଲେ ନନ୍ଦିନୀ । ସେଦିନ କଟକ ସହରରେ ଏହି ଘଟଣାରେ ଲୋକେ ଏଭଳି ଉତ୍ତ୍ୟକ୍ତ ହୋଇଥିଲେ ଯେ ଆମେସବୁ ସମ୍ଭାଳି ନ ଥିଲେ କମ୍ୟୁନିଷ୍ଟ ପାର୍ଟି ଅଫିସ ଛାରଖାର କରିଦେଇଥାଆନ୍ତେ ଏବଂ ନନ୍ଦିନୀଙ୍କର ଦୁରବସ୍ଥା ହୋଇ ଥାଆନ୍ତା । ୧୯୭୫ରେ ପୁଣି ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିବାବେଳେ, ଜୟପ୍ରକାଶ ଓଡ଼ିଶା ଗସ୍ତ କରୁଥିବାବେଳେ, ତାଙ୍କୁ ଯେ ମାରିଦେବାର ଯୋଜନା କରାଯାଇଥିଲା ଏବଂ ଢେଙ୍କାନାଳରେ ଲାଠି ପ୍ରହାରରୁ ସେ ଯେ ଅଳ୍ପକେ ରକ୍ଷାପାଇଗଲେ, ଏଥିରେ ବିସ୍ମିତ ହେବାର କିଛି ନାହିଁ । ଏହା ତାଙ୍କ ଉପରେ ହୋଇଥିଲା ଶାରୀରିକ ଆକ୍ରମଣ । କିନ୍ତୁ ଇନ୍ଦିରା ଗାନ୍ଧୀ ମାର୍ଚ୍ଚ-ଏପ୍ରିଲ ପହିଲାରେ ୧୯୭୪ ମସିହାରେ ଯାହା କଲେ, ତାହା ଅତ୍ୟନ୍ତ ଜଘନ୍ୟ, ନୀଚ ଓ ରୁଚିବିହୀନ କାର୍ଯ୍ୟ ।

୧୯୭୪ ମସିହା ଏପ୍ରିଲ ପହିଲାରେ ଲେଖକ ଓଡ଼ିଶା ରାଜଭବନରେ ଭେଟିଥିଲା ଏକ କ୍ଳାନ୍ତ, ବିରକ୍ତ ଓ ବିବ୍ରତ ଇନ୍ଦିରା ଗାନ୍ଧୀଙ୍କୁ । ପ୍ରତ୍ୟେକ ସାକ୍ଷାତ୍‌ରେ ରାଜନୀତି ହିଁ ଚର୍ଚ୍ଚା ହୁଏ; ଏଥର ହେଲା । ମାତ୍ର ତାର ପୂର୍ବ ଘଟଣାବଳୀ ତାଙ୍କ ମନରେ ନୈରାଶ୍ୟ ଜାତ କରାଇଥିଲା ଏବଂ ସେ ବୋଧହୁଏ ନିଜର ଭବିଷ୍ୟତ ବିଷୟରେ ସନ୍ଦିହାନ ଓ ଆଶଙ୍କା ପୋଷଣ କରୁଥିଲେ ।

ଏହି ଭୁବନେଶ୍ୱରରୁ ହିଁ ମାର୍ଚ୍ଚ ୩୧ ତାରିଖରେ ଗୁଜରାଟରେ ରାଷ୍ଟ୍ରପତି ଶାସନ ଜାରି ପ୍ରସ୍ତାବରେ ତାଙ୍କୁ ସମ୍ମତି ଦେବାକୁ ପଡ଼ିଲା । ଗୁଜରାଟ ଆନ୍ଦୋଳନ ସମ୍ବନ୍ଧରେ ଆଗରୁ ଉଲ୍ଲେଖ କରାଯାଇଛି । ଏଭଳି ଅସମ୍ଭାଳ ପରିସ୍ଥିତି ସୃଷ୍ଟି ହେଲା ଯେ, ପ୍ରଧାନମନ୍ତ୍ରୀଙ୍କ ଅନୁପସ୍ଥିତିରେ କେନ୍ଦ୍ର ମନ୍ତ୍ରୀମଣ୍ଡଳର ବୈଠକ ବସି ଗୁଜରାଟ କଂଗ୍ରେସ ମନ୍ତ୍ରିମଣ୍ଡଳର ଇସ୍ତଫା

ଏବଂ ରାଷ୍ଟ୍ରପତି ଶାସନ ଜାରିର ନିଷ୍ପତ୍ତି କରିବାକୁ ପଡ଼ିଲା । ପ୍ରଧାନମନ୍ତ୍ରୀ ସେଥିରେ ସମ୍ମତି ଜଣାଇ ରାଷ୍ଟ୍ରପତିଙ୍କୁ ଏହିଠାରୁ ହିଁ ଅନୁରୋଧ କରିବାକୁ ପଡ଼ିଲା ରାଷ୍ଟ୍ରପତି ଶାସନ ଜାରି କରିବା ନିମନ୍ତେ । ଜନତାର ଚାପରେ ଏପରି ଏକ 'ପରାକ୍ରମଶାଳୀ' ପ୍ରଧାନମନ୍ତ୍ରୀଙ୍କୁ ଯେ ମୁଣ୍ଡ ନୁଆଁଇବାକୁ ବାଧ୍ୟ କରାଗଲା, ଏଥିରେ ତାଙ୍କ ପ୍ରାଣରେ କି ଆଘାତ ଲାଗିଥିବ, ତାହା ସହଜରେ ଅନୁମାନ କରିହେବ । ତାଙ୍କ ମନର ବିରକ୍ତିର ସୂଚନା ଲେଖକ ପାଇଲି କଥା-ପ୍ରସଙ୍ଗରେ । ଗୁଜରାଟର କେତେକ ପୂର୍ବତନ ପ୍ରଜାସୋସଲିଷ୍ଟ ପାର୍ଟିର ସାଥୀ ଗୁଜରାଟରେ ମନ୍ତ୍ରିମଣ୍ଡଳ ଗଠନରେ ପ୍ରଧାନ ଅଂଶ ଗ୍ରହଣ କରିଥାଆନ୍ତି ଏବଂ ଇନ୍ଦିରା ଗାନ୍ଧୀଙ୍କ ଅନିଚ୍ଛା ସତ୍ତ୍ୱେ ସେଠାରେ ଗଣତାନ୍ତ୍ରିକ ପଦ୍ଧତିରେ ନେତା ନିର୍ବାଚନ କରାଇବାକୁ ଏକପ୍ରକାର ବାଧ୍ୟ କରିଥାଆନ୍ତି । ସେଥିଯୋଗୁଁ ଇନ୍ଦିରା ଗାନ୍ଧୀ ପ୍ରଥମେ ଲେଖକଙ୍କ ଉପରେ ଦୋଷାରୋପ କରିବାକୁ ଲାଗିଲେ ଯେ—ଆପଣଙ୍କ ପି. ଏସ୍. ପି.ର ଲୋକଙ୍କର ଏହି ସବୁ କାଣ୍ଡ । ଲେଖକ ଅବଶ୍ୟ ଏକ ରୁକ୍ଷ ଜବାବ ଦେଇ କହିଥିଲି ଯେ—ଲେଖକ ଏବେ ସୁଦ୍ଧା ପି. ଏସ୍. ପି. ରହିଛି ଆପଣଙ୍କ ଚକ୍ଷୁରେ ଏବଂ ସେହି ହିସାବରେ ଲେଖକ ଓ ଆପଣ ଏଠି ବସିଛନ୍ତି, ଏହା ଜଣାନଥିଲି । ଏଭଳି ଜବାବ ପାଇ ସେ ଟିକିଏ ଅପ୍ରତିଭ ହୋଇପଡ଼ିଲେ ଏବଂ ଟିକିଏ ଦୁଃଖିତ ବି ହେଲେ । ମାତ୍ର ସେ ଯେ ବିବ୍ରତ ହୋଇପଡ଼ିଥିଲେ, ଏହା ସ୍ପଷ୍ଟ ଜଣାପଡ଼ୁଥିଲା ।

ସେହିଦିନ ସକାଳର ସମ୍ବାଦପତ୍ରରେ ଜୟପ୍ରକାଶ ନାରାୟଣଙ୍କର ଏକ ବିବୃତି ପାଟନାରୁ ପ୍ରକାଶ ପାଇଥାଏ । ସେଥିରେ ସେ ସ୍ପଷ୍ଟ କହିଥାଆନ୍ତି, ଯଦି ଛାତ୍ର ଓ ଜନସଂଘର୍ଷ ସମିତି ଆନ୍ଦୋଳନ ପ୍ରତି ଏହିଭଳି ନିର୍ମମ ଆଚରଣ ଦେଖାଯାଏ ଏବଂ ସେମାନଙ୍କର ମନର ଭାବନା ଓ ପ୍ରତିବାଦ ପ୍ରକାଶ ସୁଯୋଗରୁ ବଞ୍ଚିତ କରାଯାଏ, ତେବେ ଜୟପ୍ରକାଶ ନିଜେ ଭଗ୍ନ-ସ୍ୱାସ୍ଥ୍ୟରେ ବି ଏକ ଶୋଭାଯାତ୍ରାର ନେତୃତ୍ୱ ନେଇ ବାହାରିବେ ଏଭଳି ଅନ୍ୟାୟର ପ୍ରତିବାଦ ସ୍ୱରୂପ । ଏହାର ପରିଣତି ଅତି ଭୟାବହ ହେବ ବୋଲି ଇନ୍ଦିରା ଗାନ୍ଧୀ ଆଶଙ୍କା କରୁଥାଆନ୍ତି ଏବଂ କଥାଛଳରେ ସେଭଳି ଭାବ ପ୍ରକାଶ କଲେ ମଧ୍ୟ । ଜୟପ୍ରକାଶଙ୍କ ଆନ୍ଦୋଳନକୁ କେମିତି ସମ୍ମୁଖୀନ ହେବାକୁ ହେବ, ତାହାହିଁ ତାଙ୍କର ପ୍ରଧାନ ଚିନ୍ତା ।

କୌଣସି ଯଥାର୍ଥ କାରଣ ନ ଥାଇ ହଠାତ୍ ସେହି ରାଜଭବନର ଏକ ଭୂମିପଣ୍ଡା-ବଣ୍ଟନ ଉତ୍ସବରେ ଜୟପ୍ରକାଶଙ୍କ ନାମ ନଧରି ତାଙ୍କ ଉପରେ ଆକ୍ରମଣ ଆରମ୍ଭ କରିଦେଲେ । ଜୟପ୍ରକାଶ ଧନୀ ଓ ଅବାଞ୍ଛନୀୟ ଲୋକଙ୍କର ଆତିଥ୍ୟ ଗ୍ରହଣ କରୁଥିବାବେଳେ ଦୁର୍ନୀତି ବିଷୟରେ ତାଙ୍କର କିଛି କହିବାର ଅଧିକାର ନାହିଁ । ଏହିପରି ଭାବରେ ତାଙ୍କର ବ୍ୟକ୍ତିଗତ ଚରିତ୍ର ଉପରେ ଆକ୍ରମଣ କଲେ ଏବଂ ବିନୋବାଜୀ ତାଙ୍କ ଅନୁଯାୟୀଙ୍କ ଆନ୍ଦୋଳନାତ୍ମକ କାର୍ଯ୍ୟକୁ ନାପସନ୍ଦ କରିଛନ୍ତି ବୋଲି କହିଲେ ।

ଶ୍ରୀମତୀ ଗାନ୍ଧୀ ବିଚାରିଥିଲେ ଏହିଭଳି ବ୍ୟକ୍ତିଗତ ଆକ୍ରମଣ ଏବଂ ତାହା ପୁଣି ଜୟପ୍ରକାଶଙ୍କ ନିଜର ସାଧୁତା ବିଷୟରେ ସେ ଯେତି ଚର୍ଚ୍ଚା କରିବେ, ତେବେ ଜୟପ୍ରକାଶ

ନିଜେ ହତୋତ୍ସାହ ହୋଇପଡ଼ିବେ ଏବଂ ଯୁଦ୍ଧକ୍ଷେତ୍ରରେ ଆଗୁଆ ଆକ୍ରମଣ ପରି ସେ ତାର ପୂର୍ଣ୍ଣ ସୁଯୋଗ ଉଠାଇବେ; ବିନୋବା ଏବଂ ଜେ. ପି.ଙ୍କ ଭିତରେ ବି ଭେଦଭାବ ପଶିଯିବ । ମାତ୍ର ଶ୍ରୀମତୀ ଗାନ୍ଧୀ ପରେ ନିଶ୍ଚୟ ଅନୁତାପ କରିଥିବେ ଏଭଳି ଦାୟିତ୍ୱହୀନ ଓ ରୁଚିହୀନ ମନ୍ତବ୍ୟ କରିଥିବା ହେତୁ । କାରଣ ଏହିଠାରୁ ହିଁ ରାଜନୀତିକ ବିବାଦ ଆହୁରି ତୀବ୍ରତର ହେଲି ଏବଂ ଦେଶର ବହୁ ନିର୍ଦ୍ଦଳୀୟ ସଙ୍ଗଠନ ଓ ବ୍ୟକ୍ତି ଇନ୍ଦିରା ଗାନ୍ଧୀଙ୍କର ଏଭଳି ସଂସ୍କୃତି-ବିରୋଧୀ ମନୋଭାବରେ କ୍ଷୁବ୍ଧ ହେଲେ—ଜୟପ୍ରକାଶଙ୍କ ପ୍ରତି ସାରା ଦେଶର ସହାନୁଭୂତି ଫେରି-ଆସିଲା ।

ଜୟପ୍ରକାଶ ତୁରନ୍ତ ଏହାର ଏକ କଡ଼ା ଜବାବ ଏକ ଦୀର୍ଘ ବିବୃତିରେ ଦେଲେ ଏବଂ ତାହା ଚାଞ୍ଚଲ୍ୟ ସୃଷ୍ଟି କଲା । ଜୟପ୍ରକାଶ ନାରାୟଣଙ୍କୁ ତାଙ୍କର ଚିରବିରୋଧୀ କମ୍ୟୁନିଷ୍ଟମାନେ, ସେ ଧନୀବ୍ୟକ୍ତିଙ୍କ ଦ୍ୱାରା ଏବଂ ଆମେରିକାର ଦଲାଲ ରୂପେ ଆମେରିକାର ବିଭିନ୍ନ ସଂଗଠନଦ୍ୱାରା ଆର୍ଥିକ ସାହାଯ୍ୟ ପାଇ ଚଳୁଛନ୍ତି ବୋଲି ବାରମ୍ବାର ଦୋଷ ଦେଉଥିଲେ । ଜୟପ୍ରକାଶ ବହୁପୂର୍ବରୁ ୧୯୭୩ ମସିହା ଅକ୍ଟୋବର ୧୩ ତାରିଖରୁ ଏକ ଦୀର୍ଘ ବିବୃତିରେ ସେ କିଭଳି ସାଧାରଣ ଭାବରେ ଜୀବନଯାପନ କରୁଛନ୍ତି ଏବଂ କେଉଁ ସୂତ୍ରରୁ କେତେ ବ୍ୟକ୍ତିଗତ ସାହାଯ୍ୟ ପାଇଛନ୍ତି, ତାହା ପରିଷ୍କାର କରିଦେଇଥିଲେ । ଏହା ପରେ, ଏତେ କାଳ ଗଲାପରେ, ଏମିତି ରୁଚିହୀନ କଥା ଉଠାଇବାଟାକୁ ଯେ କେତେଜଣ ଯେଉଁ ବସିଥିଲେ, କେହି ପସନ୍ଦ କଲେ ନାହିଁ ଏବଂ ସମ୍ବାଦପତ୍ରମାନେ ମଧ୍ୟ ଇନ୍ଦିରା ଗାନ୍ଧୀ ଜୟପ୍ରକାଶଙ୍କ ନାମ ଧରିନଥିଲେ ସୁଦ୍ଧା ଜୟପ୍ରକାଶଙ୍କୁ ଲକ୍ଷ୍ୟ କରି ଏହା କୁହାଯାଇଛି ବୋଲି ରିପୋର୍ଟ କରିଦେଲେ ।

ସେତେବେଳେ ବିସ୍ତୃତ ବିବରଣ ଦେଇ ଜୟପ୍ରକାଶ ଲେଖିଥିଲେ—"ଯେମିତି ସ୍ୱାଧୀନତା ସଂଗ୍ରାମ ବେଳେ ସାଧାରଣ କଂଗ୍ରେସ ଲୋକେ ଚଳୁଥିଲେ, ମୁଁ ସେହିଭଳି ନିଜର ବନ୍ଧୁ ଓ କେତେକ ସଙ୍ଗଠନରୁ ସମର୍ଥନ ପାଇ ଚଳିଆସିଛି ।"

ପୁଣି ଏଥର ଇନ୍ଦିରା ଗାନ୍ଧୀଙ୍କୁ ଏ ସମ୍ପର୍କରେ ଜବାବ ଦେଇ ସେ କହିଲେ—"ମୋ ସଂସ୍କୃତି ଇନ୍ଦିରା ଯେଭଳି ନୀଚସ୍ତରକୁ ଯାଉଛନ୍ତି, ସେତେଦୂର ଯିବାକୁ ମତେ ଶିକ୍ଷା ଦେଇନାହିଁ । ତେବେ ଇନ୍ଦିରାଜୀ ଯେଉଁ ମାପକାଠି ପ୍ରୟୋଗ କରିଛନ୍ତି, ତାହା ଯଦି ସାଧାରଣ ଭାବରେ ପ୍ରୟୋଗ କରାଯାଏ, ତେବେ ଗାନ୍ଧୀଜୀ ହିଁ ଏ ଦେଶରେ ସବୁଠାରୁ ଶ୍ରେଷ୍ଠ ଭ୍ରଷ୍ଟାଚାରୀ ଥିଲେବୋଲି ଧରାଯିବ; କାରଣ ତାଙ୍କର ସମସ୍ତ ସାଧାରଣ ବ୍ୟକ୍ତିଗତ ଖରଚ ଧନୀ ସମର୍ଥକ-ମାନେ ହିଁ ତାଙ୍କ ପାଇଁ ବହନ କରୁଥିଲେ । ଜଣେ ଉଚ୍ଚସ୍ଥାନ ଅଧିକାରୀ ହୋଇଥିବା ବ୍ୟକ୍ତିଠାରୁ ଏପରି ଅଦ୍ଭୁତ ମିଥ୍ୟା ଓ ସାରହୀନ କଥା ଦେଶଲୋକେ କେତେ ଦିନ ବରଦାସ୍ତ କରିବେ !"

ସେମିତି ବିନୋବା ଓ ତାଙ୍କ ଭିତରେ ଭେଦ ସୃଷ୍ଟି କରିବା ଉଦ୍ୟମରୁ ବିରତ ହେବା ନିମନ୍ତେ ସେ ଇନ୍ଦିରାଙ୍କୁ ସତର୍କ କରିଦେଇ କହିଲେ—"ମୋ କାର୍ଯ୍ୟ ପଛରେ ବିନୋବା

ଓ ସର୍ବସେବା ସଙ୍ଘର ସମର୍ଥନ ରହିଛି କି ନାହିଁ, ତାହା ଆମ ଭିତରେ ନିଷ୍ପତ୍ତି ହେବ— ତୁମେ ସେଥିରେ ଦଖଲ ଦେବାକୁ କିଏ ? ମୋର ବିନୋବାଙ୍କ ସହ ବହୁ ବିଷୟରେ ସମ୍ମତି ରହିଛି । ଆମ ଭିତରେ କୌଣସି ନୀତିଗତ ପାର୍ଥକ୍ୟ ନାହିଁ; କେବଳ କେତେକ ସମସ୍ୟା ଯେନି ମତଭେଦ ରହିଛି । ଇନ୍ଦିରା ଆଜି ଆମକୁ ଶିକ୍ଷା ଦେବାକୁ ଚେଷ୍ଟା କରନ୍ତୁ ନାହିଁ ।

ଇନ୍ଦିରାଜୀ ବୋଧହୁଏ ଭାବିଛନ୍ତି, ତାଙ୍କର ଅତ୍ୟନ୍ତ ଲୋକପ୍ରିୟତା ଓ ନିର୍ବାଚନ ବିଜୟ ଯୋଗୁଁ ଲୋକେ ତାଙ୍କ ସହ ଅଛନ୍ତି ଏବଂ ସେ ଯାହା ଇଚ୍ଛା ତାହା କହିପାରିଯିବେ । କିନ୍ତୁ ସେ ଏକ ନିର୍ବୋଧର ସ୍ୱର୍ଗଭୂମିରେ ବିଚରଣ କରୁଛନ୍ତି ।

ମୁଁ ଏତିକି କହିଦେବାକୁ ଚାହେଁ ଯେ, କାହାରି ବ୍ୟକ୍ତିଗତ ଓ ଘରୋଇ ବ୍ୟାପାରରେ ମୁଁ କିଛି କହିବାକୁ କେବେହେଲେ ଯିବି ନାହିଁ । ତାହା ସାଙ୍ଗେ ସାଙ୍ଗେ ଏତିକି ବି ପରିଷ୍କାର କରିଦେଉଛି—କେହି ଯେତେ ବଡ଼ କ୍ଷମତାଶାଳୀ ହୋଇଥାନ୍ତୁ ପଛକେ, ଦେଶରେ ସାଧାରଣ କ୍ଷେତ୍ରରେ ହେଉଥିବା ଗଲ୍‌ତି ଓ ଅନ୍ୟାୟ ବିରୁଦ୍ଧରେ ମୁଁ ବରାବର ମୋର ସ୍ୱର ଉତ୍ତୋଳନ କରୁଥିବି—ଏଥିଲାଗି ଯାହା ଭୋଗିବାକୁ ପଡ଼ିବ, ମୁଁ ପ୍ରସ୍ତୁତ ଅଛି ।"

ଇନ୍ଦିରା ଗାନ୍ଧୀ ଏଭଳି ଜବାବ ପାଇ ବିବ୍ରତ ହୋଇପଡ଼ିଥିବେ ନିଶ୍ଚୟ ।

ସର୍ବୋଦୟ ବିଷୟରେ ଉଲ୍ଲେଖ କରି ଜୟପ୍ରକାଶ ଆଉଦିନେ କହିଥିଲେ—

"ଯେଉଁମାନଙ୍କର ଧାରଣା ଯେ ସର୍ବୋଦୟ ବୋଇଲେ କେତେକ ଉତ୍ତମ ସାଧୁ ବ୍ୟକ୍ତି, ସେମାନେ ଅହିଂସ ବିପ୍ଳବ କଥା କହନ୍ତି ସନ୍ଦେହ ନାହିଁ; କିନ୍ତୁ ପ୍ରକୃତରେ ଏଥିଲାଗି ଗୁରୁତ୍ୱ ଦିଅନ୍ତି ନାହିଁ, ସେମାନେ ନିଜ ଧାରଣା କେଡ଼େ ଭୁଲ ଅଳ୍ପଦିନେ ବୁଝିବେ । ମୋ ତରଫରୁ ମୁଁ କହିଦେବାକୁ ଚାହେଁ ଯେ, ପାଟନା, ଦିଲ୍ଲୀ ବା ଅନ୍ୟ ସବୁଠି ମୁଁ କୁଶାସନ, ଦୁର୍ନୀତି ଓ ଅନ୍ୟ ଅନ୍ୟାୟ କାର୍ଯ୍ୟ ଦେଖି ଆଉ ନୀରବଦର୍ଶକ ଭାବରେ ରହିପାରିବି ନାହିଁ । ଏଇଥିଲାଗି କିଛି ମୁଁ ସ୍ୱାଧୀନତା ଲଢ଼ାଇ ଲଢ଼ି ନ ଥିଲି । ଏ ମନ୍ତ୍ରିମଣ୍ଡଳ ଯିବ, ସେ ଆସିବ, କିମ୍ବା ବିଧାନସଭା ଭାଙ୍ଗିବ କି ରହିବ, ସେଥିରେ ମୋର ସେତେ ଆଗ୍ରହ ନାହିଁ । ଏଗୁଡ଼ିକ ସବୁ ଦଳୀୟ ଦାବି ଏବଂ ସେଭଳି ପରିବର୍ତ୍ତନରେ ବିଶେଷ କିଛି ଫରକ୍ ପଡ଼ିବ ନାହିଁ । ଏହା ତ ଢ଼ଣେଇଗି-ବିଶ୍ ହେଲି ଭଳି । କିନ୍ତୁ ମୁଁ ସ୍ଥିର କରିଛି ଦୁର୍ନୀତି, କୁଶାସନ ଓ ଚୋରାବେପାର, ଲାଭଖୋରି ଓ ଜିନିଷ ଲୁଚାଉଥିବା ଅପରାଧ ବିରୋଧରେ ଓ ଶିକ୍ଷାନୀତିର ଆମୂଳ ପରିବର୍ତ୍ତନ ଲାଗି ଲଢ଼ାଇ ଚଳାଇବି ଏବଂ ପ୍ରକୃତ ଗଣତନ୍ତ୍ର ସ୍ଥାପନ ନିମନ୍ତେ କାର୍ଯ୍ୟ କରିବି ।

"ଦୁଃଖର କଥା ମୁଁ ବରାବର ବେମାର ହେଉଛି । କିନ୍ତୁ ଯଦି ସରକାର ତାଙ୍କର ପ୍ରଚଳିତ ନୀତି ଅନୁସାରେ ଲୋକଙ୍କର ଶାନ୍ତିପୂର୍ଣ୍ଣ ପ୍ରତିବାଦ କରିବାର ଏବଂ ତା' ବିରୁଦ୍ଧରେ କାର୍ଯ୍ୟ କରିବାର ଅଧିକାରରୁ ଲୋକଙ୍କୁ ବଞ୍ଚିତ କରିଚାଲନ୍ତି, ତେବେ ମୁଁ ସମ୍ପୂର୍ଣ୍ଣ ସୁସ୍ଥ ହେବା ପୂର୍ବରୁ ବି ଶାନ୍ତି-ସୈନିକ, ଛାତ୍ର ଓ ଅନ୍ୟ ନାଗରିକମାନଙ୍କୁ ସତ୍ୟାଗ୍ରହୀଶ୍ରେଣୀଭୁକ୍ତ କରି ଏକ ନୀରବ ଶୋଭାଯାତ୍ରାର ନେତୃତ୍ୱ ନେବି । ଏହା କିଛି ଏକ ଧମକ୍ ନୁହେଁ; ଏହା ଏକ

ବନ୍ଧୁଭାବରେ ସତର୍କବାଣୀ । ଏହା ହେବ ଆରମ୍ଭ ମାତ୍ର; ତା'ପରେ ବାକୀ ଯାହା ସବୁ କରାଯିବ ।''

ଜୟପ୍ରକାଶଙ୍କର ଉପରୋକ୍ତ ବକ୍ତବ୍ୟ ହିଁ ଇନ୍ଦିରା ଗାନ୍ଧୀଙ୍କି ଅଧିକ ବିଚଳିତ କରିଥିଲା । କିନ୍ତୁ ଜୟପ୍ରକାଶଙ୍କ ପାଲଟା ଜବାବରେ ବିଷୟଟି ଆହୁରି ଜଟିଳ ଆକାର ଧାରଣ କଲା ।

କାରଣ ଶ୍ରୀମତୀ ଗାନ୍ଧୀଙ୍କର ଏପ୍ରିଲ ପହିଲା ତାରିଖର ବିବୃତିର ଜବାବ ଦେଇ ଏପ୍ରିଲ ୪ ତାରିଖରେ ବିନୋବାଜୀ ପ୍ରକାଶ କରିଦେଲେ ଯେ ତାଙ୍କର ଜୟପ୍ରକାଶଙ୍କ ସହ କୌଣସି ମତଭେଦ ନାହିଁ—କଥା କହିବା ଢଙ୍ଗରେ ହୁଏତ ଫରକ୍ ଥାଇପାରେ; ମାତ୍ର ଅଧିକାଂଶ ବିଷୟରେ ସେ ଜୟପ୍ରକାଶଙ୍କ ସହ ଏକମତ । ଆଗ୍ରହୀ ବିନୋବାଜୀ ତାଙ୍କ ସହକର୍ମୀମାନଙ୍କ କାର୍ଯ୍ୟକୁ ନାପସନ୍ଦ କରୁଛନ୍ତି ବୋଲି ଶ୍ରୀମତୀ ଗାନ୍ଧୀ ଯାହା କହିଥିଲେ, ତାହା ଉଲ୍ଲେଖ କରି ବିନୋବାଜୀ କହିଲେ ଯେ—ଇନ୍ଦିରାଜୀ ଦୁଃଖପ୍ରକାଶ କଲାଭଳି କେତେକ ଘଟଣା ମୋ ଆଗରେ ରଖିଥିଲେ; ମାତ୍ର ଏଥିରେ ଜୟପ୍ରକାଶଙ୍କ ସହ କୌଣସି ସମ୍ପର୍କ ନ ଥିଲା ।

ଏହି ଜବାବଗୁଡ଼ିକ ସାଧାରଣରେ ପ୍ରକାଶ ପାଇଗଲା ପରେ ଶ୍ରୀମତୀ ଗାନ୍ଧୀ ମହା ଅଡୁଆରେ ପଡ଼ିଗଲେ । ଜୟପ୍ରକାଶଙ୍କ ଉପରେ ହୋଇଥିବା ବ୍ୟକ୍ତିଗତ ଆକ୍ରମଣକୁ ଲୋକେ ନାପସନ୍ଦ କଲେ ଏବଂ ଏଣେ ବିନୋବାଜୀ ଓ ଜୟପ୍ରକାଶଙ୍କ ଭିତରେ ଯେ ମତଭେଦ ସୃଷ୍ଟି କରିବାର ଉଦ୍ୟମ କରିଥିଲେ, ସେଥିରେ ଏକପ୍ରକାର ସେ ମିଥ୍ୟା କହୁଛନ୍ତି ବୋଲି ବିନୋବା କହିଦେଲେ । ବିନୋବାଙ୍କ ମତଗତରେ ସେ ଅଧିକ ବିଚଳିତ ହୋଇପଡ଼ିଲେ—କାରଣ ଏତଦ୍ଦ୍ୱାରା ଜୟପ୍ରକାଶଙ୍କ ଆନ୍ଦୋଳନକୁ ଏକ ଫାସିଷ୍ଟ ଆନ୍ଦୋଳନ ବୋଲି ପ୍ରଚାର କରିବାର ଯେଉଁ ଯୋଜନା ଆଗରୁ କରାହୋଇଥିଲା ଏବଂ ସେଥିରେ ବିନୋବା ଓ କମ୍ୟୁନିଷ୍ଟଙ୍କର ଯେ ସହଯୋଗ ମିଳିବାର ଆଶା ଥିଲା, ତାହା ଏତଦ୍ଦ୍ୱାରା ପରାହତ ହୋଇଯିବାର ଆଶଙ୍କା ଜାତ ହେଲା ।

ବିନୋବାଙ୍କ ମନରେ ଯଦି କିଛି ବିରକ୍ତିଭାବ ଥାଏ, କେମିତି ଦୂର କରିବାକୁ ହେବ ଏ ଚିନ୍ତା ବିଶେଷଭାବରେ ଘାରିଲା । ଶ୍ରୀମତୀ ନିର୍ମଳା ଦେଶପାଣ୍ଡେ, ଯେ ବିନୋବାଙ୍କର ଜଣେ ଅନ୍ତରଙ୍ଗ ସାଥୀ, ସେ ଏକପ୍ରକାର ଇନ୍ଦିରା ଗାନ୍ଧୀଙ୍କ ତରଫରୁ ବିନୋବାଙ୍କ ପାଖରେ କାର୍ଯ୍ୟ କରୁଥାଆନ୍ତି । ତାଙ୍କୁ ଡକାଇ ପରାମର୍ଶ କରାଗଲା । ତାଙ୍କର ପରାମର୍ଶକ୍ରମେ ଇନ୍ଦିରା ଗାନ୍ଧୀଙ୍କ ନିର୍ଦ୍ଦେଶ ପାଇ ସରକାରୀ ଖର୍ଚ୍ଚରେ ଓଡ଼ିଶା ସରକାରର ଉଡ଼ାଜାହାଜରେ ଯାତ୍ରା କଲେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ବିନୋବାଙ୍କ ପାଖକୁ ତାଙ୍କୁ ପ୍ରକୃତ ତଥ୍ୟ ଦେବା ନିମନ୍ତେ ।

ବିନୋବାଙ୍କ ସହ ନନ୍ଦିନୀ ଶତପଥୀଙ୍କର ତିନିଘଣ୍ଟା ଆଲୋଚନା ହେଲା । ସମ୍ବାଦପତ୍ରକୁ କୁହାଗଲା ଯେ ଓଡ଼ିଶାର ଭୂସଂସ୍କାର ସମ୍ପର୍କରେ ମୁଖ୍ୟମନ୍ତ୍ରୀ ବିନୋବାଙ୍କ ସହ ବିସ୍ତୃତ ପରାମର୍ଶ

କରିବାକୁ ଆସିଥିଲେ ଏବଂ ଓଡ଼ିଶାର ଭୁବଣ୍ଟନ କାର୍ଯ୍ୟ ସନ୍ତୋଷଜନକ ବୋଲି ସେ ମତ ପ୍ରକାଶ କରିଛନ୍ତି । କିନ୍ତୁ ଫେରନ୍ତା ବାଟରେ ନାଗପୁର ବିମାନ ବନ୍ଦରରେ ସାମ୍ବାଦିକମାନଙ୍କୁ କହିଲେ—"ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଓଡ଼ିଶା ଗସ୍ତ ବେଳେ ଜୟପ୍ରକାଶ ନାରାୟଣଙ୍କ ସମ୍ପର୍କରେ କିଛି କହିନାହାନ୍ତି । ପ୍ରଧାନମନ୍ତ୍ରୀଙ୍କ ଓଡ଼ିଶା ଗସ୍ତରେ ମୁଁ ବରାବର ତାଙ୍କ ସାଙ୍ଗେ ସାଙ୍ଗେ ରହିଥିଲି । ସେ ଜୟପ୍ରକାଶ ନାରାୟଣଙ୍କ ବିଷୟରେ କିଛି କହିନାହାନ୍ତି । ଲୋକଙ୍କ ପକ୍ଷରେ ଏ ବିଷୟଟି ପ୍ରଧାନମନ୍ତ୍ରୀଙ୍କ ନାମରେ ବୋଲିଦେବା ଅତ୍ୟନ୍ତ ଅନ୍ୟାୟ । ଓଡ଼ିଶାର ଏକ ସାଧାରଣ ସଭାରେ ପ୍ରଧାନମନ୍ତ୍ରୀ ଗୁଜରାଟରେ ହୋଇଥିବା ହିଂସାକାର୍ଯ୍ୟ ସବୁର ଉଲ୍ଲେଖ କରି କହିଥିଲେ ଯେ, ଖାଦ୍ୟପଦାର୍ଥର ଅଭାବ ଯୋଗୁଁ ଏଭଳି ଆନ୍ଦୋଳନ ହେଉଛି; କିନ୍ତୁ ପ୍ରକୃତ ଦୁଃଖଭୋଗ କରୁଥିବା ଲୋକ ଆନ୍ଦୋଳନ କରୁନାହାନ୍ତି । କେମିତି କେବେ ଆସେମ୍ବ୍ଲି ମେମ୍ବରଙ୍କୁ ଇସ୍ତଫା ଦେବାକୁ ବାଧ୍ୟ କରାଯାଇଥିଲା, ତାହା ବର୍ଣ୍ଣନା କରି କହିଲେ—ସର୍ବୋଦୟ କର୍ମୀମାନେ ହିଂସାକୁ ସମର୍ଥନ ନ କରୁଥିଲେ ସୁଦ୍ଧା ସେମାନେ ଆନ୍ଦୋଳନକୁ ଯେଉଁ ସମର୍ଥନ ଦେଉଛନ୍ତି, ତା' ଫଳରେ ହିଂସା କାର୍ଯ୍ୟକୁ ଉତ୍ସାହ ମିଳୁଛି । ଏହା ବ୍ୟତୀତ ଜୟପ୍ରକାଶଙ୍କ ସମ୍ବନ୍ଧରେ ଆଉ କିଛି କହିନାହାନ୍ତି ।" ବିନୋବାଜୀ ନନ୍ଦିନୀଙ୍କ କଥାରେ କେତେଦୂର ପ୍ରଭାବିତ ହେଲେ ବା ସନ୍ତୋଷ ଲାଭ କଲେ, ତାଙ୍କୁ ହିଁ ଜଣାଥିବ; ମାତ୍ର ଯେଉଁ ଓଡ଼ିଶାର ଲୋକେ ସଭାରେ ଉପସ୍ଥିତ ଥିଲେ, ସେମାନେ ଏଭଳି ମିଥ୍ୟା କଥା ମୁଖ୍ୟମନ୍ତ୍ରୀ କହିପାରନ୍ତି ଭାବି ବିସ୍ମୟ ପ୍ରକାଶ କଲେ ।

ଇନ୍ଦିରା ଗାନ୍ଧୀଙ୍କର ନନ୍ଦିନୀ ଶତପଥୀ ଥିଲେ ଅତି ବିଶ୍ୱସ୍ତ ବ୍ୟକ୍ତି । ସେଥିଲାଗି ତାଙ୍କର କୌଣସି ଯୋଗ୍ୟତା, ଲୋକସମର୍ଥନ ନ ଥିଲେ ସୁଦ୍ଧା ତାଙ୍କୁ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ରୂପେ ମନୋନୀତ କଲେ । ତାଙ୍କର ମୁଖ୍ୟମନ୍ତ୍ରୀତ୍ୱବେଳେ ଓଡ଼ିଶାର ଅବସ୍ଥା କଣ ହେଲା ଏବଂ ସେ କିଭଳି ଦୁର୍ନୀତି ଓ ଅନ୍ୟ ଅସାମାଜିକ କାର୍ଯ୍ୟରେ ଲିପ୍ତ ରହିଥିଲେ, ତାହା ଓଡ଼ିଶାରେ କ୍ରମେ ପ୍ରକାଶ ପାଉଛି । ଗୋଟାଏ ପ୍ରଚାର ମଧ୍ୟ ଚାଲିଛି ଯେ ନନ୍ଦିନୀ ଶତପଥୀ ଇନ୍ଦିରାଙ୍କର ଅଗଣତାନ୍ତ୍ରିକ କାର୍ଯ୍ୟକୁ ପସନ୍ଦ ନ କରିବାରୁ ଏବଂ ଇନ୍ଦିରାଙ୍କ ପୁତ୍ର ସଞ୍ଜୟ ଗାନ୍ଧୀଙ୍କି ସମର୍ଥନ ନଦେବାରୁ ତାଙ୍କୁ ମୁଖ୍ୟମନ୍ତ୍ରୀପଦରୁ ବାହାର କରି ଦିଆଗଲା । ଏହା ଏଭଳି ଏକ ମିଥ୍ୟା ଯେ ଏଥିରେ ଦେଶର କେତେକ ଦାୟିତ୍ୱସମ୍ପନ୍ନ ବ୍ୟକ୍ତି ଓ ସମ୍ବାଦପତ୍ର ମଧ୍ୟ ବିଶ୍ୱାସ କରିଯାଇଛନ୍ତି ସତ୍ୟତା ଅଛି ବୋଲି । ମାତ୍ର ଅନେକେ ପାଶୋରିଯାଆନ୍ତି ଯେ ନନ୍ଦିନୀ ଏକ ବିଶ୍ୱସ୍ତ ବୋଲିକରା ହିସାବରେ ବରାବର କାର୍ଯ୍ୟ କରିଆସିଛନ୍ତି । ସଞ୍ଜୟ ଗାନ୍ଧୀଙ୍କର ବିରୋଧ କରିବା ଦୂରେ ଥାଉ, ସମଗ୍ର ଭାରତରେ ୨୦ ଦଫା କାର୍ଯ୍ୟକ୍ରମ ସରକାରୀ ସ୍ତରରେ ଗୃହୀତ ହୋଇଥିବାବେଳେ ଓଡ଼ିଶାରେ ସର୍ବପ୍ରଥମେ ସଞ୍ଜୟଙ୍କ ୫ ଦଫାକୁ ମିଶାଇ ୨୫ ଦଫା କାର୍ଯ୍ୟକ୍ରମ ବୋଲି ନନ୍ଦିନୀଙ୍କ ଅମଳରେ ସରକାରୀ ଭାବରେ ଘୋଷଣା କରାଯାଇଥିଲା ଏବଂ ସଞ୍ଜୟ ଗାନ୍ଧୀଙ୍କ ଓଡ଼ିଶା ଆଗମନବେଳେ, ନନ୍ଦିନୀ ମୁଖ୍ୟମନ୍ତ୍ରୀ ଥାଇ, ଏକ ନୂତନ ପଲ୍ଲୀ ନିର୍ମାଣ କରାଯାଇ ସଞ୍ଜୟ ଗାନ୍ଧୀଙ୍କି ନିମନ୍ତ୍ରଣ କରାଯାଇଥିଲା ତାହା ଉଦ୍‌ଘାଟନ କରିବା

ନିମନ୍ତ୍ରେ; ମାତ୍ର ସଞ୍ଜୀବୟ କମ୍ୟୁନିଷ୍ଟବିରୋଧୀ ହୋଇଥିବାରୁ ଏବଂ ନନ୍ଦିନୀ ଶତପଥୀ କମ୍ୟୁନିଷ୍ଟଙ୍କ କଥାରେ ଚାଳିତ ବୋଲି ତାଙ୍କର ପୂର୍ଣ୍ଣବିଶ୍ୱାସ ଥିବାରୁ, ସେ ନନ୍ଦିନୀ ମୁଖ୍ୟମନ୍ତ୍ରୀ ଥିବା ପର୍ଯ୍ୟନ୍ତ ଓଡ଼ିଶା ଆସିବାକୁ ଅସ୍ୱୀକାର କରିଦେଲେ ଏବଂ ନନ୍ଦିନୀଙ୍କ ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କଲେ । ନିଜର ଅପକର୍ମ, ଦୁର୍ନୀତି ଓ ନିଜର ବ୍ୟକ୍ତିତ୍ୱ ପ୍ରତିଷ୍ଠାର ଉଦ୍ୟମ କରୁଥିବା ହେତୁ ନନ୍ଦିନୀ ଶତପଥୀଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ବାହାରକରିଦିଆଗଲା । ପରବର୍ତ୍ତୀ କାଳରେ ଜନତା ସରକାରବେଳେ ନନ୍ଦିନୀଙ୍କ କାର୍ଯ୍ୟକାଳର ଯେଉଁ ସବୁ ତଦନ୍ତ ହୋଇଛି, ସେଥିରୁ ବୁଝାପଡ଼ୁଛି ଯେ ନନ୍ଦିନୀଙ୍କ ବହିଷ୍କାର ଆଉରି ବିଳମ୍ବ ହୋଇଥିଲେ ଓଡ଼ିଶାର ଦୁର୍ଗତିର ସୀମା ରହିନଥାନ୍ତା ।

ସେ ଯାହାହେଉ, ଏକଥା ନିଶ୍ଚିତ ଯେ, ମିଥ୍ୟା ଗୁଣରେ ଇନ୍ଦିରା ଓ ନନ୍ଦିନୀଙ୍କ ଭିତରେ କିଏ କାହାଠୁ ବେଶି ଏହା ମାପି ବାହାର କରିବା କଷ୍ଟ ଏବଂ ଏ ବିଦ୍ୟା କିଏ କାହାଠୁଁ ବେଶି କମ୍ ଶିକ୍ଷା କରିଛି ତାହା ପ୍ରମାଣିତ ହେଲେ ଗୁରୁ-ଶିଷ୍ୟ ସମ୍ପର୍କ ସ୍ଥିରୀକୃତ ହୋଇପାରିବ—ମାତ୍ର ଏ ବିଷୟରେ ଦୁହିଁଙ୍କର ତୁଳନା ହୋଇ ନ ପାରେ । ଏଲାହାବାଦ ହାଇକୋର୍ଟ ରାୟରେ ଇନ୍ଦିରା ଗାନ୍ଧୀ ଖାଲି ସଭ୍ୟପଦଚ୍ୟୁତ ହେଲେ ନାହିଁ, ନିତାନ୍ତ ମିଥ୍ୟାର ଅବତାରଣା କରିଛନ୍ତି ବୋଲି ବିଚାରପତି କହିଥିଲେ ।

ଏଣେ ଇନ୍ଦିରା-ଜୟପ୍ରକାଶ ବିବାଦରେ ଭାରତର ରାଜନୀତିକ ଆକାଶରେ ତୁମୁଳ ଝଡ଼ ସୃଷ୍ଟି ହୋଇଗଲାଣି । ଇନ୍ଦିରାଙ୍କ ସମର୍ଥକ କଂଗ୍ରେସ (+କମ୍ୟୁନିଷ୍ଟ) ପକ୍ଷର ପାର୍ଲିମେଣ୍ଟ ମେମ୍ବରମାନେ ଅତି କୁତ୍ସିତ ଓ ଅଭଦ୍ର ଗାଳିବର୍ଷଣ କରୁଥାଆନ୍ତି ଜୟପ୍ରକାଶଙ୍କ ଉପରେ । ଏହା ସବୁ ଇନ୍ଦିରା ଗାନ୍ଧୀଙ୍କ ପ୍ରରୋଚନାରେ ହେଉଥାଏ । କେ. ପି. ଉନିକୃଷ୍ଣ ପ୍ରମୁଖ ୯ ଜଣ କଂଗ୍ରେସ ଏମ୍. ପି. ଏକ ବିବୃତି ଏପ୍ରିଲ ୫ ତାରିଖରେ ଦେଇ କହିଲେ—"ଜୟପ୍ରକାଶଙ୍କର ଅଯଥା ରାଜନୀତିରେ ପ୍ରବେଶ ଏବଂ ଇନ୍ଦିରା ଗାନ୍ଧୀଙ୍କୁ ସମାଲୋଚନା କରି ତାଙ୍କୁ ଲୋକଙ୍କ ଆଗରେ ନ୍ୟୂନ ପ୍ରମାଣ କରିବାର ଉଦ୍ୟମ ଅତ୍ୟନ୍ତ ନିନ୍ଦନୀୟ । ସର୍ବୋଦୟମୁଖା ପିନ୍ଧି ସେ ଯାବତୀୟ ପ୍ରତିକ୍ରିୟାପନ୍ଥୀ ଜାତୀୟ ଓ ଆନ୍ତର୍ଜାତୀୟ ଆନ୍ଦୋଳନ ଓ ବ୍ୟକ୍ତିଙ୍କୁ ସମର୍ଥନ କରୁଛନ୍ତି । ଦୁର୍ନୀତି ଦୂର କରିବା ନାମରେ ସେ ନିର୍ଲଜ୍ଜ ଭାବରେ ହିଂସାମୂଳକ ପ୍ରତିକ୍ରିୟା-ପନ୍ଥୀ ଆନ୍ଦୋଳନପକ୍ଷ ସମର୍ଥନ କରୁଛନ୍ତି ଏବଂ ଦେଶରେ ବିଶୃଙ୍ଖଳା ଓ ହିଂସାମୂଳକ ବାୟୁମଣ୍ଡଳ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଫାସିଷ୍ଟ ଶକ୍ତିଙ୍କୁ ତାଙ୍କର ଆଶୀର୍ବାଦ ଜଣାଉଛନ୍ତି । ସେ ଏଥିରୁ ବିରତ ହୁଅନ୍ତୁ ।"

ଭବିଷ୍ୟତରେ କେମିତି କଂଗ୍ରେସ, କମ୍ୟୁନିଷ୍ଟ ଓ ବିନୋବା-ସମର୍ଥକ କେତେକ ସର୍ବୋଦୟ କର୍ମୀଙ୍କର ମେଣ୍ଟ ହୋଇ ଜୟପ୍ରକାଶଙ୍କ ଆନ୍ଦୋଳନକୁ ଏକ ଫାସିଷ୍ଟ ଓ ଦକ୍ଷିଣ-ପନ୍ଥୀ ପ୍ରତିକ୍ରିୟାବାଦୀଙ୍କର ଆନ୍ଦୋଳନ ବୋଲି ଚିତ୍ରଣ କରାଗଲା ଏବଂ ମିଳିତଭାବରେ ସେମାନେ ଏଥିର ବିରୋଧ କଲେ, ତାହାର ସୂଚନା ଏହି ଉପରିଲିଖିତ ବିବୃତିରୁ ହିଁ ମିଳୁଥିଲା ।

ଲେଖକ ନିଜେ ଘଟଣାସ୍ଥଳୀରେ ଉପସ୍ଥିତ ଥାଇ ସୁଦ୍ଧା ଏବଂ ଇନ୍ଦିରା ଗାନ୍ଧୀଙ୍କର ମନୋଭାବ ବ୍ୟକ୍ତିଗତ ଭାବରେ ଜାଣି ସୁଦ୍ଧା ଏ ସମ୍ପର୍କରେ ପୂର୍ଣ୍ଣ ନୀରବତା ଅବଲମ୍ବନ କରିଥିଲି । ମାତ୍ର ନନ୍ଦିନୀଙ୍କର ଏଭଳି ମିଥ୍ୟା ବିବୃତି ଦେଖି ମିଥ୍ୟା ଆବରଣ ଖୋଲିଦେବାର ଆବଶ୍ୟକତା ଅନୁଭବ କଲି ଏବଂ ନିମ୍ନପ୍ରକାରର ଏକ ବିବୃତି ଏପ୍ରିଲ ୧୦ ତାରିଖରେ ଭୁବନେଶ୍ୱରରୁ ଦେଇଥିଲି

"ସାଧାରଣ ଶିଷ୍ଟ ରାଜନୀତିକ ଜୀବନଦୃଷ୍ଟିରୁ ପ୍ରଧାନମନ୍ତ୍ରୀଙ୍କର ଓ ଜୟପ୍ରକାଶ ନାରାୟଣଙ୍କର ବିବୃତି ଯୋଗୁ ଯେଉଁ ବାଦାନୁବାଦ ସୃଷ୍ଟି ହୋଇଛି, ତାହା ଆଉ ଆଗକୁ ବଢ଼େଇବାକୁ ଦେବା ଠିକ୍ ନୁହେଁ । ଏହା ଅତ୍ୟନ୍ତ କୁତ୍ସିତ ଓ ରୁଚିହୀନ ସ୍ତରକୁ ଚାଲିଗଲାଣି ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ନାଗପୁରଠାରେ ଏକ ବିବୃତିରେ କହିଛନ୍ତି ଯେ, ଓଡ଼ିଶା ଗସ୍ତ-କାଳରେ ପ୍ରଧାନମନ୍ତ୍ରୀ ଜୟପ୍ରକାଶ ନାରାୟଣଙ୍କ ବିରୁଦ୍ଧରେ କିଛି କହିନାହାନ୍ତି । ଏହା ଯଦି ସତ୍ୟ ହୋଇଥାଆନ୍ତା, ତେବେ ଉତ୍ତେଜନା ସୃଷ୍ଟି ହୋଇଯାଇଥାଆନ୍ତା । ଯେଉଁ ସଭାରେ (ଭୁବନେଶ୍ୱରରେ) ଏଭଳି ଦୁର୍ଭାଗ୍ୟଜନକ ମନ୍ତବ୍ୟ କରାଗଲା ସେଠାରେ ମୁଁ ଉପସ୍ଥିତ ଥିଲି । ଅବଶ୍ୟ ପ୍ରଧାନମନ୍ତ୍ରୀ ଜୟପ୍ରକାଶଙ୍କ ନାମ ଧରି ନାହାନ୍ତି; କିନ୍ତୁ ମୋ ସହ ଆଉ ଯେତେ ଉକ୍ତ ସଭାରେ ଉପସ୍ଥିତ ଥିଲେ କାହାରି ମନରେ ଟିକେହେଲେ ସନ୍ଦେହ ରହିଲା ନାହିଁ ଯେ, ଜୟପ୍ରକାଶ ନାରାୟଣଙ୍କୁ ଲକ୍ଷ୍ୟ କରି ଏଭଳି କୁହାଯାଇଛି । ସମ୍ବାଦପତ୍ରମାନଙ୍କରେ ମଧ୍ୟ ଅନୁରୂପ ବିବରଣୀ ପ୍ରକାଶିତ ହୋଇଛି ।

ସଭାରେ ଉପସ୍ଥିତ ଥିବା ସର୍ବୋଦୟ ନେତ୍ରୀ ଶ୍ରୀମତୀ ରମା ଦେବୀଙ୍କୁ ଲକ୍ଷ୍ୟ କରି ସେ ଏକଥା କହିଥିଲେ ବୋଲି କଦାପି କୁହାଯାଇନପାରେ ।

ଶ୍ରୀମତୀ ଶତପଥୀ କହନ୍ତି ଯେ, ଇନ୍ଦିରା ଗାନ୍ଧୀ ଜୟପ୍ରକାଶ ନାରାୟଣଙ୍କୁ ଲକ୍ଷ୍ୟ କରି ଏସବୁ କଥା କହିନାହାନ୍ତି—ଏହି କଥାଟି, ଅର୍ଥାତ୍ ଜୟପ୍ରକାଶଙ୍କୁ ଉଦ୍ଦିଷ୍ଟ ନୁହେଁ—ପ୍ରଧାନମନ୍ତ୍ରୀ ନିଜେ ଏକ ବିବୃତିରେ ଜଣାଇବାକୁ ମୁଁ ଅନୁରୋଧ କରୁଛି ।

ଏଭଳି ଦୁଃଖଦାୟକ ଘଟଣାର ଅବସାନ ଘଟୁ—ଏଭଳି ବାଦାନୁବାଦ କିଛି ରୁଚି-ସଙ୍ଗତ ଭାବ ରଖିପାରୁନାହିଁ ।"

ଇନ୍ଦିରା ଗାନ୍ଧୀ ନିଜେ ସତ୍ୟ କହିଲେ କିମ୍ବା ଭୁଲ ସ୍ୱୀକାର କଲେ ବାଦାନୁବାଦ ସାଙ୍ଗେ ସାଙ୍ଗେ ବନ୍ଦ ହୋଇଯାଆନ୍ତା; ମାତ୍ର ସତ୍ୟ କହିବାକୁ ହେଲେ ତାଙ୍କୁ ସ୍ୱୀକାର କରିବାକୁ ପଡ଼ିବ ଯେ ସେ ଜୟପ୍ରକାଶଙ୍କୁ ଲକ୍ଷ୍ୟ କରି କହିଥିଲେ ଏବଂ ଏଣେ ସେ କଥା ସ୍ୱୀକାର କଲେ ଦେଶରେ ଲୋକେ ଏ ବିଷୟଟିକୁ ଯେଭଳି ଗୁରୁତ୍ୱ ଦେଇଛନ୍ତି, ସେଥିରେ ତାଙ୍କୁ ଭୁଲ ସ୍ୱୀକାର କରିବାକୁ ପଡ଼ିଆନ୍ତା, ଯାହା ପ୍ରଧାନମନ୍ତ୍ରୀଙ୍କ ପକ୍ଷରେ ବଡ଼ ଅସୁବିଧା ସୃଷ୍ଟି

[ କରିଥାଆନ୍ତି । ତେଣୁ ମିଥ୍ୟା କଥା କହିବାକୁ ପ୍ରସ୍ତୁତ ଥିବା ନନ୍ଦିନୀ ଶତପଥୀ ହିଁ ଏହି କାର୍ଯ୍ୟ ଲାଗି ଉପଯୁକ୍ତ ବ୍ୟକ୍ତି ଓ ତାଙ୍କୁ ବ୍ୟବହାର କରାଗଲା ।

ଲେଖକର ଏଭଳି ବିବୃତିରେ ଇନ୍ଦିରା ଓ ନନ୍ଦିନୀ ଦୁହେଁ ଅଡ଼ୁଆରେ ପଡ଼ିଲେ । ଏକ ପତ୍ର ଲେଖି ଘଟଣାଟି ସତ୍ୟ ବୋଲି ଲେଖକ ଜୟପ୍ରକାଶଙ୍କୁ ଜଣାଇଦେଲି । ସେ ନାନାକ୍ଷେତ୍ରରେ ସେ ପତ୍ରଟି ଦେଖାଇଛନ୍ତି ସତ୍ୟତା ପ୍ରମାଣ କରିବା ନିମନ୍ତେ ।

ଯାହାହେଉ, ଭବିଷ୍ୟତ ଆନ୍ଦୋଳନର ମଇଦାନ ତିଆରି କାର୍ଯ୍ୟ ଓଡ଼ିଶାରୁ ହିଁ ଆରମ୍ଭ ହୋଇଥିଲା ।

# ସମ୍ପୂର୍ଣ୍ଣ କ୍ରାନ୍ତିର ଆହ୍ୱାନ

ଯେଉଁଭଳି ଗୋଟିକ ପରେ ଗୋଟିଏ ଘଟଣାର ପ୍ରବାହ ଚାଲିଲା, ସେଥିରୁ ଏ କଥା ସହଜରେ ଅନୁମେୟ ଯେ ଶ୍ରୀମତୀ ଗାନ୍ଧୀଙ୍କ ମନରେ ଭୀତିର ସଞ୍ଚାର ହେବାରୁ ସେ ବହୁତ-ଗୁଡ଼ିଏ ଭୁଲ ପନ୍ଥା ଗ୍ରହଣ କରିବାକୁ ଲାଗିଲେ । ଏକ ଗଣତାନ୍ତ୍ରିକ ଶାନ୍ତିପୂର୍ଣ୍ଣ ଆନ୍ଦୋଳନରେ ସର୍ବଦା ବିଚାର ଆଲୋଚନା ଏବଂ ସମାଧାନର ବାଟ ଉନ୍ମୁକ୍ତ ଥାଏ । ମାତ୍ର ଇନ୍ଦିରା ଗାନ୍ଧୀ ସେ ବାଟ ଛାଡ଼ି ଅନ୍ୟପ୍ରକାରେ ଆନ୍ଦୋଳନକୁ ଆଘାତ କରିବାକୁ ଉଦ୍ୟମ କଲେ । ସମାଧାନର ଦ୍ୱାର ପୂର୍ଣ୍ଣରୂପେ ବନ୍ଦ କରିଦେଇ ନାନା ଅପବାଦ ଆନ୍ଦୋଳନ ମୁଣ୍ଡରେ ବୋଳିବାକୁ ଚେଷ୍ଟା କଲେ । ଲୋକଙ୍କର ଯାବତୀୟ ଅସୁବିଧା ଦିନକୁଦିନ ବୃଦ୍ଧି ପାଇଲା ସିନା କମିଲା ନାହିଁ । କୌଣସି ଗୋଟିଏ ହେଲେ ଦାବିର ଶୁଣାଣି ବା ପ୍ରତିକାର ନ ହୋଇ ଦମନ-ଅସ୍ତ୍ର ପ୍ରୟୋଗ କରାଗଲା । ଏହା ସ୍ୱଭାବତଃ ଲୋକଙ୍କ ଭିତରେ କ୍ରୋଧ ଜାତ କରାଇଲା ଏବଂ ଲୋକଙ୍କ ଦୁଃଖ ଦୂର ଲାଗି ଯେଉଁମାନେ ଆଗୁଆ ହୋଇ ଦମନାସ୍ତ୍ରର ସମ୍ମୁଖୀନ ହେବା ନିମନ୍ତେ ବାହାରିଆସିଲେ, ସେମାନଙ୍କ ପ୍ରତି ଲୋକଙ୍କର ସହାନୁଭୂତି ଓ ସମର୍ଥନ ବୃଦ୍ଧି ପାଇଲା । ଏଭଳି ସମର୍ଥନ କେବଳ କୌଣସି ନିର୍ଦ୍ଦିଷ୍ଟ ଶ୍ରେଣୀ ଭିତରେ ସୀମାବଦ୍ଧ ନ ରହି ବିଶ୍ୱ-ବିଦ୍ୟାଳୟ, କଲେଜ, ସ୍କୁଲ, ଟ୍ରେଡ଼ ଇଉନିୟନ, ଶିଳ୍ପ, ଶିକ୍ଷାବ୍ୟବସ୍ଥା, ଗ୍ରାମର ବେକାର ଯୁବକ ଓ କୃଷକଶ୍ରେଣୀ ଭିତରେ ପ୍ରସାର ହେବାକୁ ଲାଗିଲା । ନିଜର ଅପ୍ରତିଦ୍ୱନ୍ଦ୍ୱୀ କ୍ଷମତା ଓ ଅଜସ୍ର ଧନବଳ ହେତୁ କଂଗ୍ରେସ ପକ୍ଷ ଏହା ବୁଝିପାରିଲେ ନାହିଁ ଏବଂ ଇନ୍ଦିରା ଗାନ୍ଧୀ ଯେତେ ବିଭିନ୍ନ ସ୍ଥାନରେ ଲକ୍ଷ ଲକ୍ଷ ଲୋକଙ୍କର ସଭା କରୁଥିଲେ ସୁଦ୍ଧା ଲୋକଙ୍କଠାରୁ ଅଲଗା ହୋଇ ରହିଗଲେ—ଲୋକହୃଦୟର ଆବାଜ ସେମାନଙ୍କ ପାଖରେ ପହଞ୍ଚିଲା ନାହିଁ ।

ଗୁଜରାଟ ଆନ୍ଦୋଳନର ସଫଳତା ପରେ ପୁଣି ବିହାରରେ ମୁଣ୍ଡ ଟେକିଲେ ଆଉ କେନ୍ଦ୍ର କର୍ତ୍ତୃତ୍ୱକୁ କେହି ମାନିବେ ନାହିଁ ଏବଂ ବିହାରରେ ଏହା ସଫଳ ହେଲେ ଭାରତର ଅନ୍ୟ ପ୍ରଦେଶରେ ମଧ୍ୟ ବ୍ୟାପିଯିବାର ଆଶଙ୍କା ରହିଲା । ତେଣୁ କେନ୍ଦ୍ର ସରକାର ବିହାର-ସମସ୍ୟାରେ ଅଧିକ ଦୃଢ଼ପଣ ଦେଖାଇଲେ—ଏହା ବାସ୍ତବିକ ଦୃଢ଼ତା ନୁହେଁ, ହଠକାରିତା ଥିଲା । ପୂର୍ବରୁ ଯେଉଁସବୁ କାଣ୍ଡ, ଗୁଳିମାଡ଼, ଲାଠି, ଦଙ୍ଗାହାଙ୍ଗାମା ଏବଂ ଲୋକଙ୍କ ଉପରେ ଚଢ଼ାଉ ଚାଲିଲା, ତହିଁରେ ସାରା ବିହାର ଉତ୍ତେଜିତ ହୋଇ ରହିଥିଲା । ଛାତ୍ର ଯୁବକ ସମ୍ପ୍ରଦାୟ ଏଥିରେ ମୁଖ୍ୟ ଭାଗ ନେଇ ବାହାରିପଡ଼ିଲେ । ଠିକଣାବେଳ ଦେଖି ଜୟପ୍ରକାଶ ନାରାୟଣ 'ସମ୍ପୂର୍ଣ୍ଣ କ୍ରାନ୍ତି'ର ଡାକରା ଦେଲେ :

"ଏକ ବିପ୍ଳବୀଭାବରେ ମୋ ମୁଣ୍ଡରେ ଯାହା ଖେଳୁଛି, ମୁଁ ତୁମକୁ କହିବାକୁ ଯାଉଛି । ଏହାକୁ କାର୍ଯ୍ୟକାରୀ କରିବା ସହଜ ନୁହେଁ । ତ୍ୟାଗ କରିବାକୁ ପଡ଼ିବ, କଷ୍ଟ ଭୋଗ କରିବାକୁ ପଡ଼ିବ, ଲଠି ଓ ଗୁଳିମାଡ଼ ସହିବାକୁ ପଡ଼ିବ—ଜେଲରେ ଭର୍ତ୍ତିହେବ ଏବଂ ସମ୍ପତ୍ତିବାଡ଼ ବାଜ୍ୟାପ୍ତ ହୋଇଯିବ ।

ଏହା ଏକ ବିପ୍ଳବ—ସମ୍ପୂର୍ଣ୍ଣ କ୍ରାନ୍ତି । ଏ ଆନ୍ଦୋଳନ ଖାଲି ବିଧାନସଭାଭଙ୍ଗରେ ବନ୍ଦ ହୋଇଯିବ ନାହିଁ । ଆମକୁ ବହୁଦୂର—ଆହୁରି ଦୂରକୁ ଯାତ୍ରା କରିବାକୁ ପଡ଼ିବ । ଜବାହରଲାଲ ନେହେରୁଙ୍କ ଭାଷାରେ ଯେଉଁ ସ୍ୱାଧୀନତା ଲାଗି ଦେଶର ସହସ୍ର ସହସ୍ର ଯୁବକ-ଯୁବତୀ ତ୍ୟାଗ କରିଛନ୍ତି, ସର୍ଦ୍ଦାର ଭଗତ୍ ସିଂ ଓ ତାଙ୍କ ସାଥୀମାନେ, ବଙ୍ଗଳା ଓ ମହାରାଷ୍ଟ୍ର ଏବଂ ସାରା ଦେଶର ବହୁଲୋକଙ୍କୁ ଗୁଳିଦ୍ୱାରା ଉଡ଼ାଇଦିଆଯାଇଛି କିମ୍ବା ଫାଶୀଖୁଣ୍ଟରେ ଝୁଲାଇଦିଆହୋଇଛି, ସେହି ସ୍ୱାଧୀନତା ପାଇବାକୁ ହେଲେ ଲୋକଙ୍କର ଯାତ୍ରାପଥ ଦୀର୍ଘ—ବହୁ ପଥ ଅତିକ୍ରମ କରିବାକୁ ପଡ଼ିବ ।

ଆମ ଦେଶର ଲକ୍ଷ ଲକ୍ଷ ଲୋକ ସ୍ୱାଧୀନତା ପାଇବାଲାଗି ବାରମ୍ବାର ଜେଲବରଣ କରିଥିଲେ; କିନ୍ତୁ ୨୭ ବର୍ଷର ସ୍ୱାଧୀନତା ପରେ ଲୋକେ ଆଜି ଦହଗଞ୍ଜ ଭୋଗୁଛନ୍ତି । କ୍ଷୁଧା, ଜିନିଷ ଅଧିକ ମୂଲ୍ୟବୃଦ୍ଧି ଓ ଦୁର୍ନୀତି ଚାରିଆଡ଼େ ପୂରିରହିଛି । ନାନାପ୍ରକାର ଅନ୍ୟାୟର ତଳେ ଲୋକଙ୍କୁ ମାଡ଼-ଚକଟିଦିଆଯାଉଛି ।

ଶିକ୍ଷାନୁଷ୍ଠାନଗୁଡ଼ିକରେ ଭ୍ରଷ୍ଟାଚାର ଭରି । ସହସ୍ର ସହସ୍ର ଯୁବକଙ୍କ ଆଗରେ ଭବିଷ୍ୟତ ଅନ୍ଧକାରମୟ । ବେକାରୀସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ଦରିଦ୍ର କ୍ରମେ କମ୍ରୁ ଆହୁରି ଊଣା ପାଉଛି । ଜମି ସୀମା ଆଇନ୍ ପାସ୍ ହେଉଛି; ଏଣେ କିନ୍ତୁ ଭୂମିହୀନଙ୍କ ସଂଖ୍ୟା ବୃଦ୍ଧି ହେବାରେ ଲାଗିଛି । ଶ୍ରେଷ୍ଠ କୃଷକଠାରୁ ତାର ଜମି ଛଡ଼ାଇନିଆଯାଉଛି ।

ଏହା ହେଉଛି ବର୍ତ୍ତମାନର ପରିସ୍ଥିତି । ଜୟପ୍ରକାଶ ନାରାୟଣ ନୂଆ କିଛି କାର୍ଯ୍ୟକ୍ରମ ଦିଅନ୍ତୁ, ଏହା ଲୋକେ ଚାହାଁନ୍ତି । ମୁଁ କିନ୍ତୁ ତୁମକୁ କହିବାକୁ ଚାହେଁ, ମୁଁ ଛାତ୍ର, ଯୁବକ ଓ ଜନସଂଘର୍ଷ ସମିତି ସମସ୍ତଙ୍କର ପରାମର୍ଶ ନେବ । ମାତ୍ର ଶେଷ ନିଷ୍ପତ୍ତି ମୋର ଏବଂ ମୁଁ ଯାହା କହିବ ତୁମକୁ ପାଳନ କରିବାକୁ ପଡ଼ିବ । ତେବେ ଯାଇ ମୋ ନେତୃତ୍ୱର କିଛି ଅର୍ଥ ରହିବ ଏବଂ ଏହା ହୋଇପାରିଲେ ତୁମେ ସଫଳ ହେବ ।"

ଯେଉଁ ଜୟପ୍ରକାଶ ଆଜି ସୁଦ୍ଧା ଛାତ୍ରଯୁବକଙ୍କ ଆନ୍ଦୋଳନକୁ ସମର୍ଥନ ଓ ପରାମର୍ଶ ଦେଉଛନ୍ତି ବୋଲି କହିଥିଲେ, ୧୯୭୫ ଜୁନ୍ ୫ ତାରିଖରୁ ସେହି ଆନ୍ଦୋଳନର ନେତୃତ୍ୱ ସେ ନିଜ ହାତକୁ ନେଲେ ।

"ଯୋଜେ ଲୋକ ଅଛନ୍ତି—ତାଙ୍କୁ କି ନାମରେ ଡାକିବି ଭାବିପାରୁନାହିଁ—ଚକ୍କାର କରୁଛନ୍ତି ଏବଂ ଗତ କେତେ ବର୍ଷ ହେଲା ସେମାନେ ବରାବର ମୋ ଉପରେ ଗାଳିବର୍ଷଣ କରୁଛନ୍ତି । ସେମାନେ କହୁଛନ୍ତି ମୁଁ ଆମେରିକାର ଏଜେଣ୍ଟ । ଏ ନାଙ୍କ୍ ଜ ଲୋକେ ପୁଣି ଧ୍ୱନି ଦେଉଛନ୍ତି ଯେ ଜୟପ୍ରକାଶ ପରାସ୍ତ ହୋଇଗଲା ବୋଲି ନିକସନ୍ ପାଖକୁ ତାରକରିଦିଅ ।

ମୁଁ ଆମେରିକାରେ ପାଇଖାନା ସଫା କରି ଓ ଅନ୍ୟ ନାନାପ୍ରକାର ଶାରୀରିକ ଶ୍ରମ କରି ପେଟ ପୋଷୁଥିଲି ଏବଂ ପାଠ ପଢ଼ୁଥିଲି । ଏମାନେ ତାହା ଜାଣନ୍ତି । ମୁଁ ସେଠାରେ ମାର୍କସିଷ୍ଟ ପାଲଟିଥିଲି; କିନ୍ତୁ ଷ୍ଟାଲିନ୍‌ବାଦୀ ହୋଇ ନ ଥିଲି । ମୁଁ କମ୍ୟୁନିଷ୍ଟ ହୋଇ ଭାରତକୁ ଲେଉଟିଥିଲି; ମାତ୍ର କମ୍ୟୁନିଷ୍ଟ ପାର୍ଟିରେ ଯୋଗ ନ ଦେଇ କଂଗ୍ରେସରେ ଯୋଗଦେଲି ।

ଏହିମାନେ କହନ୍ତି ଗାନ୍ଧୀ ହେଉଛନ୍ତି ଧନୀଙ୍କ ଦଲାଲ । ପୁଞ୍ଜିପତି ବା ବୁର୍ଜୋୟାଙ୍କ ହାତରେ ନେତୃତ୍ୱ ଥିଲେ ସୁଦ୍ଧା, ପରାଧୀନ ଦେଶରେ କମ୍ୟୁନିଷ୍ଟ କେବେହେଲେ ସ୍ୱାଧୀନତା ସଂଗ୍ରାମରୁ ବିଚ୍ଛିନ୍ନ ହୋଇ ରହିବା ଉଚିତ ନୁହେଁ ବୋଲି ମୁଁ ଲେନିନ୍‌ଙ୍କଠାରୁ ଶିକ୍ଷା କରିଛି ।

କିନ୍ତୁ ଏମାନେ ଲେନିନ୍‌ଙ୍କୁ ଭୁଲି ଯାଇଛନ୍ତି । ଏମାନେ ସ୍ୱାଧୀନତା ସଂଗ୍ରାମରେ ବିଶ୍ୱାସଘାତକତା କରିଛନ୍ତି । ତାଙ୍କେ ସରକାରୀ ଗୁପ୍ତଚର କାର୍ଯ୍ୟ କରୁଥିଲେ । ଗାନ୍ଧିଜୀ, ନେହେରୁ ସମସ୍ତେ ଜେଲ ଭିତରେ ରହିଲେ । ଆମେ ସବୁ ଜେଲରେ ଥିଲୁ । ମାତ୍ର ଏମାନେ ବିଶ୍ୱାସଘାତକ ରୂପେ କାର୍ଯ୍ୟ କରୁଥିଲେ । ଏହିମାନେ ପୁଣି ଆଜି ଧ୍ୱନି ଉଠାଉଛନ୍ତି ଜୟପ୍ରକାଶ ହେଉଛି ପୁଞ୍ଜିପତିଙ୍କ ଦଲାଲ; ଆମେରିକାର ଏଜେଣ୍ଟ । କେଉଁ ଜଗତରେ ଏମାନେ ବାସକରୁଛନ୍ତି କେଜାଣି ?

ପୁଣି ଏଠିକା ସରକାର କଥା ଶୁଣ । ଗଭର୍ଣ୍ଣର ସାହେବ ବେଶ୍ ଭଦ୍ରଭାବରେ ମୋ ସହ ସାକ୍ଷାତ୍ କଲେ । ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଦୀକ୍ଷିତ ପର୍ଯ୍ୟନ୍ତ ସମସ୍ତେ ଆସି ମତେ ଗଣତନ୍ତ୍ରର ଶିକ୍ଷା ଦେଇଯାଉଛନ୍ତି ।

କିନ୍ତୁ ତାଙ୍କ ନିଜ ଆଚରଣକୁ ଦେଖ । ଲକ୍ଷସଂଖ୍ୟାରେ ଲୋକ ଶାନ୍ତିପୂର୍ଣ୍ଣଭାବରେ ଟ୍ରେନ୍‌ରେ, ଟ୍ରକ୍‌ରେ ଓ ଅନ୍ୟ ଯାନବାହନ ଭଡ଼ାକରି ପାଟନା ଆସୁଛନ୍ତି । କିନ୍ତୁ ସେମାନଙ୍କୁ ବାଧା ଦିଆଯାଉଛି, ପିଟି ମାରୁଚନ୍ତି; ବିନା କାରଣରେ ଗିରଫ କରାଯାଇଛି । ଅଥଚ ଏମାନେ ଆସି ଗଣତନ୍ତ୍ରର ଶିକ୍ଷା ଦେଉଛନ୍ତି । ଉମାଶଙ୍କର ଦୀକ୍ଷିତ କହୁଛନ୍ତି—ଜୟପ୍ରକାଶ ନ ଥିଲେ ବିହାର ଜଳି ପୋଡ଼ି ଯାଇଥାନ୍ତା । ଏହା ଯଦି ମାନୁଛ, ତେବେ ଜୟପ୍ରକାଶ ଯେଉଁ ସଭା ଶୋଭାଯାତ୍ରାର ନେତୃତ୍ୱ ନେଉଛି, ତାକୁ ବନ୍ଦ କରିବା ନିମନ୍ତେ କାହିଁକି ଲୋକଙ୍କୁ ଆସିବାରେ ବାଧା ଦେଉଛ ? ଉମାଶଙ୍କର ଦୀକ୍ଷିତ ମୋର ପୁରାତନ ବନ୍ଧୁ । ସେ ମୋ ସହିତ ଦେଖା କରିବାକୁ ଚାହାଁନ୍ତି । ଅନ୍ୟ ବନ୍ଧୁମାନେ ଆସି ଜୟପ୍ରକାଶ ନାରାୟଣ ଓ ଇନ୍ଦିରା ଗାନ୍ଧୀଙ୍କ ଭିତରେ ଗୋଟାଏ କିଛି ସମାଧାନ କରିବାକୁ ବ୍ୟଗ୍ରତା ଦେଖାଉଛନ୍ତି ।

କିନ୍ତୁ ମୋର ବ୍ୟକ୍ତିବିଶେଷ ସହିତ କିଛି ଝଗଡ଼ା ନାହିଁ । ମୋର ବିବାଦ ହେଉଛି ତୁମ ନୀତି, ତୁମ ଉଦ୍ଦେଶ୍ୟ ଏବଂ ତୁମର କାର୍ଯ୍ୟ ସଙ୍ଗରେ । ଯେଉଁ ନୀତି ଓ ଲକ୍ଷ୍ୟ ଭୁଲ ବୋଲି ମୁଁ ବିଚାରୁଛି, ମୁଁ ମୋର ବୁଦ୍ଧି ବିଚକ୍ଷଣତା ଲଗାଇ ତାର ବିରୋଧ କରିବି ହିଁ କରିବି ।

ଦୀକ୍ଷିତଜୀ କହନ୍ତି ସେ ମୋ ସହିତ ଭ୍ରଷ୍ଟାଚାର ବିଷୟରେ କଥାବାର୍ତ୍ତା କରିବାକୁ ଚାହାଁନ୍ତି ଏବଂ ସହଯୋଗ କରିବାକୁ ପ୍ରସ୍ତୁତ । ମୁଁ ଦୁର୍ନୀତି ବିଷୟରେ ଲେଖିଛି ଏବଂ କହିଛି ମଧ୍ୟ । ଇନ୍ଦିରାଜୀଙ୍କ ସହ ବି ମୋର ଆଳାପ ହୋଇଥିଲା । ମୁଁ ପାର୍ଲିମେଣ୍ଟର ସବୁ ସଦସ୍ୟଙ୍କୁ ସୁପ୍ରିମ୍ କୋର୍ଟ ଓ ମୌଳିକ ନାଗରିକ ଅଧିକାର ସମ୍ପର୍କରେ ପତ୍ର ଲେଖିଲି । ଦୁର୍ନୀତି ଦୂର କରିବା ନିମନ୍ତେ କେତେକ ପ୍ରସ୍ତାବ ପଠାଇଥିଲି । ଗୋଟିଏ ଦୁଇଟି କଥା ଛାଡ଼ିଦେଲେ ଏ ପ୍ରସ୍ତାବଗୁଡ଼ିକ ବିଭିନ୍ନ ସରକାରୀ କମିଟିଗୁଡ଼ିକର ସୁପାରିଶ ଭାବରେ ଦିଆଯାଇଛି ।

ଯଦି ଇନ୍ଦିରାଜୀ ବା ଦୀକ୍ଷିତଜୀ କିଛି କରିବେ ବୋଲି ବର୍ତ୍ତମାନ କହୁଛନ୍ତି, ତେବେ ସେମାନେ ଏପର୍ଯ୍ୟନ୍ତ କିଛି କରିଲେ ନାହିଁ କାହିଁକି ?

ଦଳବଦଳ-ବିରୋଧୀ ବିଲ୍ ଟି ପ୍ରାୟ ୭ ବର୍ଷ ହେଲା ପାସ୍ ନ ହୋଇ ପଡ଼ିରହିଛି କାହିଁକି ? ଲୋକପାଳ ବିଲ୍ ପ୍ରାୟ ୧୦ ବର୍ଷ ହେଲା ପାସ୍ ହେବାକୁ ନାହିଁ । ଦରକାର ହେଲେ ନିଜର ବହୁ ଅଧିକ ଭୋଟ ବଳରେ ଯେକୌଣସି କଥା କରାଇ ନେଇ ପାରୁଛନ୍ତି । ଯଦି ଦୀକ୍ଷିତଜୀ ପ୍ରକୃତରେ ଚାହାନ୍ତି, ତେବେ ମୋ କଥା ପଛକେ ଗ୍ରହଣ ନ କରନ୍ତୁ, ଆଉ ଯେତେ ଲୋକ ସବୁ ପ୍ରସ୍ତାବ ଦେଇଛନ୍ତି, ସେଗୁଡ଼ିକର ବିଚାର କରି କାର୍ଯ୍ୟକାରୀ କରାଯାଉ ।

ଗୋଟିଏ ଦୃଷ୍ଟାନ୍ତ ବିଚାର କରାଯାଉ—ରାଜନୀତିରେ ନିର୍ବାଚନ ବ୍ୟୟ ହେଉଛି ଦୁର୍ନୀତିର ଏକ ବଡ଼ କାରଣ । କୋଟି କୋଟି କଳାଧନ କଳାବେପାରୀଙ୍କଠାରୁ ସଂଗୃହୀତ ହେଉଛି । ଏହାର କୌଣସି ହିସାବ ନାହିଁ । କଂଗ୍ରେସ ଦଳର ହିସାବ ଖାତାରେ ଏ ସଂଗୃହୀତ ଧନ ଉଲ୍ଲେଖ କରାଯାଉନାହିଁ । ଏହି ଟଙ୍କା କେମିତି ଖର୍ଚ୍ଚ କରାଯାଉଛି ଓ କିଏ କରୁଛି କାହାରିକୁ ଜଣାନାହିଁ । ଏ ଭ୍ରଷ୍ଟାଚାରକୁ ବନ୍ଦ କରିବାକୁ ପଡ଼ିବ ।

କେତେ ବର୍ଷ ହେଲାଣି ମୁଁ ବରାବର ନିର୍ବାଚନ ପଦ୍ଧତିର କେତେକ ଗୁରୁତର ସଂଶୋଧନ ଲାଗି ଦାବି କରିଛି । ନିର୍ବାଚନ ଖରଚ କମ୍ ନ ହେବା ପର୍ଯ୍ୟନ୍ତ କୌଣସି ଦରିଦ୍ର ପ୍ରାର୍ଥୀ, କୃଷକ ବା ଶ୍ରମିକ କିମ୍ବା ଏକ ଗରିବ ଦଳ ପ୍ରାର୍ଥୀ ଛିଡ଼ାକରିବାକୁ କେବେ ସମର୍ଥ ହୋଇପାରିବେ ନାହିଁ । ମୋର ଏ କଥା କାଲି ଆଗରେ ମୂଳା ଗୀତ ବାଇଲପରି ହେଉଛି; କେହି ଶୁଣୁନାହିଁ । ମୁଁ ଶୁଣୁଛି, ଏବେ କଣ ଗୋଟାଏ କମିଟି ଗଠନ କରାଯାଉଛି । ସେମାନେ ହୁଏତ ତରତର ହୋଇ କିଛି କରିବେ ଏବଂ ତାହା ତାଙ୍କ ଦଳର ମଙ୍ଗଳ ଲାଗି ହେବ । ଏସବୁ ଦୀକ୍ଷିତଜୀଙ୍କ ସହ କଥାବାର୍ତ୍ତା କରିବାକୁ ମୁଁ ସମ୍ମତ ଅଛି; ମାତ୍ର ବର୍ଷ ବର୍ଷ ଧରି ଏ ସମସ୍ୟା ତାଙ୍କ ପାଖରେ ପଡ଼ିରହିଛି ।

ଜଣେ କଂଗ୍ରେସ ଏମ୍. ପି. ଆସି ମତେ ଲଗାଇଛନ୍ତି ଯେ ମୁଁ ଦୀକ୍ଷିତଜୀଙ୍କ ସହ କଥାବାର୍ତ୍ତା କରିବା ଲାଗି ଏ ଆନ୍ଦୋଳନକୁ ୨ ମାସ ଲାଗି ସ୍ଥଗିତ ରଖେ । ଏପରି ପ୍ରସ୍ତାବ ଶୁଣି ମୁଁ ଆଶ୍ଚର୍ଯ୍ୟ ହେଉଛି । ସେ ମତେ କଣ ନିର୍ବୋଧ ବୋଲି ଭାବୁଛନ୍ତି କି ? ସେ କଣ ମନେ-କରିଛନ୍ତି ଏ ଆନ୍ଦୋଳନ ମୋ ପକେଟରୁ ମୁଁ ବାହାର କରିଛି ଏବଂ ମୋର ଇଚ୍ଛାନୁସାରେ

ଏହା ଆରମ୍ଭ ହୋଇପାରିବ ଓ ବନ୍ଦ କରାଯାଇପାରିବ । ସେମାନଙ୍କର ଯଦି ମୋ ସହ କଥାବାର୍ତ୍ତା ହେବାର ଇଚ୍ଛା ଥିଲା, ତେବେ ସେମାନେ ମୁଁ ଯେଉଁଦିନୁ ଦୁର୍ନୀତି ଶେଷ ସୀମାରେ ପହଞ୍ଚିଲଣି, ମୁଁ ବ୍ୟକ୍ତିଗତ ଭାବରେ ଏହା ଆଉ ସହ୍ୟ କରିବାକୁ ପ୍ରସ୍ତୁତ ନୁହେଁ ଏବଂ ଏହା ବିରୁଦ୍ଧରେ ଲଢ଼ାଇ କରିବାକୁ ସ୍ଥିର କରିଛି ବୋଲି ଘୋଷଣା କଲି, ସେଦିନୁ କଥାବାର୍ତ୍ତା ଆରମ୍ଭ କରିଥାଆନ୍ତେ ।

ମୁଁ ବରାବର ଆଶା କରିଥିଲି ଯେ, ମୋ ଭଳି ଲୋକ ଯେତେବେଳେ ଦୁର୍ନୀତି ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲାଣି, ସେ ମତେ ଡାକି କରି ଡାକିବେ ଏବଂ ତାଙ୍କର ପୂର୍ଣ୍ଣ ସହଯୋଗ ଏଥିରେ ମିଳିବ । ଏହା ବଦଳରେ ମୁଁ ତାଙ୍କଠାରୁ ଗାଳି ଶୁଣିଲି ଯେ ମୁଁ ଧନୀଲୋକଙ୍କଠାରୁ ଧନ ନିଏ ଏବଂ ମୋର ଦୁର୍ନୀତି ବିରୁଦ୍ଧରେ କହିବାର ଅଧିକାର ନାହିଁ । ସେ କଥା ଥରେ ନୁହେଁ, ବହୁବାର ବହୁସ୍ଥାନରେ କହିବାରେ ଲାଗିଛନ୍ତି ।

ତେଣୁ ଜୟପ୍ରକାଶ ନାରାୟଣ ବା ଆଉ କେହି ଏ ଆନ୍ଦୋଳନକୁ ବନ୍ଦ କରିପାରିବେ ନାହିଁ । ଶିକ୍ଷା-ବ୍ୟବସ୍ଥା ଅଚଳ ହୋଇଯାଇଛି, ଛାତ୍ରଙ୍କ ଆଗରେ ଭବିଷ୍ୟତର କିଛି ଆଶା ଆଉ ନାହିଁ । ସେମାନଙ୍କ ଯୋଗୁଁ ଏ ଆନ୍ଦୋଳନ । ଅତ୍ୟଧିକ ମୂଲ୍ୟବୃଦ୍ଧିରେ ଲୋକେ ହନ୍ତସନ୍ତ; ତେଣୁ ସେ ଆନ୍ଦୋଳନ କରୁଛନ୍ତି । ଚାରିଆଡ଼େ ଲାଞ୍ଚ ଘୁସ୍ ଦୁର୍ନୀତି ଭରପୂର । ଶିକ୍ଷିତ ଓ ଅଶିକ୍ଷିତ ବେକାରଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଛି । ନହେଲେ ହଜାରେ ଜୟପ୍ରକାଶ କିମ୍ବା ଛାତ୍ର ସଂଘର୍ଷ ସମିତି ଏମିତିକା ଏକ ଗଣ-ଆନ୍ଦୋଳନ ଛିଡ଼ା କରିପାରି ନ ଥାନ୍ତେ । ଲୋକଙ୍କ ହୃଦୟ ଭିତରେ ଅଗ୍ନି ଜଳୁଛି । ବିହାରରେ ଅଗଣିତ ଶିଶୁ ଖାଦ୍ୟ ପାଉନାହାନ୍ତି । ସେମାନେ କିପରି ଦିନକୁଦିନ ଶୁଖି ଅସ୍ଥିସାରଶୂନ୍ୟ ହେଉଛନ୍ତି, ତାହା ମୁଁ ମୋ ଆଖି-ଆଗରେ ଦେଖୁଛି । ଏବେ ମୋ ଗ୍ରାମର ବାଳକକୁ ଭେଟିଲି । ସେ ଏମିତି ଶୁଖିଯାଇଛି ଦେଖି ମୋ ମନରେ ଭାରି ଦୁଃଖ ହେଲା । ପଚାରିବାରୁ ସେ କହିଲା ଯେ ତାର ଖାଇବାକୁ କିଛି ନାହିଁ । ଲୋକେ ଯେ କେମିତି ଜୀବନ ବଞ୍ଚାଇଛନ୍ତି ମୁଁ ବୁଝିପାରୁନାହିଁ । ମୋର ସ୍ତ୍ରୀ ମରିଗଲା ପରେ ଏବେ ମତେ ସବୁ ହିସାବ ରଖିବାକୁ ପଡ଼ୁଛି ଏବଂ ମତେ କେବଳ ଖାଇବା ପିଇବାରେ ଯାହା ବ୍ୟୟ କରିବାକୁ ପଡ଼ୁଛି, ତାହା ଦେଖି ମୁଁ ତାଟକା ହୋଇଯାଉଛି । ମୁଁ ଯଦି ମାଗସେସେ ପୁରସ୍କାର ଟଙ୍କାରୁ ସୁଧ ପାଉନଥାନ୍ତି ଏବଂ କେତେଜଣ ବନ୍ଧୁ ମତେ ସାହାଯ୍ୟ କରୁନଥାନ୍ତେ, ତେବେ ମୁଁ ବି ବୋଧହୁଏ ଖାଇବାକୁ ପାଉନଥାନ୍ତି ।

ଏଇଥିସକାଶେ ଲୋକମାନେ ଉତ୍ତ୍ୟକ୍ତ—ସେମାନଙ୍କ ଭିତରେ ନିଆଁ ଜଳୁଛି । ଏମାନେ ତାହା ଦେଖିପାରୁନାହାନ୍ତି । ଜୟପ୍ରକାଶ ନାରାୟଣ କେବଳ ଏସବୁ ଭିଆଉଛି ବୋଲି ଭାବୁଛନ୍ତି । ମତେ ହୁଏତ ମୋ ଘରେ ନଜରବନ୍ଦୀ କରାଯାଇପାରେ । ଏମାନେ ପାଗଳ ହୋଇଗଲେଣି । ନିଆଁ ତ ତୁମ ଘରେ ଜଳିଲାଣି, ତୁମେ ଯେଉଁଠି ବସି ଶାସନ କରୁଛ ସେ ଚଉକି ତଳକୁ ନିଆଁ ବ୍ୟାପିଗଲାଣି; ତାକୁ ଆଉ ସମ୍ଭାଳିପାରିବ ନାହିଁ ।

ଇନ୍ଦିରାଜୀ, ଦୀକ୍ଷିତଜୀ, ଗଫୁର ସାହେବ ଓ ସବୁ କଂଗ୍ରେସ ନେତା କହୁଛନ୍ତି ଯେ କଂଗ୍ରେସକୁ ବିରୋଧ କରୁଥିବା ଦଳସବୁ ଏହି ଆନ୍ଦୋଳନ ଆରମ୍ଭ କରିଛନ୍ତି, ଏକ ରାଜନୀତିକ ଉଦ୍ଦେଶ୍ୟରେ ଏହି ଦଳଗୁଡ଼ିକ ଏକଜୁଟ ହୋଇଛନ୍ତି, ସେମାନେ କଂଗ୍ରେସକୁ ବଦ୍‌ନାମ କରିବାକୁ ଚାହାନ୍ତି; ସରକାରକୁ ହଟାଇବେ ଏବଂ ଯେତେ ଶୀଘ୍ର ସମ୍ଭବ ନିର୍ବାଚନ କରିବା ହେଲା ତାଙ୍କର ମତଲବ। କିନ୍ତୁ ଏହି ଆନ୍ଦୋଳନରେ ସବୁ ଦଳର ମୁଖା ଖୋଲି-ଗଲାଣି। ଆସେଂବ୍ଲି ଭଙ୍ଗ ଲାଗି ତ୍ୟାଗ କରିବା ନିମନ୍ତେ ଯେତେବେଳେ ଡାକରା ଆସିଲା କେତେ ଜଣ ବାହାରିଲେ ? (ଅଧିକାଂଶ ବିରୋଧୀ ଦଳ ସଭ୍ୟ ବିଧାନସଭା ସଭ୍ୟପଦ ତ୍ୟାଗ କରିବାଲାଗି ଅନିଚ୍ଛୁକ ହୋଇଥିବାରୁ ସେମାନଙ୍କୁ ଲକ୍ଷ୍ୟ କରି ଜୟପ୍ରକାଶ ଏ କଥା କହିଥିଲେ।)

ମୁଁ ଗୁଜରାଟରେ କହିଥିଲି, ଏଠି ବି ଛାତ୍ରମାନଙ୍କୁ କହୁଛି, ସେମାନେ ବିକଳ୍ପ ବ୍ୟବସ୍ଥା କଥା ଚିନ୍ତା କରନ୍ତୁ, ଯେପରିକି ବିଧାନସଭାର ନିର୍ବାଚନରେ ଉତ୍ତମ ଫଳ ମିଳିବ। ଯଦି ଏହି ଆନ୍ଦୋଳନର ଗୁରୁତ୍ୱ ତୁମେ ସବୁ ବୁଝୁଛ, ତେବେ ଏକବର୍ଷ ସକାଶେ ବିଶ୍ୱବିଦ୍ୟାଳୟ ଓ କଲେଜ ସବୁ ବନ୍ଦ ରହୁ ଏବଂ ତୁମେ ସବୁ ନିଷ୍ଠା ଓ ସାହସସହକାରେ କାର୍ଯ୍ୟ କର। ବର୍ଷକ ଲାଗି ସବୁ ପରୀକ୍ଷା ବନ୍ଦ କରାଯାଉ। ଗାନ୍ଧୀଜୀ ଏକ ବର୍ଷରେ ସ୍ୱରାଜ୍ୟ କଥା କହିଥିଲେ। ମୁଁ କହୁଛି, ଆଜିଠୁଁ ଏକବର୍ଷ ଭିତରେ ପ୍ରକୃତ ଲୋକଗଣତନ୍ତ୍ର ସ୍ଥାପିତ ହେବ। ଏକବର୍ଷ ଭିତରେ ଠିକଣାପ୍ରକାର ଶିକ୍ଷାବ୍ୟବସ୍ଥା ପ୍ରଚଳିତ ହେବ। ଏକ ନୂତନ ବିହାର, ଏକ ନୂତନ ଦେଶ ଗଠନ ନିମନ୍ତେ ଏକବର୍ଷ ସମୟ ଦିଅ।

ମୁଁ ଇନ୍ଦିରାଜୀ, ଦୀକ୍ଷିତଜୀ, ଗଫୁର ସାହେବ ଓ ଅନ୍ୟ ସମସ୍ତଙ୍କୁ ଜଣାଇଦେବାକୁ ଚାହେଁ, ସେମାନଙ୍କର ଆଖି ଖୋଲି ଦେଖନ୍ତୁ—ଏ ଆନ୍ଦୋଳନ ବିରୋଧୀ ଦଳଗୁଡ଼ିକ ଚଳାଇ ପାରନ୍ତି ? ସେମାନେ ତ ଅସଲ ଜେଲକୁ ବାହାରିଲେ ନାହିଁ। ଏ ଆନ୍ଦୋଳନ ହେଉଛି ଛାତ୍ରଙ୍କର, ଯୁବକଙ୍କର ଓ ଜନତାର; ଜୟପ୍ରକାଶର ନୁହେଁ କିମ୍ବା କୌଣସି ଦଳର ନୁହେଁ। ସେମାନେ ଏହି ଅସଲ କଥାଟି ବୁଝିନେଲେ ବିହାର, ଦେଶର ଜନତା ଓ ତାଙ୍କ ନିଜ ପକ୍ଷରେ ମଙ୍ଗଳଜନକ ହେବ। ଲୋକେ ଏହା ବୁଝନ୍ତି—ସେମାନେ ବୁଝନ୍ତୁ ବା ନବୁଝନ୍ତୁ। ଏହାକୁ ଆଉ କେହି ରୋକିପାରିବ ନାହିଁ।

କେହି କେହି କହୁଛନ୍ତି, ଅତ୍ୟଧିକ ମୂଲ୍ୟବୃଦ୍ଧି ଓ ଦୁର୍ନୀତି ବିରୁଦ୍ଧରେ ଏ ଆନ୍ଦୋଳନ ହେଲା—ଏବେ ପୁଣି ବିଧାନସଭା ଭଙ୍ଗ କରିବାକୁ କାହିଁକି କୁହାଯାଉଛି ? ସରକାର ଯେତେ ପାପ କରୁଛି ଏହି ଆସେଂବ୍ଲି ତାକୁ ବଳ ଦେଉଛି, ସମର୍ଥନ କରୁଛି। ତେଣୁ ମନ୍ତ୍ରିମଣ୍ଡଳ ଯିବା ସାଙ୍ଗେ ସାଙ୍ଗେ ଆସେଂବ୍ଲି ବି ଭଙ୍ଗହେବା ଦରକାର।

କିନ୍ତୁ ଆମେ ଆଉ ଆସେମ୍ବ୍ଲିକୁ ଭାଙ୍ଗିଦିଆଯାଉ ବୋଲି ଧ୍ୱନି ଉଠାଇବୁ ନାହିଁ; ଆମେ ହିଁ ଆସେମ୍ବ୍ଲି ଭାଙ୍ଗିଦେବୁ। ଯେଉଁମାନେ ଆସେମ୍ବ୍ଲି ଯୋଗୁଁ ବେତନ ପାଇ ରହିଛନ୍ତି,

ସେମାନେ ନିଜକୁ ବିସର୍ଜନ କରିବାଲାଗି କେବେ ରାଜି ହେବେ ନାହିଁ । ଆମକୁ ହିଁ ଆସେମ୍ବ୍ଲିକୁ ଭାଙ୍ଗି ଦବାକୁ ପଡ଼ିବ ।

ଯେଉଁମାନେ ଏପର୍ଯ୍ୟନ୍ତ ଇସ୍ତଫା ଦେଇନାହାନ୍ତି, ତାଙ୍କୁ ଆଉ ଏକ ହପ୍ତା ସମୟ ଦିଆଯାଉଛି । ଯେଉଁମାନେ ଜୁନ ୧୬ ତାରିଖ ସୁଦ୍ଧା ଇସ୍ତଫା ନ ଦେବେ, ସେମାନେ ପୁଣି ଯଦି କେବେ କେଉଁଠି ପ୍ରାର୍ଥୀ ହୁଅନ୍ତି, ତାଙ୍କୁ ଲୋକେ ଗୋଟିଏ ହେଲେ ଭୋଟ ଦେବେ ନାହିଁ । ଯେଉଁମାନେ ବିଶ୍ୱାସଘାତକତା କରିଛନ୍ତି, ସେମାନଙ୍କୁ କେବେ ହେଲେ ଭୋଟ ନ ଦେବାଲାଗି ମୁଁ ଲୋକଙ୍କୁ ନିବେଦନ କରୁଛି । ସେମାନେ ଲୋକଙ୍କର ବିଶ୍ୱାସ ହରାଇଛନ୍ତି । ବିହାର ଜଳୁଛି, ଲୋକ ମରୁଛନ୍ତି, ସେମାନେ ଆସେମ୍ବ୍ଲିରେ ବସି ବେତନ ନେଉଛନ୍ତି ଏବଂ ମନ୍ତ୍ରୀ ଆସନରେ ବସିବାଲାଗି ନିଜ ଭିତରେ ବିବାଦରେ ବ୍ୟସ୍ତ ରହୁଛନ୍ତି । ସେମାନଙ୍କୁ ପରାଜିତ କରିବାକୁ ହିଁ ପଡ଼ିବ ।

ମୁଁ ପୁଲିସମାନଙ୍କୁ କି ପଦେ କହିବାକୁ ଚାହେଁ । ଏହା ଏକ ଜନବିଦ୍ରୋହ । ପୁଲିସ ଲୋକ ବି କମ୍ ଦରମା ପାଉଛନ୍ତି । ହୁଏତ ୨, ୩ ହଜାର ବା ୫ ହଜାର ବେତନ ମିଳୁଛି । ଟଙ୍କାର ମୂଲ୍ୟ ୫ ଭାଗରୁ କମ୍ ହୋଇଗଲଣି—ସେମାନେ କଣ ଏତକ ବୁଝୁ-ନାହାନ୍ତି ? ତାଙ୍କର ତ ପୁଣି ଘର-ସଂସାର ଅଛି—ପିଲା ଶିକ୍ଷା ପାଇବେ, ଝିଅମାନେ ବାହା ହେବେ—ଏଥିରେ କଣ ଜୀବନ-ନିର୍ଭର ହେବ ? ସେମାନେ ହୁକୁମ ମାନନ୍ତୁ, କେହି ହିଂସା କିମ୍ବା ଧ୍ୱଂସମୂଳକ କାର୍ଯ୍ୟ କଲେ ତାକୁ ଗିରଫ କରନ୍ତୁ,—କିନ୍ତୁ ସେମାନେ ବିନା ବିଚାରରେ ଲୋକଙ୍କ ଉପରେ ଗୁଳି ଚଳାନ୍ତୁ ନାହିଁ ।

ଟ୍ୟାଙ୍କ ରହିଛି ଆମ ଶତ୍ରୁ ବିରୁଦ୍ଧରେ ସୀମାନ୍ତରେ ବା ତା' ଆଖପାଖରେ ବ୍ୟବହାର ପାଇଁ । ତାକୁ କଣ ଆମର ଲୋକଙ୍କ ବିରୁଦ୍ଧରେ ପ୍ରୟୋଗ କରାଯିବ ? ଆମ ଜଓ୍ୱାନମାନେ ଖୁବ୍ ବୀରତ୍ୱସହକାରେ ଯୁଦ୍ଧ ଲଢ଼ିଛନ୍ତି, ଯଶ ଅର୍ଜନ କରିଛନ୍ତି, କିନ୍ତୁ ତାଙ୍କୁ କାହିଁକି ଆମ ଲୋକଙ୍କ ବିରୁଦ୍ଧରେ ତାଙ୍କ ଅନିଚ୍ଛାସତ୍ତ୍ୱେ ବ୍ୟବହାର କରାଯାଉଛି ?

ଏହା ହେଉଛି ସମ୍ପୂର୍ଣ୍ଣ କ୍ରାନ୍ତି ପାଇଁ ଏକ ଆନ୍ଦୋଳନ । ମୁଁ ଏହାର ଆଉର ଅନ୍ୟ ଦିଗ ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରିନାହିଁ । ନୈତିକ ବିପ୍ଳବ, ଶିକ୍ଷା ବିପ୍ଳବ ଇତ୍ୟାଦି ବିଷୟରେ ଏଠାରେ ଉଲ୍ଲେଖ କରିନାହିଁ । ମାତ୍ର 'ସମ୍ପୂର୍ଣ୍ଣ କ୍ରାନ୍ତି' କହିଲେ କଣ ବୁଝାଏ ଆପଣମାନେ ମୋଟାମୋଟି ଜାଣନ୍ତି । ଆମେ ପୂର୍ବରୁ ଏଭଳି ଆନ୍ଦୋଳନ କରିଛେ । ଏହା ହେଉଛି ଆମ ଜୀବନର ପରିବର୍ତ୍ତନ ଲାଗି । ଆମକୁ ନିଜ ଭିତରେ ଏକତା ଓ ଦୃଢ଼ତା ରକ୍ଷା କରିବାକୁ ପଡ଼ିବ ।"

ଅନ୍ୟାୟ ଅବିଚାର ବିରୁଦ୍ଧରେ ପ୍ରକାଶ୍ୟ ଶାନ୍ତିପୂର୍ଣ୍ଣ ପ୍ରତିବାଦ ନିଷିଦ୍ଧ ହେବାରୁ ଏବଂ ବିଚାର-ଆଲୋଚନା ପରିବର୍ତ୍ତେ ଦମନ-ଅସ୍ତ୍ର ପ୍ରୟୋଗ କରାଯିବାରୁ କ୍ରମେ ପ୍ରତିବାଦମୂଳକ ଆନ୍ଦୋଳନ କିପରି ଏକ ପୂର୍ଣ୍ଣାଙ୍ଗ ବିପ୍ଳବର ଆକାର ଧାରଣ କଲା, ତାହା ଉପରୋକ୍ତ ଭାଷଣରୁ ପରିଷ୍କାର ହେଉଛି । ଏଣିକି ଆନ୍ଦୋଳନଟି କେବଳ ବିହାର, ଗୁଜରାଟ ବା ଅନ୍ୟ

ପ୍ରାଦେଶିକ ସ୍ତରରେ ସୀମାବଦ୍ଧ ନ ରହି ସାରା ଦେଶରେ ଦ୍ରୁତବେଗରେ ପ୍ରସାର ଲାଭ କଲା । ନିର୍ବାଚନରେ କାହା ପଶ୍ଚାତ୍ତରେ ଲୋକସମର୍ଥନ ଅଛି ସ୍ଥିର ହେଉ ବୋଲି ଇନ୍ଦିରା ଗାନ୍ଧୀ ଆହ୍ୱାନ ଦେବାରୁ, ଜୟପ୍ରକାଶ ସେ ଚ୍ୟାଲେଞ୍ଜ ମଧ୍ୟ ଗ୍ରହଣ କରୁଛନ୍ତି ବୋଲି ଜଣାଇଦେଲେ । ଦିଲ୍ଲୀ ଶାସନ ସହ ପ୍ରତ୍ୟକ୍ଷ ସଂଘର୍ଷ ଆଡ଼କୁ ପରସ୍ଥିତି ଗଡ଼ିକରି ଦେଶର ରାଜନୀତିକ ଶକ୍ତି ଦୁଇଭାଗରେ ବିଭକ୍ତ ହୋଇଗଲା ।

# ଦିଲ୍ଲୀ : ସପକ୍ଷ ଓ ବିପକ୍ଷ

ଏହା ପରେ ଯେଉଁଭଳି ଦ୍ରୁତଗତିରେ ଭାରତର ବିଭିନ୍ନ ଅଞ୍ଚଳରେ ଓ ରାଜ୍ୟରେ ଆନ୍ଦୋଳନର ପ୍ରସାର ଘଟିଲା, ସେଥିରେ ଜୟପ୍ରକାଶଙ୍କ ଭବିଷ୍ୟତବାଣୀ ସତ୍ୟ ହେବା ପରି ବୋଧହେଲା । ସେ କହିଥିଲେ, ବିହାର ହିଁ ସମଗ୍ର ଦେଶବ୍ୟାପୀ ଆନ୍ଦୋଳନର ମୂଳରୂପେ ଧରାଯିବ ।

ବାସ୍ତବିକ ବିହାର ମନ୍ତ୍ରିମଣ୍ଡଳର ଇସ୍ତଫା ଏବଂ ଆସେମ୍ବ୍ଲି ଭଙ୍ଗ ଦାବିକୁ ଛାଡ଼ିଦେଲେ ଅନ୍ୟ ଯେଉଁ ସବୁ ଦାବି; ଯଥା—ଦୁର୍ନୀତି, ନିର୍ବାଚନ ପଦ୍ଧତିର ସଂଶୋଧନ, ଶିକ୍ଷାପ୍ରଣାଳୀର ପରିବର୍ତ୍ତନ, ସମ୍ବାଦପତ୍ର ଓ ବିଚାର ବିଭାଗର ସ୍ୱାଧୀନତା ରକ୍ଷା ଇତ୍ୟାଦି ଦାବି ସର୍ବଭାରତୀୟ ଦାବି । ତେଣୁ ବିହାର ଜନଜାଗରଣର ବାର୍ତ୍ତା ସାରା ହିନ୍ଦୁସ୍ଥାନରେ ପବନବେଗରେ ବାଜିଗଲା ।

କେତେକ ଲୋକ ଏହାର ମୂଳ ଉଦ୍ଦେଶ୍ୟ ପଣ୍ଡ କରିବା ନିମନ୍ତେ ଏହାକୁ ଜୟପ୍ରକାଶ-ଇନ୍ଦିରା ବିବାଦରେ ପରିଣତ କରିବାକୁ ଚେଷ୍ଟାକଲେ । ଜୟପ୍ରକାଶ ଓ ଇନ୍ଦିରାଙ୍କ ଭିତରେ ଯେ ଅଯଥା ବ୍ୟକ୍ତିଗତ ଦୋଷାରୋପ ଚାଲିଲା, ତହିଁର ସୁଯୋଗ ନେଇ ନ୍ୟସ୍ତ-ସ୍ୱାର୍ଥବାଦୀ ନାନା ଖେଳ ଖେଳିବାକୁ ଲାଗିଲେ ପରସ୍ପର ମଧ୍ୟରେ ଭୁଲ ବୁଝାମଣା ସୃଷ୍ଟି କରି । ମାତ୍ର ଜୟପ୍ରକାଶ ସର୍ବତ୍ର ଏବଂ ବାରମ୍ବାର ପ୍ରାୟ ସବୁ ସ୍ଥାନରେ ପରିଷ୍କାର କରି-ଦେଉଥାନ୍ତି ଯେ, ଇନ୍ଦିରାଙ୍କ ସହ ଏହା ବ୍ୟକ୍ତିଗତ ବିବାଦ ନୁହେଁ, ଏହା ଏକ ରାଜନୀତିକ ବିବାଦ—ଏକ ନୀତି ଲାଗି ଲଢ଼ାଇ । ଯେଉଁ ଲୋକଙ୍କୁ ଲାଠିମାଡ଼, ଗୁଳିଦ୍ୱାରା ଏବଂ ନିର୍ବାଚନରେ ଟଙ୍କା, ଜାତିଆଣ ପ୍ରଭାବ ଓ ଦୋଷଯୁକ୍ତ ନିର୍ବାଚନ ପଦ୍ଧତିରେ ତାଙ୍କର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରାଯାଇଛି, ସେମାନେ ଏବେ ସଚେତ ହେଲେଣି । ଜୟପ୍ରକାଶ କୌଣସି ଦଳ ହାତରେ କ୍ଷମତା ଦେବାକୁ ଚାହୁଁ ନ ଥିଲେ । ତାଙ୍କର ଉଦ୍ୟମ ହେଲା ଲୋକଙ୍କ ହାତକୁ ପ୍ରକୃତ କ୍ଷମତା ଆସୁ । ଲୋକଙ୍କ ହାତକୁ ପ୍ରକୃତ କ୍ଷମତା ଆସିବାରେ ପ୍ରଧାନ ଅନ୍ତରାୟ ହେଉଛି କେନ୍ଦ୍ର ସରକାର ଓ କେନ୍ଦ୍ର ନେତୃତ୍ୱ । ବିହାର ଘଟଣାରେ ଏହା ପ୍ରମାଣ ହୋଇଗଲା—କେନ୍ଦ୍ର ସରକାର ସମର୍ଥନ ନକରିଥିଲେ, ସୀମାନ୍ତରକ୍ଷୀ ବାହିନୀ ଆଦି ଅର୍ଦ୍ଧ-ମିଲଟାରୀ ଫଉଜ ମୁତୟନ ନ କରିଥିଲେ, ବିହାରର ବିରାଟ ଜନତାର ଶାନ୍ତିପୂର୍ଣ୍ଣ ଅଭିଯାନରେ ବିହାର ସରକାର ଆପଣାଛାଏଁ ଆତ୍ମସମର୍ପଣ କରିଯାଇଥାନ୍ତା ।

ଭାରତର ରାଜନୀତିରେ କଂଗ୍ରେସର ପ୍ରାଧାନ୍ୟ କ୍ରମାଗତ ଏତେବର୍ଷକାଳ ଅକ୍ଷୁଣ୍ଣ ରହିବାର ଏକମାତ୍ର କାରଣ ହେଉଛି, ବିରୋଧୀଦଳଗୁଡ଼ିକ ବିଚ୍ଛିନ୍ନ ଓ ଶକ୍ତିହୀନ ହୋଇଥିବା

ଯୋଗୁଁ । ସେମାନଙ୍କ ଭିତରେ ଏକତା ନ ଥିଲା—ପରସ୍ପର ଦ୍ୱନ୍ଦ୍ୱ କରୁଥିବାରୁ ନିର୍ବାଚନରେ ଅର୍ଦ୍ଧେକରୁ କମ୍ ଭୋଟ ପାଇ ସୁଦ୍ଧା କଂଗ୍ରେସଦଳ ବିପୁଳ ଭାବରେ ବିଜୟ ହାସଲ କରି କ୍ଷମତାସୀନ ହୋଇପାରୁଥିଲା । ଏଣେ କୌଣସି ଜନ-ଆନ୍ଦୋଳନ ମଧ୍ୟ ଦେଶରେ ଉଠି-ପାରୁନଥିଲା । ଭାରତର କମ୍ୟୁନିଷ୍ଟ ଦଳ କଂଗ୍ରେସର ସହଯୋଗୀ ହୋଇ ସୁବିଧା ଭୋଗ କରିବାର ନୀତି ଗ୍ରହଣ କରିଥିବାରୁ ଅନ୍ୟ କୌଣସି ଲୋକଶକ୍ତିର ସଂଗଠନ ହୋଇପାରୁ-ନଥିଲା । ଅବଶ୍ୟ ମାର୍କସବାଦୀ କମ୍ୟୁନିଷ୍ଟମାନେ ବରାବର କଂଗ୍ରେସର ବିରୋଧୀ ହୋଇ ରହିଥିଲେ; ମାତ୍ର ସେମାନେ ଶାସନର ଅଧିକାରୀ ହୋଇ ସୁଦ୍ଧା ନିଜର ହିଂସା ଓ ଗଣ୍ଡଗୋଳ ନୀତି ଏମିତିଭାବରେ ପ୍ରଚଳନ କଲେ ଯେ ଲୋକେ ଭୀତତ୍ରସ୍ତ ହୋଇ ତାଙ୍କ ପାଖରୁ ତ୍ରାହି ତ୍ରାହି ଡାକଗ୍ଭିଡ଼ିଲେ । ହିଂସା ଓ ଗଣ୍ଡଗୋଳଆ ପରିସ୍ଥିତି ହେତୁ ଲୋକଙ୍କ ସହାନୁଭୂତି ସରକାର ପକ୍ଷକୁ ହଟିଯାଏ—ତାହା ହିଁ ବାସ୍ତବିକ ଘଟିଲା । ଅଧିକ ଚରମପନ୍ଥୀ ବୋଲି ସ୍ଥଳବିଶେଷରେ ନକ୍ସଲପନ୍ଥୀ ଓ ସେହିଭଳି ହିଂସାରେ କ୍ଷମତା ଦଖଲ କରିବାର ଅଭିପ୍ରାୟ ରଖିଥିବା ପାର୍ଟି ଓ ଗୋଷ୍ଠୀଙ୍କର କାଁ-ଭାଁ ଆକ୍ରମଣ ଦ୍ୱାରା ଅନ୍ୟମାନଙ୍କ ମନରେ ଭୟ ସଞ୍ଚାର କରାଇବାରେ ସରକାର ସମର୍ଥ ହୋଇପାରିଲା । ତାହା ଛଡ଼ା ଏକ ପ୍ରତିଷ୍ଠିତ ସରକାରକୁ ଏଠି-ସେଠି ହିଂସା ବା ମାରଧର କରି କେହି କେବେ ଗାଦିଚ୍ୟୁତ କରିପାରିନାହିଁ । ସେଥିଲାଗି ଲେନିନ୍ ମଧ୍ୟ ଏଭଳି ଅସଂଗଠିତ ହିଂସାର ନିନ୍ଦା କରିଛନ୍ତି । ତେଣୁ ପରିସ୍ଥିତି ଯାହା ଥିଲା, ସେଥିରେ କଂଗ୍ରେସ ସରକାର ହାତରୁ କ୍ଷମତା ଖସିଯିବା ଭଳି ବିପଦ ଆସି ପହଞ୍ଚି ନ ଥିଲା । ଜୟପ୍ରକାଶଙ୍କୁ ମଧ୍ୟ ସବୁ ବିରୋଧୀଦଳ ସମର୍ଥନ କରୁନଥିଲେ । ମାର୍କସ୍‌ବାଦୀ କମ୍ୟୁନିଷ୍ଟମାନଙ୍କର ଜୟପ୍ରକାଶଙ୍କ ଆନ୍ଦୋଳନ ପ୍ରତି ବିରୋଧ ନ ଥିଲେ ସୁଦ୍ଧା ଏହା ସପକ୍ଷରେ କାର୍ଯ୍ୟ କରିନଥିଲେ କିମ୍ବା ସେମାନେ ଏଥିରେ ସାମିଲ ହୋଇନଥିଲେ ।

ମାତ୍ର ଇନ୍ଦିରା ଗାନ୍ଧୀ ଏହାର ଅସଲ ତାତ୍ପର୍ଯ୍ୟ ଅନୁଭବ କରିଥିଲେ; ତେଣୁ ତାଙ୍କର ପ୍ରଥମ ଉଦ୍ୟମ ହେଲା ଜୟପ୍ରକାଶଙ୍କ ଚରିତ୍ର ସଂହାର କରି ତାଙ୍କୁ ଲୋକଚକ୍ଷୁରେ ହୀନ ପ୍ରତିପାଦିତ କରିବା । ଏ ବ୍ୟକ୍ତିଗତ ବିରୋଧିତା ବିଶେଷ କିଛି ପ୍ରଭାବ ପକାଇପାରିଲା ନାହିଁ; କାରଣ ଜୟପ୍ରକାଶଙ୍କ ଜୀବନ ଖୋଲା ଅଧ୍ୟାୟ—ସେ ମଧ୍ୟ ଯେ କୌଣସି, ଏପରିକି ନିଜର ବ୍ୟକ୍ତିଗତ ଜୀବନ କାହାଣୀ ବି ଲୋକଙ୍କ ଆଗରେ ପ୍ରକାଶ କରିଦେଲେ । ବାସ୍ତବିକ ମହାତ୍ମା ଗାନ୍ଧୀଙ୍କ ପରେ ଏପରି ନିର୍ମଳ ବ୍ୟକ୍ତିଗତ ଜୀବନ ଆଉ କୌଣସି ସାଧାରଣସେବୀ ନିକର ଅଛି ବୋଲି ବୋଧହୁଏ ଦାବି କରିପାରିବ ନାହିଁ । ଏହା ଲୋକଙ୍କ ମନରେ ପ୍ରତିକୂଳ ପ୍ରତିକ୍ରିୟା ସୃଷ୍ଟି କରିବା ପରିବର୍ତ୍ତେ ଜୟପ୍ରକାଶଙ୍କର ନିଃସ୍ୱାର୍ଥପରତା, ତ୍ୟାଗ ଓ ନିରପେକ୍ଷତା ପ୍ରତି ଲୋକଙ୍କର ପ୍ରଗାଢ଼ ଭକ୍ତି ଉପୁଜିଲା । ଯେକୌଣସି ଆନ୍ଦୋଳନରେ ନେତୃତ୍ୱର ନିଷ୍ଠା, ଐକାନ୍ତିକତା ଏବଂ ସାଧୁତା ଏକ ବଡ଼ ବଳ—ନେତା ଉପରେ ଥରେ ବିଶ୍ୱାସ ଆସିଗଲେ ଲୋକ ଯେ କୌଣସି ତ୍ୟାଗଲାଗି ପଶ୍ଚାତ୍‌ପଦ ହୁଅନ୍ତି ନାହିଁ । ଏହି କେତେ ମାସ ଭିତରେ ଯାହା ଘଟଣା ଘଟିଗଲା, ସେଥିରେ ଲୋକଶକ୍ତିର ସଂଗଠନ ଯେତେ

ଦୃଢ଼ ହୋଇପାରିନଥିଲା, ତାହିଁରୁ ସର୍ବାଧିକ ଶକ୍ତିଶାଳୀ ରୂପେ, ଏକ ବିକଳ୍ପ ଶକ୍ତିରୂପେ, ବ୍ୟକ୍ତିଗତ ଭାବରେ ଜୟପ୍ରକାଶ ଉଭାହେଲେ । ବିହାର ଆନ୍ଦୋଳନରେ ସେ ସଂପୂର୍ଣ୍ଣଭାବରେ ଜଡ଼ିତ ହୋଇ ରହିଥିଲେ ମଧ୍ୟ ଦେଶର ଚତୁର୍ଦ୍ଦିଗରୁ ତାଙ୍କୁ ଆହ୍ୱାନ ଆସିଗଲା ଏବଂ ମହାଭାରତୀୟ ସ୍ତରରେ ଏହାର ସମ୍ମୁଖୀନ ହେବା ନିମନ୍ତେ ଇନ୍ଦିରା ଗାନ୍ଧୀ ଯୋଜନାମାନ ପ୍ରସ୍ତୁତ କଲେ ।

ରାଜନୀତି କ୍ଷେତ୍ରରେ କଂଗ୍ରେସର ବିଭାଜନବେଳେ କଂଗ୍ରେସର ଏକ ଶକ୍ତିଶାଳୀ ଗୋଷ୍ଠୀ ସାଂପ୍ରଦାୟିକ ଓ ପ୍ରତିକ୍ରିୟା ଶକ୍ତି ସହିତ ହାତ ମିଳାଇଛନ୍ତି ଏବଂ ପ୍ରଗତିମୂଳକ ଅର୍ଥନୀତିକ ବିକାଶରେ ବାଧା ପହଞ୍ଚାଉଛନ୍ତି ବୋଲି ସଫଳ ପ୍ରଚାରରେ ସେ ନେତୃତ୍ୱ ନିଜ ହାତକୁ ନେଇପାରିଥିଲେ ଏବଂ ପ୍ରତିଷ୍ଠିତ କଂଗ୍ରେସ ଲୋକଙ୍କୁ ପରାସ୍ତ କରି ଦେଇ-ଥିଲେ । ସେହିଭଳି ପ୍ରତିକ୍ରିୟାଶୀଳ ବିରୋଧୀ ଦଳଗୁଡ଼ିକ ଦ୍ୱାରା ଜୟପ୍ରକାଶଙ୍କ ଆନ୍ଦୋଳନ ପରିଚାଳିତ ବୋଲି ଯେଉଁ ପ୍ରଚାର ଆରମ୍ଭ ହୋଇଥିଲା, ତାହା ବିଶେଷ ସଫଳ ହୋଇ ପାରିଲା ନାହିଁ; ଜୟପ୍ରକାଶ ନିଜର ଓ ଆନ୍ଦୋଳନର ନିର୍ଦ୍ଦଳୀୟ ଚରିତ୍ରକୁ ବଜାୟ ରଖିଲେ । ସବୁ ବିରୋଧୀ ଦଳ ମଧ୍ୟ ତାଙ୍କ କାର୍ଯ୍ୟକୁ ପୂର୍ଣ୍ଣ ସମର୍ଥନ ଜଣାଉନଥିଲେ । ଜୟପ୍ରକାଶ ଭାରତର ଚାରିଆଡ଼େ ବିହାର ଆନ୍ଦୋଳନର ଉଦ୍ଦେଶ୍ୟ ବୁଝାଇବାକୁ ଯେ ଗସ୍ତ କଲେ, ତାହା କୌଣସି ରାଜନୀତିକ ଦଳଦ୍ୱାରା ଆୟୋଜନ କରାଯାଉନଥିଲା । ଜନସଂଘର୍ଷ ସମିତିମାନ ଗଠନ କରାଯାଇ ତାହା ଜରିଆରେ କାର୍ଯ୍ୟ ଚାଲିଲା । ଅବଶ୍ୟ କୌଣସି ବିରୋଧୀ ଦଳର ସଭ୍ୟ ଏପରି କି କଂଗ୍ରେସ ଲୋକେ ବି ଯଦି ଆନ୍ଦୋଳନରେ ସଂପୃକ୍ତ ହେବାକୁ ଇଚ୍ଛୁକ ହେଉଥିଲେ, ସେମାନଙ୍କୁ ବାରଣ କରାଯାଉନଥିଲା । ଏଥିଯୋଗୁ କଂଗ୍ରେସ ନେତୃତ୍ୱ ବିରୁଦ୍ଧରେ ହୋଇଥିବା କୌଶଳ ଜୟପ୍ରକାଶଙ୍କ ବିରୁଦ୍ଧରେ ପ୍ରଯୁଜ୍ୟ ହେଲା ନାହିଁ । ବରଂ ଲୋକଙ୍କ ମଧ୍ୟରେ ଜୟପ୍ରକାଶଙ୍କ ଆନ୍ଦୋଳନ ଯେଉଁଭଳି ପ୍ରବେଶ କଲା ଓ ଏକ ନୂଆ ଉତ୍ସାହ ଓ ପ୍ରେରଣା ସୃଷ୍ଟି ହେଲା, ସେଥିରେ ଦିଲ୍ଲୀ ସିଂହାସନର ସବୁ ବିରୋଧୀ ଶକ୍ତି ଓ ଦଳ କ୍ରମେ ଏହି ଆନ୍ଦୋଳନ ପ୍ରତି ଆକୃଷ୍ଟ ହେବାକୁ ଲାଗିଲେ । ଏପରି କି କ୍ଷମତାପ୍ରୟାସୀ ରାଜନୀତିକ ଦଳ ଓ ବ୍ୟକ୍ତିବିଶେଷ, ଯେଉଁମାନଙ୍କର ଜୟପ୍ରକାଶଙ୍କର ମୌଳିକ ନୀତି ପରିବର୍ତ୍ତନ ସହ କୌଣସି ପ୍ରକାର ସମର୍ଥନ ନ ଥିଲା, ସେମାନେ ବି ଇନ୍ଦିରା ଗାନ୍ଧୀ ଓ କଂଗ୍ରେସକୁ ପଦଚ୍ୟୁତ କରିବାର ଏହା ଏକ ଆୟୁଧ ହୋଇପାରିବ ବୋଲି ବିଚାରକଲେ । ଏଭଳି ଦଳ, ଗୋଷ୍ଠୀ, ଶକ୍ତି ଓ ବ୍ୟକ୍ତି ଏକତ୍ର କୌଣସି ମିଳିତ ସଂଗଠନ ତିଆରି କରି ନଥିଲେ; ମାତ୍ର ଭାରତର ରାଜନୀତିକ ଆକାଶରେ ଦିଲ୍ଲୀ କେନ୍ଦ୍ର ଶାସନର ବିରୋଧୀ ରାଜନୀତିକ ଶକ୍ତି ଓ ଲୋକଶକ୍ତିର ଏକ ମହା ସଙ୍ଗମ ସ୍ଥଳ ଉଦ୍ଭବ ହେବାର ସକଳ ପୂର୍ବଲକ୍ଷଣ ଗୋଚରକୁ ଆସିଗଲା । ଏହା ଭାଙ୍ଗିଯିବାର କିମ୍ବା ଏଥିରେ ଭେଦ ପୂରାଇବା ଭଳି ସମ୍ଭାବନା କମ୍ ରହିଥିଲା ।

ଏହା କିଛି ହିଂସା ବା ଅସ୍ତ୍ରଶସ୍ତ୍ରର ଲଢ଼ାଇ ନୁହେଁ—ଏକ ରାଜନୀତିକ ସଂଗ୍ରାମ—ଏହାର କୌଶଳ ମଧ୍ୟ ସେହି ପ୍ରକାର ହେବା ଉଚିତ । ନୈତିକ ଦୃଷ୍ଟିରୁ କିମ୍ବା ତାଙ୍କୁ କେବଳ ଗାଦିଚ୍ୟୁତ କରିବା ଅଭିପ୍ରାୟରେ ହେଉଛି ବୋଲି ଦୋଷାରୋପ କରି ସେ ଭାବରେ ଜନମତକୁ ନିଜ ଆଡ଼କୁ ଟାଣିବାର ପ୍ରାଥମିକ ପ୍ରଚେଷ୍ଟା ଇନ୍ଦିରା ଗାନ୍ଧୀଙ୍କୁ ତ୍ୟାଗ କରିବାକୁ ପଡ଼ିଲା; ଏ ପ୍ରାରମ୍ଭିକ ମନସ୍ତାତ୍ତ୍ୱିକ ବାଦ-ବିସମ୍ବାଦରେ ସେ ପରାଜୟ ଲଭିଲେ ଏବଂ ଜୟପ୍ରକାଶ ଆପଣାର ନେତୃତ୍ୱ ଓ ରାଜନୀତିକ ସ୍ଥିତିକୁ ଦୃଢ଼ରୁ ଦୃଢ଼ତର କରିବାରେ ସଫଳ ହେଲେ ।

ତେଣୁ ଇନ୍ଦିରା ଗାନ୍ଧୀ ଜୟପ୍ରକାଶଙ୍କ ଆନ୍ଦୋଳନକୁ ଏକ ଆନ୍ତର୍ଜାତିକ ଷଡ଼ଯନ୍ତ୍ରର ଭାରତୀୟ ଅଭିବ୍ୟକ୍ତି ଏବଂ ପ୍ରତିଷ୍ଠିତ ଶାସନ ସଂସ୍ଥାକୁ ଅସ୍ଥିର କରିବା ଲାଗି କରାଯାଉଛି ବୋଲି ନୂତନ ସ୍ଲୋଗାନ୍ ଉଠାଇଲେ । ବିଶେଷଭାବରେ ଚିଲି ଓ ଅନ୍ୟାନ୍ୟ ଦେଶରେ ହୋଇଥିବା ଘଟଣାବଳୀକୁ ବାରମ୍ବାର ପ୍ରଚାର କରାଗଲା । ଲେଖକର ଏବେ ବି ସ୍ମରଣ ପଡ଼ୁଛି, ଇନ୍ଦିରା ଗାନ୍ଧୀ ତାଙ୍କୁ କହିଥିବାର ଯେ, ଜୟପ୍ରକାଶଜୀ ମୋର ରକ୍ତ ଚାହାଁନ୍ତି (He is after my blood) । ଏ ଆନ୍ତର୍ଜାତିକ ଷଡ଼ଯନ୍ତ୍ରର ଲକ୍ଷ୍ୟ ନୁହେଁ, କେବଳ ପ୍ରତିଷ୍ଠିତ ଶାସନକୁ ଗାଦିଚ୍ୟୁତ କରିବାର କିମ୍ବା ଶାସନମୁଖ୍ୟଙ୍କୁ ନିହତ କରିବାର ଏମାନେ ସକଳ ପ୍ରକାର ପ୍ରଗତିମୂଳକ କାର୍ଯ୍ୟ ବ୍ୟାହତ କରିବାକୁ ଚାହାଁନ୍ତି । ଭାରତକୁ ଏକ ପ୍ରଗତିକାମୀ ଓ ପ୍ରଗତିପଥଗାମୀ ରାଷ୍ଟ୍ରରୂପେ ଗଣ୍ୟ କରାଯାଉଥିଲା । ଇନ୍ଦିରା ଗାନ୍ଧୀ, ତାଙ୍କ ସରକାର ଓ ଦଳ ତରଫରୁ ଏହି ପ୍ରଚାରକୁ ଭିତ୍ତି କରି ଜୟପ୍ରକାଶ ଏକ ଫାସିଷ୍ଟ ଓ ପ୍ରତିକ୍ରିୟାଶୀଳ ଆନ୍ଦୋଳନର ନେତୃତ୍ୱ ନେଇଛନ୍ତି ବୋଲି ଚିତ୍ରଣ କରାଗଲା । ଫାସିଜିମ୍ ବୋଇଲେ ଯାହା ରାଜନୀତିଶାସ୍ତ୍ରରେ ଜଣାପଡ଼ୁଛି ଏବଂ ଯାହାର କିଛି ଦୃଷ୍ଟାନ୍ତ ବିଶ୍ୱ-ଇତିହାସରେ ରହିଛି, ତାହା ପୂରାପୂରି ପ୍ରତିଷ୍ଠିତ ଶାସନଶକ୍ତି ସହିତ ସଂପୃକ୍ତ । ଶାସନ ବାହାରେ ଲୋକ-ଆନ୍ଦୋଳନ କିଭଳି ଫାସିଷ୍ଟ ହେବ ବା ତାକୁ ସେଭଳି ନାମ ଦିଆଯାଇପାରିବ, ତାହା ଏକ ବିଚିତ୍ରିତ ବିଷୟ ।

ଏତିକିବେଳେ ସୋଭିଏତ୍ ରୁଷିଆର କମ୍ୟୁନିଷ୍ଟ ପାର୍ଟି ମୁଖପତ୍ର 'ପ୍ରଭ୍‌ଦା'ର ସଂପାଦକୀୟ ସ୍ତମ୍ଭରେ ଜୟପ୍ରକାଶଙ୍କ ଆନ୍ଦୋଳନର ତୀବ୍ର ସମାଲୋଚନା ପ୍ରକାଶ ପାଇଥିଲା । ଗୋଟିକରେ—ବିହାର ଆନ୍ଦୋଳନର ମଧ୍ୟଭାଗରେ—ସ୍ପଷ୍ଟ ଉଲ୍ଲେଖ କରାଗଲା ଯେ, ଜୟପ୍ରକାଶ ହେଉଛନ୍ତି 'ଏକ ବିପ୍ଳବବିରୋଧୀ ପ୍ରତିକ୍ରିୟାବାଦୀ' ଏବଂ ଏହାଙ୍କ ଆନ୍ଦୋଳନକୁ ପ୍ରଶ୍ରୟ ଦିଆଗଲେ ଦିଲ୍ଲୀରେ ରହିଥିବା 'ଗଣତାନ୍ତ୍ରିକ ଶାସନ'ର ଉତ୍ପାଟନ ହେବ ଏବଂ ନାନାପ୍ରକାର ଅସ୍ଥିର ପରିସ୍ଥିତି ସୃଷ୍ଟି ହୋଇ ଦେଶ ଅରାଜକତା ଆଡ଼କୁ ଗତିକରିବ ଏବଂ ପ୍ରଗତି ବ୍ୟାହତ ହେବ । ସେମାନେ ଆନ୍ଦୋଳନର ଉଦ୍ଦେଶ୍ୟ ବା ତା'ର ତାତ୍ତ୍ୱିକ ଆଲୋଚନା ନ କରି ଦିଲ୍ଲୀଶାସନକୁ ଦୁର୍ବଳ କରିବାର ଉଦ୍ୟମକୁ ପଣ୍ଡ କରିବା ନିମନ୍ତେ ଆହ୍ୱାନ ଦେଲେ । ପ୍ରଭ୍‌ଦାର ଏଭଳି ମନ୍ତବ୍ୟ ପ୍ରକାଶର ଅବ୍ୟବହିତ ପୂର୍ବରୁ ଏବଂ ପରେ ରୁଷିଆର ଏକ

ରାଜନୀତିକ ଏଜେଣ୍ଟରୂପେ ଏଠାରେ ବରାବର କାର୍ଯ୍ୟ କରୁଥିବା ଏବଂ ୧୯୬୯ ମସିହାଠାରୁ ଇନ୍ଦିରା ଗାନ୍ଧୀଙ୍କର ପ୍ରଧାନ ସହଯୋଗୀ ରୂପେ ରହିଥିବା ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଖୁବ୍ କର୍ମତତ୍ପର ହୋଇଉଠିଲା ।

ସୋଭିଏଟ୍ ରୁଷ୍ ଓ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ପକ୍ଷରେ ଏଭଳି ଶକ୍ତ ବିରୋଧ ଆଚରଣ ନେବା ପଛରେ ଏକ ସୈଦ୍ଧାନ୍ତିକ କାରଣ ମଧ୍ୟ ରହିଲା—ରାଜନୀତିକ ଗବେଷଣା ବା ଅନୁସନ୍ଧାନ କରୁଥିବା ଯେ କୌଣସି ବ୍ୟକ୍ତି ଏହା ଅନୁଧ୍ୟାନ କରିପାରିବ । ଜୟପ୍ରକାଶ ଏ ଆନ୍ଦୋଳନରେ ଯେଉଁ ଉଦ୍ଦେଶ୍ୟ, ଲକ୍ଷ୍ୟ ଏବଂ ଏହା ପ୍ରାପ୍ତିର ଯେଉଁ ନୂତନ ଗଣତାନ୍ତ୍ରିକ ବିଦ୍ରୋହର କୌଶଳ ପ୍ରୟୋଗ କଲେ, ତାହା ସାରା ଏକଚ୍ଛତ୍ରବାଦୀ କମ୍ୟୁନିଜିମ୍ ମତବାଦ ପ୍ରତି ହେଲା ଏକ ବଡ଼ ଚ୍ୟାଲେଞ୍ଜ୍ । ଜୟପ୍ରକାଶ ଲିଖିତ ଭାବରେ ସ୍ପଷ୍ଟ ଘୋଷଣା କଲେ :

"ମୋର ଲକ୍ଷ୍ୟରେ ପରିବର୍ତ୍ତନ ହୋଇନାହିଁ—ଯୁବାବସ୍ଥାରେ ଯାହା ଥିଲା, ଏବେ ବି ତାହାହିଁ ରହିଛି । ସୋସାଲିଜିମ୍ କିମ୍ବା କମ୍ୟୁନିଜିମ୍ ଯେଉଁ ସମାଜ ଚାହେଁ, ସେହି ଲକ୍ଷ୍ୟ ସ୍ଥାପନା କରିବା ହେଉଛି ମୋର ଉଦ୍ଦେଶ୍ୟ । ଏ ସମାଜ ହେବ ଶୋଷଣହୀନ, ଶ୍ରେଣୀହୀନ ଏବଂ ଅବଶେଷରେ ରାଷ୍ଟ୍ରହୀନ (ଏହାହିଁ କମ୍ୟୁନିଜିମ୍‌ର ଅନ୍ତିମ ଲକ୍ଷ୍ୟ ବୋଲି ମାର୍କସ୍‌ଙ୍କ ପୁସ୍ତିକାରେ ଉଲ୍ଲେଖ ଅଛି) । ଆର୍ଥିକ ବୈଷମ୍ୟ ସଂପୂର୍ଣ୍ଣଭାବରେ ଲୋପ ନ ହୋଇ ପାରିଲେ ସୁଦ୍ଧା ଏହାର ତାରତମ୍ୟ ଊଣା କରିଦିଆଯିବ ଯେଭଳିକି ୧ ରୁ ୫ କିମ୍ବା ୧ ରୁ ୩ ଭିତରେ ବ୍ୟବଧାନ ରହେ ।"

ଏହା ପ୍ରାପ୍ତିର ପନ୍ଥା ସମ୍ବନ୍ଧରେ ଲୋକମନରେ କୌଣସି ସନ୍ଦେହ ନ ରଖି ସେ ଲେଖିଲେ :

"ଏହା ଏକ ବୈପ୍ଳବିକ ଆନ୍ଦୋଳନ—ଏ ସମ୍ବନ୍ଧରେ କାହାର ମନରେ ତିଳେ ହେଲେ ସନ୍ଦେହ ନ ରହୁ । ଯେ ଭାବୁଛନ୍ତି, ଏହା ଶାନ୍ତିପୂର୍ଣ୍ଣ କାର୍ଯ୍ୟକ୍ରମ ହୋଇଥିବାରୁ ବିପ୍ଳବମୂଳକ ହୋଇପାରେନା, ସେମାନଙ୍କର ଅକଲ କମ୍ ବା ବୁଝିବା ଶକ୍ତି ଊଣା ବୋଲି ମୁଁ କହିବି । କେବେ ହେଲେ ଏ ଭୁଲ କରନା ଏବଂ ଏଭଳି ଚିନ୍ତା ମନରେ ପ୍ରବେଶ ନକରୁ ଯେ, ଏକ ସାମାଜିକ, ଆର୍ଥନୀତିକ, ରାଜନୀତିକ, ନୈତିକ ଓ ସାଂସ୍କୃତିକ ବିପ୍ଳବ ବିନା ଦୁର୍ନୀତି ଓ ବେକାର ସମସ୍ୟା ନିରାକରଣ, ଅତ୍ୟଧିକ ମୂଲ୍ୟର ହ୍ରାସ ଏବଂ ପ୍ରଚଳିତ ଶିକ୍ଷା-ବ୍ୟବସ୍ଥାର ଆମୂଳଚୂଳ ପରିବର୍ତ୍ତନ ସମ୍ଭବ ହୋଇ ପାରିବ । ଅତୀତରେ ବହୁ ବିପ୍ଳବ ହୋଇଛି ହିଂସାମୂଳକ ପନ୍ଥାରେ । ଏଥିରେ ଦେଶଗୁଡ଼ିକରେ ଭଲ ମନ୍ଦ ଉଭୟ ଫଳ ମିଳିଛି ଓ ବନ୍ଧୁକମୁନରୁ ଯେ ଶକ୍ତି ବାହାରୁଛି ବୋଲି କହିଥିଲେ, ତାହା ତାଙ୍କର ଏକ ଯଥାର୍ଥ ଉକ୍ତି । କିନ୍ତୁ ସେଥିରେ ଯେଉଁମାନଙ୍କ ପାଖରେ ବନ୍ଧୁକ ଥିବ, ସେହିମାନଙ୍କ ହାତକୁ ଶକ୍ତି ଆସିବ । ଲୋକଙ୍କ ହାତରେ ବନ୍ଧୁକ ନାହିଁ । ଯେଉଁମାନଙ୍କ ପାଖରେ ବନ୍ଧୁକ ରହିଛି, ସେମାନେ ଲୋକଙ୍କ ନାମରେ ବିପ୍ଳବ କରନ୍ତି ଏବଂ ଶେଷକୁ ନିଜର ରାଜୁତି ସ୍ଥାପନା କରନ୍ତି ।

ହିଂସା ଜରିଆରେ ପ୍ରକୃତ ଲୋକବିପ୍ଲବ ହୋଇପାରେନା । ଏହା କେବଳ ଶାନ୍ତିପୂର୍ଣ୍ଣ ଉପାୟରେ ହୋଇପାରିବ ଏବଂ ଲୋକମାନେ ନିଜେ ସେ ବିପ୍ଳବ କରିବେ ।"

ଏ ଉକ୍ତିର ଗୂଢ଼ ଓ ସୁଦୂରପ୍ରସାରୀ ତାତ୍ପର୍ଯ୍ୟ ଆଉ କେହି ବୁଝିନବୁଝି, ରୁଷ ଏବଂ ପୃଥିବୀର କମ୍ୟୁନିଷ୍ଟ ପାର୍ଟି ବୁଝିଥିଲେ । ଜୟପ୍ରକାଶଙ୍କ ଆନ୍ଦୋଳନର ସଫଳତାରେ ଖାଲି ଇନ୍ଦିରା ଗାନ୍ଧୀଙ୍କର ଗାଦିଚ୍ୟୁତି ଘଟିବ ନାହିଁ; ଭାରତ ପରି ଏକ ବୃହତ୍ ଲୋକସଂଖ୍ୟା-ବିଶିଷ୍ଟ ବିରାଟ ଦେଶରେ ଏହା ସଫଳ ହେଲେ ଏକଛତ୍ରବାଦରେ ବିଶ୍ୱାସୀ ଏବଂ ହିଂସା-ପନ୍ଥାରେ ଗ୍ରଳିତ ସମସ୍ତ ପ୍ରକାର ତଥ୍ୟ, ପ୍ରତିଷ୍ଠିତ ବ୍ୟବସ୍ଥା ଓ ଶାସନ ଟଳମଟଳ ହୋଇଯିବ । ମହାତ୍ମା ଗାନ୍ଧୀଙ୍କର ସ୍ୱାଧୀନତା ଓ ମୁକ୍ତି ନିମନ୍ତେ ହୋଇଥିବା ଶାନ୍ତିପୂର୍ଣ୍ଣ ବିଦ୍ରୋହ ଯେପରି ପୃଥିବୀର ସବୁ ପରାଧୀନ ଦେଶକୁ ନୂତନ ଆଲୋକ ଦେଖାଇଲା, ସାମାଜିକ ଓ ଅର୍ଥନୀତି କ୍ଷେତ୍ରରେ ଲୋକଶକ୍ତି ଓ ଗଣତନ୍ତ୍ରର ଏଭଳି ପ୍ରତିଷ୍ଠା ସେପରି ଏକ ବଡ଼ ବିପଦରୂପେ ଦେଖାଦେବ । ତେଣୁ କମ୍ୟୁନିଷ୍ଟମାନେ ଏଥିରେ ଅଧିକ ବିଚଳିତ ହେବା ସ୍ୱାଭାବିକ । ପରବର୍ତ୍ତୀକାଳରେ ପାଟନାଠାରେ ଯେ ତଥାକଥିତ ବିଶ୍ୱ ଫାସିଷ୍ଟ-ବିରୋଧୀ ସମ୍ମିଳନୀ ହୋଇଥିଲା ଏବଂ ସେଥିକୁ ପୃଥିବୀର ପ୍ରାୟ ସବୁ କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧି ଆସିଥିଲେ, ତାହା ଏଭଳି ବିପଦ ଆଶଙ୍କାର ଆଉ ଏକ ଉଦାହରଣ ।

ଏମର୍ଜେନ୍ସି କେମିତି ଓ କିଏ କରାଇଥିଲା, ସେ ବିଷୟରେ ଆଲୋଚନା କରିବାକୁ ଯାଇ ଜୟପ୍ରକାଶ ତାଙ୍କ କାରାଗାର କାହାଣୀରେ ଉଲ୍ଲେଖ କରିଛନ୍ତି ଯେ—୧୯୭୫ ଜୁନ୍ ୨୫ ତାରିଖ ପର୍ଯ୍ୟନ୍ତ ଆମ ଦେଶରେ ଯେଉଁ ଗଣତାନ୍ତ୍ରିକ ବ୍ୟବସ୍ଥା ରହିଥିଲା, ତା ବଦଳରେ ଏକ ଏକଛତ୍ରବାଦୀ ବ୍ୟବସ୍ଥାର ବିସ୍ତୃତ ଯୋଜନା ସୋଭିଏଟ ଏଜେଣ୍ଟମାନେ ପ୍ରସ୍ତୁତ କରିଥିବେ । ଘଟଣାବଳୀ ଯେଭଳି ଗତିକରିଛି, ସେଥିରେ ଏଭଳି ମନ୍ତବ୍ୟର ସତ୍ୟତାକୁ ଅସ୍ୱୀକାର କରିବା ସମ୍ଭବ ନୁହେଁ । ଅବଶ୍ୟ ସାହା କମିଶନ କେଉଁ କାରଣରୁ ଏମର୍ଜେନ୍ସି ଘଟିଲା ଓ କିଭଳି ହେଲା ତାହାର ଯେଉଁ ଅନୁସନ୍ଧାନ କରୁଛନ୍ତି, ତାହା ଏ ଦିଗକୁ ବିଚାରକୁ ନେଉଛନ୍ତି କି ନା ଜଣାନାହିଁ ।

ସୋଭିଏଟ୍ ରୁଷ ଓ ଅନ୍ୟ କମ୍ୟୁନିଷ୍ଟ ପାର୍ଟିଗୁଡ଼ିକର ଏ ଦୃଷ୍ଟିଭଙ୍ଗୀ ଇନ୍ଦିରା ଗାନ୍ଧୀଙ୍କୁ ଜୟପ୍ରକାଶ-ବିରୋଧୀ ତଥାକଥିତ ପ୍ରଗତିପନ୍ଥୀମାନଙ୍କୁ ଏକତ୍ର କରାଇବାରେ ସାହାଯ୍ୟ କଲା । କମ୍ୟୁନିଷ୍ଟ ପାର୍ଟିରୁ ନିର୍ଦ୍ଦେଶ ଆସିଲା—ଇନ୍ଦିରାଙ୍କ ଦଳୀ-ବିରୋଧୀପକ୍ଷ ହେଉଛି କମ୍ୟୁନିଷ୍ଟ ବିରୋଧୀ ପକ୍ଷ; ଏହାର ପ୍ରବଳ ବିରୋଧ କରିବାକୁ ପଡ଼ିବ ଏବଂ ଦଳୀ ଗାଦୀ ଯେପରି ଇନ୍ଦିରାଙ୍କ ହାତରେ ସୁଦୃଢ଼ ଓ ନିରାପଦ ରହେ ସେଥି ନିମନ୍ତେ ସକଳପ୍ରକାର ପନ୍ଥା—ବୈଧାନିକ ଓ ଅବୈଧାନିକ ଉପାୟ ଅବଲମ୍ବନ କରିବାକୁ ପଡ଼ିବ । କମ୍ରେଡ଼ ଡାଙ୍ଗେ ଜୟପ୍ରକାଶଙ୍କୁ ପ୍ରତ୍ୟକ୍ଷ ଆକ୍ରମଣ କରି କମ୍ୟୁନିଷ୍ଟ ଅହିଂସାରେ ବିଶ୍ୱାସ କରନ୍ତି ନାହିଁ ବୋଲି ଯେଉଁ ଧମକ ଦେଇଥିଲେ, ତାହା ନିଶ୍ଚୟ ଏହି ନିର୍ଦ୍ଦେଶକୁ ଆଜ୍ଞାବହ ଭାବରେ ନିଷ୍ଠାସହକାରେ ପାଳନ କରିବା ନିମନ୍ତେ ।

'ପ୍ରଭ୍‌ଦା'ର ଏହି ମନ୍ତବ୍ୟ, ରୁଷର କମ୍ୟୁନିଷ୍ଟ ପାର୍ଟିର ନିର୍ଦ୍ଦେଶ ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରକାଶ୍ୟ ବିରୋଧ ପରେ କଂଗ୍ରେସରେ ଥିବା କମ୍ୟୁନିଷ୍ଟ-ସମର୍ଥକ ଓ କମ୍ୟୁନିଷ୍ଟ ପାର୍ଟିର ଲୁଚୁଛପା ସଭ୍ୟ ଅତି ମୁଖର ହୋଇପଡ଼ିଲେ । ୧୯୭୪ ଜୁଲାଇ ୨୬ ତାରିଖରେ ଶଶୀଭୂଷଣ, ଏଚ୍. ଡ଼ି. ମାଳବ୍ୟ, ଓ୍ୱାଇଲର ରବି ଏବଂ ଉନ୍ନିକୃଷ୍ଣନଙ୍କ ପରି ଜଣାଶୁଣା କମ୍ୟୁନିଷ୍ଟ ପକ୍ଷବାଦୀ କଂଗ୍ରେସଦଳର ପାର୍ଲିମେଣ୍ଟ ସଦସ୍ୟମାନେ ବିବୃତି ଦେଇ କହିଲେ, ଜୟପ୍ରକାଶ ନାରାୟଣ ଦେଶରେ ଏକତା ଭଙ୍ଗ କରୁଛନ୍ତି ଏବଂ ବିବାଦ ସୃଷ୍ଟି କରୁଛନ୍ତି । ଫଳସ୍ୱରୂପ ଭାରତରେ ଫାସିଷ୍ଟଙ୍କ ହାତରେ କ୍ଷମତା ସମର୍ପିଦେବା ନିମନ୍ତେ ତାଙ୍କର ଏଜେଣ୍ଟ ସ୍ୱରୂପ ସେ କାର୍ଯ୍ୟ କରୁଛନ୍ତି ।

ସେହି ଜୁଲାଇ ମାସରେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ବୈଠକ ଡକାଯାଇ, ଜୟପ୍ରକାଶଙ୍କ ଆନ୍ଦୋଳନ ଅଗଣତାନ୍ତ୍ରିକ ଏବଂ ଅବୈଧାନିକ-ପ୍ରତିକ୍ରିୟାପନ୍ଥୀ ଓ ଅନ୍ୟ ତତ୍ତ୍ୱ-ବାଦୀସବୁ ଏକଜୁହୋଇ ଦେଶରେ ଗଣତନ୍ତ୍ର ପଦ୍ଧତି ଧ୍ୱଂସ କରିବା ନିମନ୍ତେ ଏବଂ ପ୍ରତିଷ୍ଠିତ ସରକାରୀ ଶାସନତନ୍ତ୍ରକୁ ଅଚଳ କରିଦିବା ନିମନ୍ତେ ହିଂସା ପନ୍ଥାର ଆଶ୍ରୟ ନେଇ ଆନ୍ଦୋଳନ କରୁଛନ୍ତି ବୋଲି ପ୍ରସ୍ତାବ ଗୃହୀତ ହେଲା । ଏହି ଆନ୍ଦୋଳନର ମନ୍ଦ ପରିସ୍ଥିତି ବିଷୟ ବିଶେଷଭାବରେ ଗ୍ରାମ ଯୁବକଙ୍କ ଭିତରେ ପ୍ରଚାର କରିବା ନିମନ୍ତେ କଂଗ୍ରେସ କର୍ମୀମାନଙ୍କୁ ନିବେଦନ କରାଗଲା । ଦେଶରେ ରାଜନୀତିକ ସ୍ତରରେ ଅସ୍ଥିରତା ସୃଷ୍ଟି କରିବା ନିମନ୍ତେ କାର୍ଯ୍ୟ କରୁଥିବା ଶକ୍ତି ଓ ବ୍ୟକ୍ତିମାନଙ୍କ ପ୍ରତି ସତର୍କ ରହିବା ନିମନ୍ତେ ଦେଶବାସୀଙ୍କୁ ଆହ୍ୱାନ କରାଗଲା । କଂଗ୍ରେସ ଲୋକଙ୍କ ଭିତରେ ଏ ପ୍ରସ୍ତାବରେ ଯେ ସମ୍ମତି ଥିଲା, ଏପରି ନୁହେଁ । ବହୁ କଂଗ୍ରେସ ଲୋକଙ୍କର ଜୟପ୍ରକାଶଙ୍କ ଆନ୍ଦୋଳନ ପ୍ରତି ସହାନୁଭୂତି ଥିଲା ଏବଂ ଆଉ କେତେକ ପ୍ରସ୍ତାବର ବିରୋଧୀ ଥିଲେ ମଧ୍ୟ, ପ୍ରସ୍ତାବ ବିରୁଦ୍ଧରେ ମତ ଦେବା ନିମନ୍ତେ ସେମାନେ ସମର୍ଥ ନଥିଲେ । ତେଣୁ ମୋଟାମୋଟି କଂଗ୍ରେସ ସଂଗଠନକୁ ମଧ୍ୟ ଏହି ଆନ୍ଦୋଳନର ସମ୍ମୁଖୀନ ହେବା ନିମନ୍ତେ ତତ୍ପର କରାଗଲା । କଂଗ୍ରେସ ଓ ଭାରତୀୟ କମ୍ୟୁନିଷ୍ଟ ଦଳ ବ୍ୟତୀତ ଆଉ କୌଣସି ସଂଗଠିତ ରାଜନୈତିକ ଦଳ ପ୍ରକାଶ୍ୟ ବିରୋଧ ଲାଗି ମିଳିତ ହୋଇ ନଥିଲେ । ମାର୍କସପନ୍ଥୀ କମ୍ୟୁନିଷ୍ଟଙ୍କୁ ଏହା ସାଥିରେ ଯୋଡ଼ିବା ଲାଗି କିଛି ଉଦ୍ୟମ ହୋଇଥିଲା । ସେମାନେ ମଧ୍ୟ ଆନ୍ଦୋଳନରେ ଜଡ଼ିତ ହୋଇ ନ ଥିଲେ । ତାଙ୍କ ସମ୍ବନ୍ଧରେ ଜୟପ୍ରକାଶ କହିଛନ୍ତି :

"ମୋର ବନ୍ଧୁ ମାର୍କସବାଦୀ କମ୍ୟୁନିଷ୍ଟମାନଙ୍କର ଅଭିଯୋଗ ଯେ, ଏହି ଆନ୍ଦୋଳନ ଆଗରେ କିଛି ଆଦର୍ଶବାଦ ନାହିଁ ଏବଂ ଏହାର କୌଣସି ସ୍ପଷ୍ଟ ସାମାଜିକ-ଆର୍ଥନୀତିକ ଲକ୍ଷ୍ୟ ନାହିଁ । କିନ୍ତୁ ଏହା ତ କିଛି ଏକ ରାଜନୀତିକଦଳ ନୁହେଁ ଯେ ଏଥିରେ ଏକ ନୀତିନିର୍ଦ୍ଧାରିକ ଘୋଷଣା ରହିବ ଏବଂ ବିପ୍ଳବ ଆଡ଼କୁ ଗତି କରିବା ବିଷୟରେ ଏକ ବିସ୍ତୃତ ଖସଡ଼ା ଆଗରୁ ପ୍ରସ୍ତୁତ ହୋଇ ରଖାଯାଇଥିବା ! ଏଭଳି ଭାବରେ କେବେ ବିଦ୍ରୋହ ହୁଏ ନାହିଁ; ଏହା ମୂଲ୍ୟହୀନ ଏବଂ ଅବାସ୍ତବ ଯୁକ୍ତି । ଏହା ଏକ ଜନ-ଆନ୍ଦୋଳନ; ଛାତ୍ରମାନେ ଆରମ୍ଭ କରିଛନ୍ତି

ଏବଂ ସେମାନେ ଅସଲ ବୋଝ ବହନ କରିଚାଲିଛନ୍ତି । ଲୋକମାନେ ନିବିଡ଼ଭାବରେ ଜଡ଼ିତ ରହିଥିବା ବାସ୍ତବ ବୈପ୍ଳବିକ ଆନ୍ଦୋଳନକୁ ଗୋଟିଏ ଲେଖାଁ ପଦକ୍ଷେପରେ ଗଠ କରିବାକୁ ପଡ଼ିବ । ପରିସ୍ଥିତିକୁ ଦେଖି ପୁଣି ପରବର୍ତ୍ତୀ ପଦକ୍ଷେପରେ କିଭଳି କାର୍ଯ୍ୟକ୍ରମ ନେବାକୁ ପଡ଼ିବ, ତାହା ଏହି ଆନ୍ଦୋଳନ ହିଁ ସ୍ଥିରକରିବ ।

ମାର୍କସ୍‌ବାଦୀ କମ୍ୟୁନିଷ୍ଟମାନେ ଏକ ଧରିବନ୍ଧା ଗତାନୁଗତିକ ବିପ୍ଳବର ପଥିକ । ସେମାନେ ନୂତନ କିଛି ସୃଷ୍ଟି କରିବା ଅବସ୍ଥାରେ ନାହାନ୍ତି କିମ୍ବା ଆମର ମୌଳିକ ପରିସ୍ଥିତିକୁ ଲକ୍ଷ୍ୟ ରଖି ସେମାନଙ୍କର ନୀତି ନିର୍ଦ୍ଧାରଣ ହୁଏନାହିଁ । ମାତ୍ର ଏ ବିଷୟରେ ସେମାନଙ୍କ ମନରେ ଯାହା ସନ୍ଦେହ ଥାଉ ପଛକେ, ଇନ୍ଦିରା ଗାନ୍ଧୀ ସପକ୍ଷ ଗୋଷ୍ଠୀ ଭିତରକୁ ପ୍ରଗତିବାଦର ନାମ ଦେଇ ସେମାନଙ୍କୁ ଟାଣିଆଣିବା ସମ୍ଭବ ହୋଇପାରିନଥିଲା ।

କିନ୍ତୁ ଏହି ଦଳୀ ସପକ୍ଷ ବିପକ୍ଷ ଭିଡ଼ାଭିଡ଼ିରେ ଇନ୍ଦିରା ଗାନ୍ଧୀ ଆଉ ଏକ କାର୍ଯ୍ୟରେ କିଞ୍ଚିତ୍ ପରିମାଣରେ ସଫଳତା ହାସଲ୍ କଲେ—ତାହା ହେଉଛି ସର୍ବ-ସେବା-ସଙ୍ଘ-ଶିବିରରେ ବିଭାଜନ । ଏପ୍ରିଲ୍ ମାସରେ ସେ ଯାହା ଆରମ୍ଭ କରିଥିଲେ, ତାହା ବୃଥା ହୋଇଥିଲା ଏବଂ ଯେଉଁ ବିଷୟ ଘେନି ବିନୋବା ଜୟପ୍ରକାଶଙ୍କ କାର୍ଯ୍ୟକୁ ନାପସନ୍ଦ କରୁଛନ୍ତି ବୋଲି ପ୍ରକାଶ୍ୟରେ କହିପକାଇଥିଲେ, ତାହା ସତ୍ୟ ନୁହେଁ ବୋଲି ବିନୋବା ବିବୃତି ଦେଇ-ଦେବାରୁ ସେ ଟିକିଏ ଅଡ଼ୁଆରେ ପଡ଼ିଯାଇଥିଲେ । ମାତ୍ର ଏହି ଆନ୍ଦୋଳନ ଲୋକସମର୍ଥନ ପାଇ ବିରାଟ ଆକାର ଧାରଣ କଲାରୁ ଏବଂ ଦଳୀ ଶାସନ ଓରଫ୍ ଇନ୍ଦିରା ନେତୃତ୍ୱ ବିରୋଧୀ ପାଲଟିବାରୁ ସର୍ବ-ସେବା-ସଙ୍ଘ ଭିତରେ ଏକ ନୂତନ ବିବାଦ ଉପସ୍ଥିତ ହେଲା । ସର୍ବ-ସେବା ସଙ୍ଘ ଏକ ନିର୍ଦ୍ଦଳୀୟ ସଂଗଠନ—ଜୟପ୍ରକାଶଙ୍କ ଆନ୍ଦୋଳନ ଏକ ରାଜନୀତିକ ସରକାର-ବିରୋଧୀ ଆନ୍ଦୋଳନ—ପ୍ରତ୍ୟକ୍ଷ ରାଜନୀତିରେ ସର୍ବସେବାସଙ୍ଘ ସଂପୃକ୍ତ ହୋଇପାରିବ ନାହିଁ ବୋଲି ଏକ ପକ୍ଷରୁ ଯୁକ୍ତି ଉଠିଲା । ପ୍ରାୟ ପ୍ରତି ରାଜ୍ୟରେ ସର୍ବୋଦୟ ଗୋଷ୍ଠୀ ଏବଂ ସର୍ବସେବା ସଙ୍ଘ ଭିତରେ ଦୁଇଦଳ ସୃଷ୍ଟି ହେବାପରି ଦେଖାଦେଲା । ଏହି ସୁଯୋଗରେ କଂଗ୍ରେସ (କମ୍ୟୁନିଷ୍ଟ) ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିବାରୁ ଅର୍ଥ ଓ ଅନ୍ୟ ଲାଳସାଗ୍ରସ୍ତ କରାଇ ଓଡ଼ିଶାରୁ ଗୋଟିଏ କ୍ଷୁଦ୍ର ଗୋଷ୍ଠୀକି ସରକାରପକ୍ଷ କରିପାରିଥିଲେ ।

ଏହା ସର୍ବୋଦୟ କର୍ମୀମହଲରେ ଯଦି ସୀମାବଦ୍ଧ ହୋଇ ରହିଥାଆନ୍ତା, ତେବେ କେହି ଏଥିକୁ ଏତେ ଗୁରୁତ୍ୱ ଦେଇ ନ ଥାନ୍ତେ । ମାତ୍ର ବିନୋବାଜୀଙ୍କଠାରୁ ପ୍ରେରଣା ପାଇ ମୁଷ୍ଟିମେୟ ସର୍ବୋଦୟ କର୍ମୀ ସତେ କି ସମଗ୍ର ସର୍ବସେବା-ସଙ୍ଘ ଏହାର ବିରୋଧ କରୁଛି, ଏପରି ଏକ ଆବହାଉଆ ସୃଷ୍ଟି କରିଦେଲେ । ଇନ୍ଦିରା ଗାନ୍ଧୀଙ୍କ ସରକାରର ଇଙ୍ଗିତକ୍ରମେ ସେମାନଙ୍କର ବିବୃତି ଆଦି ବହୁଳ ଭାବରେ ପ୍ରକାଶିତ ଓ ପ୍ରଚାରିତ ହେଲା । ସର୍ବସେବା ସଙ୍ଘର ଏକ ବଡ଼ ଧରଣର ସମ୍ମିଳନୀ ଡକାଯାଇ ଜୟପ୍ରକାଶଙ୍କ ଆନ୍ଦୋଳନରେ ଯୋଗଦାନ ବିପକ୍ଷରେ ନିଷ୍ପତ୍ତି ନେବାର ଉଦ୍ୟମ ହେଲା । ମାତ୍ର ଏଭଳି ସମ୍ମିଳନୀରେ ବିନୋବାଜୀଙ୍କର ପରାଜୟ ହେଲା—ସର୍ବସେବା-ସଙ୍ଘର ଶତକଡ଼ା ୯୦ ସଭ୍ୟ ସରକାରୀ ନିର୍ଯାତନା ବିରୋଧରେ

ଓ ଜନ-ମୁଖରୋଧୀ ଦମନ ବିରୁଦ୍ଧରେ ଆନ୍ଦୋଳନ କରିବା ଏବଂ ଜୟପ୍ରକାଶଙ୍କୁ ସମର୍ଥନ ଦେବା ସପକ୍ଷରେ ମତ ଦେଲେ ।

ଏଥିରେ ଗାନ୍ଧୀଜୀଙ୍କ ପନ୍ଥା, ହିଂସା ଅହିଂସା, ରାଜନୀତିକ ଆନ୍ଦୋଳନରେ ଯୋଗଦାନ ଠିକ୍ କି ଭୁଲ, ଏଇଟା ମୁଖ୍ୟ ସମସ୍ୟା ନ ଥିଲା; ଅସଲ ସମସ୍ୟା ହେଲା ଜରୁରୀପନ୍ଥୀ ହୋଇ ସର୍ବୋଦୟ ଆନ୍ଦୋଳନ ରହିବ, ନା ଜରୁରୀ ଶାସକ-ନେତୃତ୍ୱ ବିରୋଧରେ କାର୍ଯ୍ୟ କରିବ । ଜୟପ୍ରକାଶ ଯାହା ତାଙ୍କ କାରାଗାର କାହାଣୀରେ ଲେଖିଛନ୍ତି :

"ବିନୋବାଜୀ ମୋର ସଂଗ୍ରାମ ପଛରେ ଥିବା ଭାବନା ସହିତ ଏକମତ ଥିଲେ ଏବଂ ତହିଁରେ ମତେ ସାହାଯ୍ୟ କରିବାକୁ ପ୍ରସ୍ତୁତ ଥିଲେ; କିନ୍ତୁ ମତେ ସରକାର ବିରୁଦ୍ଧରେ ସଂଗ୍ରାମରୁ ନିବୃତ୍ତ ହେବାକୁ ଅନୁରୋଧ କଲେ—ପାକିସ୍ତାନର ମନୋଭାବ ଯୋଗୁଁ ଯୁଦ୍ଧ ଲାଗିବାର ସମ୍ଭାବନା ରହିଛି; ତେଣୁ ସରକାର ବିରୁଦ୍ଧରେ ସଂଗ୍ରାମ କରିବା ଠିକ୍ ହେବନାହିଁ । ଆମେରିକା ପାକିସ୍ତାନକୁ ଯୁଦ୍ଧାସ୍ତ୍ର ଯୋଗାଇବାର ଯେ ପ୍ରତିବନ୍ଧ ରଖିଥିଲା ତାହା ପ୍ରତ୍ୟାହାର କରିନଆଗଲାଣି ଏବଂ ଚୀନ ନିଜ ଆଡ଼ୁ ଅତି ଆଗ୍ରହ ଦେଖାଇ ପାକିସ୍ତାନ ପ୍ରତି ମିତ୍ରତାଭାବ ଦେଖାଉଛି । ଏତେବେଳେ ସରକାର ସହିତ ସଂଗ୍ରାମ କଲେ ଦେଶ ଦୁର୍ବଳ ହୋଇଯିବ ।"

ଏହି ଉକ୍ତିରୁ ଏହା ପରିଷ୍କାର ଯେ, ବିନୋବା ଓ ତାଙ୍କର ମୁଷ୍ଟିମେୟ ସର୍ବୋଦୟୀ ସମର୍ଥକ ଜରୁରୀ ପକ୍ଷରେ ଅନ୍ତର୍ଭୁକ୍ତ ହୋଇସାରିଥିଲେ; ସେମାନଙ୍କ ଭିତରୁ କେତେକ ନାନାଭାବରେ ଇନ୍ଦିରାଙ୍କ ପାଖରେ ମୁଣ୍ଡ ବିକିଦେଇଥିଲେ । ଏଭଳି ଅବସ୍ଥାରେ ଏମର୍ଜେନ୍ସି ଘୋଷଣାକୁ ବିନୋବା 'ଅନୁଶାସନ ପର୍ବ' ବୋଲି ବର୍ଣ୍ଣନା କରିବାରେ ବିଚିତ୍ରତା କିଛି ନାହିଁ ।

ତେଣୁ ୧୯୭୪ ମସିହା ଶେଷାର୍ଦ୍ଧ ବେଳକୁ ଦେଶର ରାଜନୀତିକ ଶକ୍ତି ଜରୁରୀ ସପକ୍ଷ ଓ ବିପକ୍ଷ ଏଭଳି ଦୁଇଟି ନିର୍ଦ୍ଦିଷ୍ଟ ଭାଗରେ ବିଭକ୍ତ ହୋଇସାରିଥିଲା ।

# ସହଯୋଗ ନା ସଂଗ୍ରାମ ?

ଦୁଇପକ୍ଷ ଲଢ଼ାଇ ଲାଗି ଥିଆର ହେଲାପରି ସାରା ଦେଶର ରାଜନୀତି ଯେଭଳି ଦୁଇଭାଗ ହେବାକୁ ବସିଲା । ରାଜନୀତିକ ଦ୍ୱନ୍ଦ୍ୱ ଭିନ୍ନ ରୂପ ଧରିଲା । କେତେକ ପରିମାଣରେ ବ୍ୟକ୍ତିଗତ; କାରଣ ଇନ୍ଦିରା ଗାନ୍ଧୀଙ୍କ ମନରେ ଭୀତି ସଞ୍ଚାର କରିଯାଇଥିଲା । ସେ ଯାହାକୁ କହନ୍ତି ଆଗ ମାଡ଼ ଦେବା (offensive)ର ଯେ ଉଦ୍ୟମ କରିଥିଲେ, ସେଥିରେ ସଫଳ ହେଲେ ନାହିଁ; ତଥାପି ଏହାର ପରିଣତି ବ୍ୟକ୍ତିଗତଭାବରେ ତାଙ୍କ ପକ୍ଷରେ ଶୁଭଜନକ ହେବନାହିଁ, ସେ ଭଲରୂପେ ବୁଝିପାରିଥିଲେ ।

ଏଣେ ଏପରି ଭିଡ଼ାଭିଡ଼ି ହେବା ଫଳରେ କେତେକ କଂଗ୍ରେସ ଲୋକେ ବି ଦ୍ୱନ୍ଦ୍ୱରେ ପଡ଼ିଲେ । କମ୍ୟୁନିଷ୍ଟଭାବାପନ୍ନ କଂଗ୍ରେସ ଲୋକେ ବଡ଼ କର୍କଶ ଭାଷାରେ ଜୟପ୍ରକାଶଙ୍କ ଉପରେ ଗାଳିବର୍ଷଣ କରିବାକୁ ଲାଗିଲେ; ବ୍ୟକ୍ତିଗତ ଆକ୍ରମଣ ଓ କୁତ୍ସା ପ୍ରଚାର କରିବାକୁ ପଶ୍ଚାତ୍ପଦ ହେଲେ ନାହିଁ । ଯେଉଁମାନେ ଏ ବିବାଦରେ ଦେଶର କ୍ଷତି ହେବାର ଆଶଙ୍କା କରୁଥିଲେ, ସେମାନେ ଗୋଟାଏ ସମାଧାନର ବାଟ ଖୋଜିଲେ । ଏଥିରେ ମୁଖ୍ୟତଃ ସେତେବେଳର କଂଗ୍ରେସ କାର୍ଯ୍ୟକାରୀ ସମିତି ସଭ୍ୟ ଚନ୍ଦ୍ରଶେଖରଙ୍କର ଉଦ୍ୟମ ଉଲ୍ଲେଖଯୋଗ୍ୟ ଓ ପ୍ରଶଂସାଯୋଗ୍ୟ । ଚନ୍ଦ୍ରଶେଖର, କୃଷ୍ଣକାନ୍ତଙ୍କ ସମେତ ୫୧ ଜଣ କଂଗ୍ରେସ ଏମ୍. ପି. ଏପ୍ରିଲ ୧୦ ତାରିଖରେ କହିଲେ—

"ପ୍ରଧାନମନ୍ତ୍ରୀ ଦେଶର ନେତ୍ରୀ ଏବଂ ତାଙ୍କର ଐତିହାସିକ ଗୁରୁତ୍ୱକୁ ଅସ୍ୱୀକାର କରାଯାଇ ନ ପାରେ । ଆମେ କଂଗ୍ରେସ ଲୋକେ ଏଥିଲାଗି ଗର୍ବ ଅନୁଭବ କରୁ । ଶ୍ରୀ ଜୟପ୍ରକାଶ ନାରାୟଣଙ୍କର ଚରିତ୍ରବତ୍ତା, ନିଷ୍ଠା ଏବଂ ପବିତ୍ର ଦେଶପ୍ରୀତି ଆମ ଦେଶର ସ୍ୱାଧୀନତା ସଂଗ୍ରାମର ଇତିହାସପୃଷ୍ଠାରେ ପ୍ରତିଭାତ ହୋଇ ରହିଛି । ତାଙ୍କର ସାଧୁତା ଏବଂ ତ୍ୟାଗଭାବର ପଟାନ୍ତର ନାହିଁ । ଆଜି ଦେଶର ଏ ସଂକଟଜନକ ପରିସ୍ଥିତିବେଳେ ଦୁଇଟି ରାକ୍ଷସ—ଦାରିଦ୍ର୍ୟ ଓ ଦୁର୍ନୀତି—ଆମର ଗଣତାନ୍ତ୍ରିକ ସଙ୍ଗଠନର ମୂଳ ଉତ୍ପାଟନ କରୁଛନ୍ତି । ଏଭଳି ଅବସ୍ଥାରେ ଏହି ଦୁଇ ମହାନ୍ ଭାରତୀୟ ଇନ୍ଦିରା ଗାନ୍ଧୀ ଓ ଜୟପ୍ରକାଶ ନାରାୟଣଙ୍କ ଭିତରେ ବିବାଦ ଆଦୌ ବାଞ୍ଛନୀୟ ନୁହେଁ । ହୁଏତ ଯେଉଁମାନଙ୍କ ନିକଟରେ ଏ ଜାତିର ସ୍ୱାର୍ଥ ରକ୍ଷା କରିବା ମୂଲ୍ୟହୀନ ମନେହୁଏ କିମ୍ବା ଯେଉଁ ଭ୍ରଷ୍ଟାଚାରୀ ଗୋଷ୍ଠୀ ଜାତୀୟ ସ୍ୱାର୍ଥ ଅପେକ୍ଷା ନିଜର ରକ୍ଷାଲାଗି ଆଶ୍ରୟ ଖୋଜିବୁଲୁଛନ୍ତି, କେବଳ ସେହିମାନେ ହିଁ ଦୁହିଁଙ୍କ ଭିତରେ ଝଗଡ଼ା ଲଗାଇବାକୁ ଚାହିଁବେ । ଆମେ ଏଭଳି ବିବାଦ ମେଣ୍ଟାଇ ଦୁହିଁଙ୍କ ଭିତରେ ଏକ ସହଯୋଗମୂଳକ ବାତାବରଣ ଆଣିବାକୁ ଚାହୁଁ ।"

ଏମିତି ବିହୁସ୍ତରରୁ ସହଯୋଗ ଲାଗି ଏବଂ ଏକ ସଂଗ୍ରାମ ବା ସଙ୍ଘର୍ଷକୁ ଏଡ଼ାଇବା ଲାଗି ଉଦ୍ୟମ ହେଲା । ଚନ୍ଦ୍ରଶେଖର କେବଳ ଏଥିଲାଗି ଇନ୍ଦିରା ଗାନ୍ଧୀଙ୍କ ସହ ଦୁଇଥର ସାକ୍ଷାତ୍ କଲେ ଏବଂ ଜୟପ୍ରକାଶଙ୍କୁ ଯାଇ ଭେଟିଥିଲେ ଓ ଚିଠିପତ୍ର କାରବାର କରିଥିଲେ । ତା' ଫଳରେ ଇନ୍ଦିରା ଗାନ୍ଧୀ ଓ ଜୟପ୍ରକାଶଙ୍କ ଭିତରେ ନଭେମ୍ବର ପହିଲା ତାରିଖରେ କଥାବାର୍ତ୍ତା କରିବା ନିମନ୍ତେ ଭେଟ ହେଲା । ଏ ଭେଟବେଳେ ଅଧିକାଂଶ ସମୟ ଜଗଜ୍ଜୀବନ ରାମ ବି ଉପସ୍ଥିତ ଥିଲେ । ମାତ୍ର ବିହାର ବିଧାନସଭା ଭଙ୍ଗ ବିଷୟରେ କୌଣସି ସମାଧାନର ସୂତ୍ର ବାହାରି ନ ପାରିବାରୁ ଏଭଳି ଆଳାପ-ଆଲୋଚନା କିଛି ଫଳପ୍ରଦ ହେଲାନାହିଁ । ତଥାପି ଏହି ଉଦ୍ୟମ ଜାରି ରହିଲା । କାରଣ କଂଗ୍ରେସ ଏ ଦ୍ୱନ୍ଦ୍ୱ ଭିତରେ ଯେଭଳି ଢଙ୍ଗରେ ଗତିକରୁଛି, ସେଥିରେ କମ୍ୟୁନିଷ୍ଟଙ୍କ ଷଡ଼ଯନ୍ତ୍ରର ଶିକାର ହୋଇଯିବ ଏବଂ କମ୍ୟୁନିଷ୍ଟମାନେ ଏହାର ପୂର୍ଣ୍ଣ ସୁଯୋଗ ଉଠାଇବେ ବୋଲି କେତେକ ଆଶଙ୍କା କରୁଥିଲେ ।

ତତ୍କାଳୀନ କଂଗ୍ରେସ ମନ୍ତ୍ରୀ ମୋହନ ଧାରିଆ ମଧ୍ୟ ଏ ଦିଗରେ ପୂରା ଉଦ୍ୟମ ଚଳାଇଲେ ଏବଂ ଏକ ବିବୃତି ଦେଇ କହିଲେ ଯେ, ଜୟପ୍ରକାଶ ଯେଉଁ ମୌଳିକ ବିଷୟ-ଗୁଡ଼ିକ ଉତ୍ଥାପନ କରିଛନ୍ତି, ସେ ସମ୍ପର୍କରେ ପରସ୍ପର ଭିତରେ ଭେଟ ହୋଇ ଆଲୋଚନା ହେବା ଦରକାର । ସେ ପ୍ରଶ୍ନଗୁଡ଼ିକ ହେଲା—ବେକାରି, ଶିକ୍ଷାପଦ୍ଧତି ଓ ନିର୍ବାଚନ ପଦ୍ଧତିର ପରିବର୍ତ୍ତନ ଓ ସଂଶୋଧନ, ଦୁର୍ନୀତି ନିବାରଣ ଏବଂ ଆମ ଦେଶର ବିକାଶ-ମୂଳକ କାର୍ଯ୍ୟରେ ଛାତ୍ର ଓ ଯୁବକମାନଙ୍କର ପ୍ରତ୍ୟକ୍ଷ ଯୋଗଦାନ ।

ମୋହନ ଧାରିଆଙ୍କ କହିବାନୁସାରେ ସେ ନିଜେ ବିହାର ବିଧାନସଭା ଭଙ୍ଗ-ପ୍ରସ୍ତାବର ବିରୋଧୀ ଏବଂ ସେହିପରି ସ୍କୁଲ କଲେଜ ବର୍ଜନ ପ୍ରସ୍ତାବକୁ ପସନ୍ଦ କରୁନାହାନ୍ତି । ମାତ୍ର ଜୟପ୍ରକାଶ ଯେଉଁସବୁ ସମସ୍ୟା ଉତ୍ଥାପନ କରିଛନ୍ତି, ଆମେ କଂଗ୍ରେସ ତରଫରୁ ଆମ ନିର୍ବାଚନ ଇସ୍ତାହାରରେ ସେ ସବୁ ବିଷୟ ଉଲ୍ଲେଖ କରିଛେ ଏବଂ ଏହାର ସମାଧାନ କରିବାର ପ୍ରତିଶ୍ରୁତି ଲୋକଙ୍କୁ ଦେଇଛେ । ଆମେ ବିଶେଷ କିଛି କରିପାରିନାହୁଁ ; କିନ୍ତୁ ଜୟପ୍ରକାଶ ଯେତେବେଳେ ଜନତାସ୍ତରରୁ ଏ ବିଷୟ ଉଠାଉଛନ୍ତି ଏବଂ ଆମ ନିର୍ବାଚନ ଇସ୍ତାହାରରେ ଏହି ମୌଳିକ ବିଷୟଗୁଡ଼ିକ ସମ୍ବନ୍ଧରେ ଉଲ୍ଲେଖ ରହିଛି, ସେତେବେଳେ ଆମେ କଥାବାର୍ତ୍ତା ଦ୍ୱାରା ଶକ୍ତିଶାଳୀ ହେବା ସିନା; ଆମର କିଛି କ୍ଷତି ଘଟିବ ନାହିଁ ।

ମାତ୍ର ଏଭଳି ସବୁ ଅନୁରୋଧକୁ ଇନ୍ଦିରା ଗାନ୍ଧୀ କର୍ଣ୍ଣପାତ କଲେ ନାହିଁ । ଇନ୍ଦିରା ଗାନ୍ଧୀ କ୍ରମେ କିଭଳି ଅଧୈର୍ଯ୍ୟ ହେବାକୁ ଲାଗିଲେ ତାହା ନିମ୍ନଲିଖିତ କ୍ଷୁଦ୍ର ଦୃଷ୍ଟାନ୍ତରୁ ଜଣାପଡ଼ିବ ।

ଉତ୍କଳ ସର୍ବୋଦୟ ମଣ୍ଡଳ ତରଫରୁ ଗାନ୍ଧୀଜୟନ୍ତୀ ପାଳନ ଲାଗି ଏକ ସାଧାରଣ ସଭା ଡକାଯାଇଥିଲା । ସେଥିରେ ବିଜୁ ପଟ୍ଟନାୟକ ଓ ଅନ୍ୟମାନଙ୍କ ଭିତରେ ଲେଖକ ବି ଉପସ୍ଥିତ ଥିଲା । ଲେଖକର ବକ୍ତବ୍ୟର କିୟଦଂଶ 'ସମାଜ'ରେ ବାହାରିଛି ।

ସମାଜର ୪।୧୦।୭୪ ସଂଖ୍ୟାରେ ପ୍ରକାଶିତ ସମ୍ବାଦ ଅନୁଯାୟୀ ଲେଖକ କହିଥିଲା—"ଜୟପ୍ରକାଶ ନାରାୟଣ ବିହାରରେ ଯେଉଁ ଆନ୍ଦୋଳନ ଚଳାଇଛନ୍ତି ତାହା

ପ୍ରକୃତରେ ଯଦି ସମସ୍ୟାର ସମାଧାନ ଲାଗି ଲକ୍ଷ୍ୟ ରଖାଯାଇଥାଏ, ତାହାହେଲେ ତାକୁ ସମର୍ଥନ କରାଯିବା ଉଚିତ । ଆନ୍ଦୋଳନରେ ଯଦି ରାଜନୀତି ଥାଏ, ତାହାହେଲେ ସମସ୍ୟାର ସମାଧାନ ପରିବର୍ତ୍ତେ ଏକ ଜଟିଳ ଅବସ୍ଥା ସୃଷ୍ଟି କରିବ ।''

ଏଥିରେ ଆପତ୍ତି କରିବାର କିଛି ନଥିଲା । କିନ୍ତୁ ୫ ତାରିଖ ଦିନ ସକାଳୁ ଲେଖକ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କଠାରୁ ଟେଲିଫୋନ୍ ପାଇଲି ଯେ ଏ ସର୍ବୋଦୟ ମଣ୍ଡଳ ଆମ ପ୍ରତି ବୈରଭାବ ପୋଷଣ କରୁଥିବାବେଳେ ଆପଣ ସେମାନଙ୍କଦ୍ୱାରା ଆହୂତ ସଭାରେ ଅନ୍ୟ ବିରୋଧୀଦଳ ସହ ଭାଷଣ ଦେବା ଉଚିତ ନୁହେଁ । ଭବିଷ୍ୟତରେ ଆଉ କୌଣସି ସମ୍ପର୍କ ରଖିବେ ନାହିଁ । ଜୟପ୍ରକାଶଙ୍କ ଆନ୍ଦୋଳନକୁ ସମର୍ଥନ ଜଣାଇ ବିରୋଧୀ ଦଳ ସହ ମିଶି ସଭା କରିବା ଠିକ୍ ହେଲି ନାହିଁ । ଲେଖକ ତାଙ୍କୁ ଜଣାଇଲି ଯେ, ସଭା ବିରୋଧୀଦଳର ନଥିଲା; ଉତ୍କଳ ସର୍ବୋଦୟ ମଣ୍ଡଳ ତରଫରୁ ଡକାଯାଇଥିଲା । ସେଥିରେ ସବୁଦଳର ଲୋକଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଲେଖକର ଉପସ୍ଥିତି ଏକଦୃଷ୍ଟିରୁ ଭଲହେଲା; କାରଣ ଲେଖକ କଂଗ୍ରେସ ଓ ନିଜର ବ୍ୟକ୍ତିଗତ ମତ ସେଠାରେ ପ୍ରକାଶ କରିପାରିଲି । ଏତିକିରେ ଟେଲିଫୋନ୍ କଥାବାର୍ତ୍ତା ସମାପ୍ତ ହୋଇଗଲା ।

ଜୟପ୍ରକାଶଙ୍କ ସହ ନଭେମ୍ବର ପହିଲା ତାରିଖରେ ଇନ୍ଦିରାଗାନ୍ଧୀଙ୍କର ସାକ୍ଷାତ୍ ଯୋଗୁ ଆମ ପରି ଯେଉଁମାନେ ସହଯୋଗମୂଳକ ବାୟୁମଣ୍ଡଳ ସୃଷ୍ଟି କରିବାକୁ ଚାହୁଁଥିଲେ, ସେମାନେ ଆନନ୍ଦିତ ହେଲେ । ଏହି ସଂକ୍ରାନ୍ତରେ ନଭେମ୍ବର ୪ ତାରିଖରେ ଲେଖକ ଇନ୍ଦିରା ଗାନ୍ଧୀଙ୍କି ଏକ ପତ୍ରରେ ଲେଖିଲି :

''ଜୟପ୍ରକାଶଜୀଙ୍କ ସହ କଥାବାର୍ତ୍ତା କରିବା ନିମନ୍ତେ ଆପଣ ଆଗଭର ହୋଇଥିବା ଯୋଗୁଁ ମୁଁ ସାଧୁବାଦ ଜଣାଉଛି । ହଠାତ୍ ଏହି ପ୍ରଥମ ଦେଖାସାକ୍ଷାତରେ ହୁଏତ କିଛି ନିର୍ଦ୍ଦିଷ୍ଟ ଫଳ ହେଲିନାହିଁ; କିନ୍ତୁ ଏଥିରେ ଆପଣଙ୍କ ବିଷୟରେ ଲୋକଙ୍କ ଧାରଣା ବଦଳିଛି । ଆପଣ ଯେ ନିଜ ସମ୍ମାନର ବଡ଼ିମା ହେତୁ କିଛି କଥାବାର୍ତ୍ତା କରିବାକୁ ଚାହାଁନ୍ତି ନାହିଁ, ଏଭଳି ଧାରଣା ଦୂରୀଭୂତ ହୋଇଛି ।

ବ୍ୟକ୍ତିଗତ ଭାବରେ ଆସେଂବ୍ଲି ଭଙ୍ଗ ବିଷୟରେ ଯେଉଁ ମନୋଭାବ ନିଆଯାଇଛି, ସେଥିରେ ମୁଁ ସମ୍ମତ । କେରଳ ଓ ଗୁଜରାଟକୁ ଏକାଭଳି ବିଚାରରେ ଦେଖାଯାଇ ନ ପାରେ । ସମ୍ବାଦପତ୍ରରେ ରିପୋର୍ଟ ବାହାରିଛି ଯେ ଆପଣ କହିଛନ୍ତି—ଆନ୍ଦୋଳନକାରୀ ନେତା ଏବଂ ସରକାରଙ୍କର ଲକ୍ଷ୍ୟ ଏକ, ମାତ୍ର ଏହି ସମସ୍ୟା ସମାଧାନ ବିଷୟରେ ମନୋଭାବ ଓ ଦୃଷ୍ଟିଭଙ୍ଗୀରେ ପ୍ରଭେଦ । ଆପଣଙ୍କର ଏ ବିବୃତି ସାରା ସମସ୍ୟାଟିକୁ ଭିନ୍ନ ଭାବରେ ବିଚାର କରିବାଲାଗି ବାଟ ବାହାରକଲା ଭଳି ମତେ ଲାଗୁଛି ।

ମତେ ଜଣାପଡ଼ୁଛି, ସମାଧାନରେ ପହଞ୍ଚିବାରେ ଏକ ପ୍ରଧାନ ପ୍ରତିବନ୍ଧକ ହେଉଛି ଆସେଂବ୍ଲି ଭଙ୍ଗ ବିଷୟରେ ସମ୍ମତ ହୋଇ ନ ପାରିବା । ମୁଁ ଯଦି ଆପଣଙ୍କ ବକ୍ତବ୍ୟ

ଠିକ୍‌ରୂପେ ବୁଝିଥାଏ, ଆପଣ କହିବାକୁ ଚାହାନ୍ତି ଯେ ଏକ ନିର୍ବାଚିତ ପ୍ରତିନିଧିମୂଳକ ବ୍ୟବସ୍ଥା-ସଭାକୁ ଯେମିତି ଢଙ୍ଗରେ ଭାଙ୍ଗି ଦେବାଲାଗି ଦାବି କରାଯାଉଛି, ସେଥିରେ ଆପଣ କେବେହେଁ ସମ୍ମତ ହୋଇପାରିବେ ନାହିଁ । ତେଣୁ ଆମକୁ ଆଉ କିଛି ଉପାୟ ଚିନ୍ତା କରିବାକୁ ପଡ଼ିବ । ଯଦି କୌଣସି ଦାବି ପ୍ରତିନିଧିମୂଳକ, ବୈଧାନିକ ଓ ଗଣତାନ୍ତ୍ରିକ ପନ୍ଥାରେ ଉପସ୍ଥାପିତ ହୁଏ, ଆପଣ ତାହା ଗ୍ରହଣ କରିବାଲାଗି ପ୍ରସ୍ତୁତ ହୋଇପାରନ୍ତି । ଏପରି କୌଣସି ପ୍ରତିକାର ପନ୍ଥା ଆମ ସମ୍ବିଧାନରେ ନଥିବାରୁ, ଆନ୍ଦୋଳନକାରୀଙ୍କର ଯୁକ୍ତି ହେଉଛି ଯେ କେବଳ ଜନତାର ଚାପ ଫଳରେ ଏହି କାର୍ଯ୍ୟ ହୋଇପାରିବ ।

ବର୍ତ୍ତମାନ ଉଠିଥିବା ସମସ୍ୟାକୁ ବାଦ୍ ଦେଲେ ବି ମୁଁ ବ୍ୟକ୍ତିଗତ ଭାବରେ ଅନୁଭବ କରୁଛି ଯେ, ଆମ ଦେଶରେ ଯେପରି ଭାବରେ ଗଣତାନ୍ତ୍ରିକ ପଦ୍ଧତିର ଅଭିବୃଦ୍ଧି ହୋଇଛି, ବିଶେଷତଃ କୌଣସି ବିକଳ୍ପ ବିରୋଧୀ ଶକ୍ତି ଯେତେବେଳେ ଉଦ୍ଭବ ହେବାର ପ୍ରାୟ ସମ୍ଭାବନା ନାହିଁ, ସେତେବେଳେ ଭୋଟଦାତାମାନଙ୍କ ହାତରେ ତାଙ୍କର ପ୍ରତିନିଧିମାନଙ୍କୁ ଅନ୍ୟ କିଛି ଉପାୟରେ ନିୟନ୍ତ୍ରଣ କରିବାର କିଛି ଅଧିକାର ରହିବା ଉଚିତ । ମୋର ମନେ-ହୁଏ, ବର୍ତ୍ତମାନ ସମୟ ଆସି ପହଞ୍ଚିଲଣି, ଆମ ପକ୍ଷରେ ସମ୍ବିଧାନରେ ନିର୍ବାଚିତ ପ୍ରତିନିଧିଙ୍କୁ ଫେରାଇ ଡାକିଆଣିବାର ବିଧାନ ବ୍ୟବସ୍ଥା କରାଯିବା ଉଚିତ । ଜୟପ୍ରକାଶ ନାରାୟଣ ଓ ଅନ୍ୟ ଯେଉଁମାନେ ନିର୍ବାଚନ ପଦ୍ଧତିର ସଂଶୋଧନ ଦାବି କରୁଛନ୍ତି, ସେମାନେ ଏପରି ଏକ ଦାବି ଉତ୍ଥାପନ କରିଛନ୍ତି । ଆମର ସାଥୀ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ମଧ୍ୟ ଏହା ସପକ୍ଷରେ ମତ ଦେଇଛି । ଆପଣ ସ୍ମରଣ କରିପାରନ୍ତି ଯେ, ଦଳ ବଦଳ ବନ୍ଦ କରିବା ନିମନ୍ତେ ଯେଉଁ କମିଟି ଗଠିତ ହୋଇଥିଲା, ସେଥିରେ ମଧ୍ୟ ଏ ବିଷୟ ବିଚାରକୁ ନିଆଯାଇଥିଲା । ତେଣୁ ମୋର ଆପଣଙ୍କ ପାଖରେ ପ୍ରସ୍ତାବ ହେଉଛି, ଆସନ୍ତା ପାର୍ଲିମେଣ୍ଟ ବୈଠକରେ ସମ୍ବିଧାନ ସଂଶୋଧନ କରାଯାଇ ଏହି ବ୍ୟବସ୍ଥାଟି ସେଥିରେ ରଖାଯାଉ । ଯଦି ଆନ୍ଦୋଳନକାରୀ ଯେପରି ଦାବି କରୁଛନ୍ତି ତାଙ୍କ ପଶ୍ଚାତ୍ତରେ ବହୁଳ ଲୋକସମର୍ଥନ ରହିଛି, ତେବେ ସେମାନେ ଏହି ବିଧାନର ପ୍ରୟୋଗ କରି ଯେଉଁ ପ୍ରତିନିଧିମାନଙ୍କୁ ଫେରାଇ ଆଣିବାକୁ ଚାହାନ୍ତି ସେମାନଙ୍କୁ, ଏପରିକି ଆସେମ୍ବ୍ଲିର ସବୁ ସଦସ୍ୟଙ୍କୁ ଏହି ନୂତନ ନିୟମାନୁସାରେ ଫେରାଇ-ଆଣିପାରନ୍ତି । ଏହା ସର୍ବୋତ୍କୃଷ୍ଟ ଗଣତାନ୍ତ୍ରିକ ଓ ସାମ୍ବିଧାନିକ ପନ୍ଥା ହେବ ।

ମୁଁ ଆଶା କରୁଛି ମୋର ଏ ପ୍ରସ୍ତାବକୁ ସହାନୁଭୂତିର ସହ ବିଚାର କରାଯିବ । ମୋ ମତରେ ଏହାହିଁ ଯଥାର୍ଥ ପନ୍ଥା । ମୋର ଆନ୍ଦୋଳନର ନେତାମାନଙ୍କ ସହ କୌଣସି ସମ୍ପର୍କ ନାହିଁ କିମ୍ବା ସେମାନଙ୍କ ମନରେ କି ଭାବନା ଖେଳୁଛି ମତେ ଜଣା ନାହିଁ । ନଚେତ୍ ମୁଁ ନିଜେ ଜୟପ୍ରକାଶଙ୍କୁ ଏ ବିଷୟ ଲେଖିଥାଆନ୍ତି । ମୋର କାହିଁକି ବିଶ୍ୱାସ ହେଉଛି ସେମାନେ ଏଭଳି ପ୍ରସ୍ତାବରେ ସମ୍ମତ ହୋଇଯିବେ ଏବଂ ଏହା ଏକ ସୁଖକର ସମାଧାନର ବାଟ ଖୋଲିଦେବ । ଆପଣ ଯଦି ଏହାକୁ ଗ୍ରହଣ କରନ୍ତି, ତେବେ ଆପଣ ଏ ବିଷୟରେ ଜୟପ୍ରକାଶଙ୍କୁ

ଲେଖିପାରନ୍ତି କିମ୍ବା କୌଣସି ବନ୍ଧୁଙ୍କ ଜରିଆରେ ଏହି ଉପାୟରେ ବର୍ତ୍ତମାନର ଅଚଳ ପରିସ୍ଥିତିର ସମାଧାନ ବାଟ ଖୋଲିପାରିବ କି ନାହିଁ ଖବର ନେଇପାରନ୍ତି ।"

ଆପଣଙ୍କର
ସୁରେନ୍ଦ୍ରନାଥ ଦ୍ୱିବେଦୀ

୧୯୭୪ ନଭେମ୍ବର ୭ ତାରିଖରେ ପ୍ରଧାନମନ୍ତ୍ରୀଙ୍କଠାରୁ ଏକ ପତ୍ର ପାଇ ବିସ୍ମିତ ହେଲି । ସେଥିରେ ଲେଖାଥିଲା—"ଦେଶରେ ଯେଉଁସବୁ ଧ୍ୱଂସକାରୀ ଆନ୍ଦୋଳନ ଚାଲିଛି, ତାକୁ ଆପଣ ସମର୍ଥନ କରୁଥିବା ଶୁଣି ମୁଁ ଟିକିଏ ବିବ୍ରତ ହେଉଛି ।"

ଏହାର ଅର୍ଥ, ଇନ୍ଦିରା ଗାନ୍ଧୀ କୌଣସି ପ୍ରକାର ସନ୍ତୋଷଜନକ ସମାଧାନ କରିବା ଲାଗି ପ୍ରସ୍ତୁତ ନଥିଲେ ଏବଂ ଯେତେ କଂଗ୍ରେସ ଓ ବାହାରର ପ୍ରତିଷ୍ଠିତ ଲୋକ ଗୋଟାଏ ପ୍ରକାର ମିଳାମିଶା ବା କଥାବାର୍ତ୍ତା ଲାଗି ନିବେଦନ କରୁଥିଲେ, ସେମାନଙ୍କୁ ବରଂ ସେ ସନ୍ଦେହଚକ୍ଷୁରେ ଦେଖୁଥିଲେ ।

ଏଣେ ଅକ୍ଟୋବର ୧୯ ତାରିଖରେ କଂଗ୍ରେସ କାର୍ଯ୍ୟକାରୀ ସମିତିର ଏକ ବୈଠକ ବସି ଜୟପ୍ରକାଶଙ୍କ ଆନ୍ଦୋଳନକୁ ସଂଗଠିତ ଭାବରେ ବିରୋଧ କରିବା ନିମନ୍ତେ ସିଦ୍ଧାନ୍ତ ନେଲା । ଏକ ପ୍ରସ୍ତାବରେ କୁହାଗଲା ଯେ, ସଂବିଧାନର କାର୍ଯ୍ୟକାରିତା ଏବଂ ପାର୍ଲିମେଣ୍ଟାରୀ ଗଣତନ୍ତ୍ର ଉପରେ ମହା ବିପଦ ପହଞ୍ଚିଯାଇଛି । ଏପରି ଅବସ୍ଥାରେ କୌଣସି ପ୍ରକାର କଥାବାର୍ତ୍ତା ବା ଆଲାପ-ଆଲୋଚନାରେ ସମୟ ନକଟାଇ ଏହି ବିପଦର ସମ୍ମୁଖୀନ ହେବା ନିମନ୍ତେ ଆନ୍ଦୋଳନ-ବିରୋଧୀ ଶକ୍ତିକୁ ଏକଜୁଟ କରିବା ଦରକାର ।

ତଥାପି ଆମେ ସବୁ ଆଶା ହରାଇଲୁ ନାହିଁ ଏବଂ ନିଜର ଉଦ୍ୟମ ଜାରିରଖିଲୁ । ମୋତେ ଦେଇଥିବା ପତ୍ରର ଜବାବରେ ଲେଖକ ଇନ୍ଦିରା ଗାନ୍ଧୀଙ୍କୁ ଲେଖିଲି :

"ଆପଣ ମୋ ଲାଗି ବିବ୍ରତ ହେବାର କୌଣସି ପ୍ରୟୋଜନ ନାହିଁ । ମୋର ଆନ୍ଦୋଳନ ସମ୍ବନ୍ଧରେ ଯାହା ମତ ଥାଉ ପଛକେ, ମୁଁ ଏଗୁଡ଼ିକୁ ସମର୍ଥନ କରୁଛି ବୋଲି କହିବା ଭୁଲ୍ କଥା । ମୋର ସେମିତି କହିବାର ସୁଯୋଗ ମଧ୍ୟ ନାହିଁ । କଂଗ୍ରେସଲୋକ ହିସାବରେ ମୁଁ ଏକପ୍ରକାର ବନ୍ଦୀ; ମୋର କିଛି କାର୍ଯ୍ୟ କରିବାର ସୁଯୋଗ ନାହିଁ । ମୁଁ କଂଗ୍ରେସରେ ରହିଥିବା ପର୍ଯ୍ୟନ୍ତ ଅନ୍ୟ ଏକ ଆନ୍ଦୋଳନ ଲାଗି କାର୍ଯ୍ୟ କରିପାରେନା ।

ମୋର ନିଜର ଏ ଆନ୍ଦୋଳନ ସମ୍ବନ୍ଧରେ କିଛି ମତ ରହିଛି; ସନ୍ଦେହ ନାହିଁ । ମୋର ମନେହୁଏ ମୋର ପୂର୍ବ ଚିଠିରୁ ଆପଣ ମୋଟାମୋଟି ଗୋଟିଏ ଧାରଣା ପାଇଥିବେ । ମୁଁ ଭାବୁଛି ଯେମିତି ଭାବରେ ଏ ଆନ୍ଦୋଳନ ବିଷୟରେ କାର୍ଯ୍ୟ କରାଯାଉଛି ସେଥିରେ ଏହା ଆମକୁ ସାହାଯ୍ୟ କରିବ ନାହିଁ କିମ୍ବା ଏହା ଦେଶପକ୍ଷରେ ଭଲ ହେଉ ନାହିଁ । ଜୟପ୍ରକାଶଙ୍କ ପ୍ରତି ପୁଲିସ ଯେଉଁ ଅମାନୁଷିକ ବ୍ୟବହାର କରିଛି, ସେଥିଯୋଗୁଁ ସାରା ଦେଶବାସୀଙ୍କର ସହାନୁଭୂତି ତାଙ୍କ ଆଡ଼କୁ ଯିବ । ମୁଁ ଏବେ ବି ଭାବୁଛି ଗୋଟାଏ ପ୍ରକାର ମିଳାମିଶାର କ୍ଷେତ୍ର

ରହିଛି । ଆପଣ ଏହା ଥରେ ଆରମ୍ଭ କରିଥିଲେ ଏବଂ ପୁଣି ଥରେ ଏ ଦିଗରେ ଆପଣଙ୍କର ଉଦ୍ୟମ କରିବା ଉଚିତ ।"

ଆପଣଙ୍କର
ସୁରେନ୍ଦ୍ର ନାଥ ଦ୍ୱିବେଦୀ

ଏହା ପରେ ୧୯୭୪ ନଭେମ୍ବର ୧୯ ତାରିଖରେ ଶ୍ରୀ ଚନ୍ଦ୍ରଶେଖରଙ୍କଠାରୁ ଏକ ପତ୍ର ଲେଖକ ପାଇଲି । ସେଥିରେ ଲେଖାଥିଲା :

"ମୁଁ ବରାବର ଉଦ୍ୟମ କରି ଆସୁଛି ଇନ୍ଦିରାଜୀ ଓ ଜୟପ୍ରକାଶଙ୍କ ଭିତରେ ଏକ ସଫଳ କଥାବାର୍ତ୍ତା ଲାଗି; ମାତ୍ର ଦୁର୍ଭାଗ୍ୟବଶତଃ ଏପର୍ଯ୍ୟନ୍ତ ସେଥିରେ ସଫଳ ହୋଇପାରି ନାହିଁ । ଆମେ ସର୍ବଦା ଭଲ ଆଶା କରି କାର୍ଯ୍ୟ କରିବା ଏବଂ ତାହା ସଙ୍ଗେ ସଙ୍ଗେ ଅତି ମନ୍ଦ ପରିଣତି ଲାଗି ବି ପ୍ରସ୍ତୁତ ହୋଇ ରହିଥିବା ।"

ଶେଷକୁ ଏହି ମନ୍ଦ ପରିଣତି ଆଡ଼କୁ ହିଁ ପରିସ୍ଥିତି ଗଲା । ଇନ୍ଦିରାଜୀ କୌଣସି ସହଯୋଗ ପ୍ରଶ୍ନରେ ଆଗ୍ରହ ଦେଖାଇଲେ ନାହିଁ । ଦେଶଦ୍ରୋହୀ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ସହ ମିଳିତହୋଇ ଭାରତର ଗଣତାନ୍ତ୍ରିକ ଆନ୍ଦୋଳନ ବିରୁଦ୍ଧରେ ସଂଗ୍ରାମ କରିବା ନିମନ୍ତେ ସକଳପ୍ରକାର ବ୍ୟବସ୍ଥାରେ ଲାଗିପଡ଼ିଲେ ।

# ଇନ୍ଦିରାଙ୍କୁ ଠେଲିଦେଇ ଆଗେଇଯିବା

ବାସ୍ତବିକ ୧୯୭୪ ନଭେମ୍ବର ପହିଲାରେ ଯେଉଁ ଇନ୍ଦିରା-ଜୟପ୍ରକାଶ ସାକ୍ଷାତ୍ ହେଲା, ତାହାର ପରବର୍ତ୍ତୀ ଘଟଣାବଳୀ ଜୟପ୍ରକାଶଙ୍କ ଆନ୍ଦୋଳନକୁ ଏକ ଚରମ ରାଜନୀତିକ ସଂଘର୍ଷ ଆଡ଼କୁ ଟାଣିନେଲା । ସହଯୋଗ ଓ ବାର୍ତ୍ତାଳାପ ପନ୍ଥା ତ୍ୟାଗ କରି ତୀବ୍ର ପ୍ରତିରୋଧ କରିବା ନିମନ୍ତେ ଇନ୍ଦିରା ଗାନ୍ଧୀ ଅଗ୍ରସର ହେଲେ । ଜୟପ୍ରକାଶଙ୍କ ସହ ବୈଠକବେଳେ ଅଧିକାଂଶ ସମୟ କଥାବାର୍ତ୍ତାରେ ଜଗଜ୍ଜୀବନ ରାମ ମଧ୍ୟ ଉପସ୍ଥିତ ଥିଲେ । ଆଗରୁ ବର୍ଣ୍ଣନା କରାଯାଇଛି, ବିହାର ବିଧାନସଭା ଭଙ୍ଗ ସଂକ୍ରାନ୍ତୀୟ ପ୍ରସ୍ତାବ ଆଲୋଚନା କରିବା ନିମନ୍ତେ ବି ଇନ୍ଦିରା ଗାନ୍ଧୀ ସମ୍ମତ ହେଲେ ନାହିଁ । ଜଗଜ୍ଜୀବନ ରାମ ଘୋଷଣା କଲେ, ନିର୍ବାଚିତ ପ୍ରତିନିଧିଙ୍କୁ ଏଭଳି ଭାବରେ ଇସ୍ତଫା ଦେବାଲାଗି ଏବଂ ନିର୍ବାଚିତ ଆସେମ୍ବ୍ଲି ଭଙ୍ଗ ଦାବି ଅତ୍ୟନ୍ତ ଅଗଣତାନ୍ତ୍ରିକ । ଜୟପ୍ରକାଶ ନିଜ ଭାଷଣମାନଙ୍କରେ କଂଗ୍ରେସ ଭିତରେ ଜଗଜ୍ଜୀବନ ରାମ ଓ ଯଶୋବନ୍ତ ରାଓ ଚହ୍ୱାନ ଇନ୍ଦିରା ଗାନ୍ଧୀଙ୍କର ଏକଚ୍ଛତ୍ରବାଦୀ ମନୋବୃତ୍ତିର ବିରୋଧୀ ଏବଂ କଂଗ୍ରେସ ଭିତରେ ଆଉ ସୁଦ୍ଧା ଜୟପ୍ରକାଶଙ୍କ ଗଣତାନ୍ତ୍ରିକ ଆନ୍ଦୋଳନ ପ୍ରତି ସେମାନଙ୍କର ସହାନୁଭୂତି ରହିଛି ବୋଲି ନିଜ ବକ୍ତବ୍ୟମାନଙ୍କରେ କହୁଥିଲେ । ଜଗଜ୍ଜୀବନ ରାମ ବିହାରର ଏବଂ ହରିଜନ ସଂପ୍ରଦାୟ ଉପରେ ତାଙ୍କର ପ୍ରଭାବ ପ୍ରତିପତ୍ତି ରହିଥିଲା । ତେଣୁ ତାଙ୍କର ପ୍ରକାଶ୍ୟ ବିରୋଧ ଇନ୍ଦିରା ଗାନ୍ଧୀଙ୍କୁ ଅଧିକ ବଳ ଦେଲା ଏବଂ ସେ ତୀବ୍ର ଆକ୍ରମଣ ଆରମ୍ଭ କରିଦେଲେ । ନଭେମ୍ବର ୨ ତାରିଖରେ ଜୟପ୍ରକାଶଙ୍କ ସହ କଥାବାର୍ତ୍ତାକୁ ଉଲ୍ଲେଖ କରି, ଏପରି ଅଗଣତାନ୍ତ୍ରିକ ଦାବିକୁ କୌଣସି ପ୍ରକାରେ ସ୍ୱୀକାର କରାଯାଇ ନ ପାରେ ବୋଲି ଇନ୍ଦିରାଜୀ କହିଲେ ଏବଂ ଆନ୍ଦୋଳନର ବିରୋଧ କରିବା ନିମନ୍ତେ ସରକାରୀ ଓ ବେସରକାରୀ ରାଜନୀତିକ ଶକ୍ତିସବୁକୁ ଠୁଳକଲେ ।

ଏହି ସମୟରେ ଦିଲ୍ଲୀରେ ଏକ ସାଧାରଣ ସଭାରେ ସେ ପରିଷ୍କାର କରିଦେଲେ—ସେ ପଛକେ ନିଜେ ଇସ୍ତଫା ଦେବେ କିନ୍ତୁ କେବେହେଁ ବିହାର ମନ୍ତ୍ରିମଣ୍ଡଳର ଇସ୍ତଫା ଦାବି ଗ୍ରହଣ କରିପାରିବେ ନାହିଁ ।

ଏଭଳି ପରିସ୍ଥିତିରେ ଅବସ୍ଥା ଜଟିଳ ଆକାର ଧାରଣ କଲା । ବିହାର ଆନ୍ଦୋଳନରେ ସେତେବେଳକୁ ଶହ ଶହ ଲୋକ ଜେଲରେ ଭର୍ତ୍ତି ହୋଇ ସାରିଛନ୍ତି, ଲାଠି ଗୁଳି ବି ହୋଇସାରିଛି । ତଥାପି ବନ୍ଧୁମାନଙ୍କର ଅନୁରୋଧକ୍ରମେ ଗୋଟାଏ ମିଳାମିଶାର ଅନ୍ତିମ ଉଦ୍ୟମରେ ଜୟପ୍ରକାଶ ଇନ୍ଦିରା ଗାନ୍ଧୀଙ୍କ ନିମନ୍ତ୍ରଣକ୍ରମେ କଥାବାର୍ତ୍ତା କରିବାର ଏକ ସୁଯୋଗ ନେଇଥିଲେ । କିନ୍ତୁ ଇନ୍ଦିରା ଗାନ୍ଧୀଙ୍କର ଏଭଳି ଦାମ୍ଭିକ ଘୋଷଣା ଜୟପ୍ରକାଶଙ୍କ ମନକୁ ଆହୁରି ଦୃଢ଼ କରିଦେଲା ଏବଂ ବିହାର ଆନ୍ଦୋଳନ ଲାଗି ପୂର୍ବ-ନିର୍ଦ୍ଧାରିତ କାର୍ଯ୍ୟକ୍ରମ

ଅନୁସାରେ ନଭେମ୍ବର ୪ ତାରିଖରେ ବିହାର ସେକ୍ରେଟାରିଏଟ ଓ ମନ୍ତ୍ରୀମାନଙ୍କ ଘର ଘେରାଉର ଅଭିଯାନ ହେଲା । ସାରା ପାଟନା ସହରକୁ ଏକପ୍ରକାର ରୁଦ୍ଧ କରିଦେଇ, ସୈନ୍ୟ ମୁତୟନ କରି, ନୌକା, ଗାଡ଼ି ଓ ବସ୍ ଇତ୍ୟାଦି ବନ୍ଦ କରି ସୁଦ୍ଧା ଜନସମୁଦ୍ରକୁ ରୋକିବା ସରକାର ପକ୍ଷରେ ସମ୍ଭବ ହେଲା ନାହିଁ । ସରକାରୀ ବ୍ୟାରିକେଡ଼ ଭେଦ କରି ନିଜେ ଜୟପ୍ରକାଶ ସତ୍ୟାଗ୍ରହୀଙ୍କ ସାଥିରେ ନିଜ କର୍ତ୍ତବ୍ୟପଥରେ ଅଗ୍ରସର ହେଲେ ।

ଏହି ଦିନ ଯାହା ଘଟିଗଲା, ତାହା ସ୍ୱାଧୀନ ଭାରତ ଇତିହାସରେ ଓ ଇନ୍ଦିରା ଗାନ୍ଧୀଙ୍କ ସରକାର ଅମଳରେ ଏକ କାଳିମାମୟ ଘଟଣା । ବିହାର ପୁଲିସ ଜୟପ୍ରକାଶଙ୍କ ଆତ୍ମରକ୍ଷାଲାଗି ଜଗୁଆଳି ରଖିଥିଲାବେଳେ, କେନ୍ଦ୍ର ରିଜର୍ଭ ଫୋର୍ସଦ୍ୱାରା ଜୟପ୍ରକାଶଙ୍କ ଉପରେ ଲାଠିପ୍ରହାର କରାଗଲା । ଏହି ପୁସ୍ତକର ପ୍ରଚ୍ଛଦପଟରେ ଜୟପ୍ରକାଶଙ୍କ ଉପରେ କିପରି ଲାଠି ପ୍ରହାର କରାଯାଇଛି, ତାର ଏକ ସତ୍ୟଛବି ଦିଆଯାଇଛି । ନଭେମ୍ବର ୫ ତାରିଖରେ 'ଟାଇମ୍ସ ଅଫ୍ ଇଣ୍ଡିଆ' ନଭେମ୍ବର ୪ ତାରିଖର ଘଟଣାବଳୀ ବର୍ଣ୍ଣନା କରି ଯାହା ଲେଖିଥିଲା, ତାହା ନିମ୍ନରେ ଦିଆଯାଉଛି ।

## ବିରାଟ ଶୋଭାଯାତ୍ରା ଉପରେ ଲାଠିମାଡ଼

### ଜୟପ୍ରକାଶ ଆଘାତପ୍ରାପ୍ତ

ପାଟନା, ନଭେମ୍ବର ୪

ଶ୍ରୀ ଜୟପ୍ରକାଶ ନାରାୟଣ, ପ୍ରସିଦ୍ଧ ହିନ୍ଦୀ ଔପନ୍ୟାସିକ ଶ୍ରୀ ଫଣୀଶ୍ୱର ନାଥ 'ରେଣୁ' ଏବଂ ବହୁସଂଖ୍ୟକ ସର୍ବୋଦୟ କର୍ମୀ ସେକ୍ରେଟେରିଏଟ୍ ଓ ମନ୍ତ୍ରୀମାନଙ୍କ ଘର ଘେରାଉ କରିବା ନିମନ୍ତେ ଏକ ବିରାଟ ଶୋଭାଯାତ୍ରାରେ ଯାଉଥିବାବେଳେ ପୁଲିସ ଲାଠିମାଡ଼ରେ ଆହତ ହୋଇଛନ୍ତି ।

କିଛି ସମୟ ଲାଗି ଶ୍ରୀ ନାରାୟଣ ସଂଜ୍ଞାହୀନ ହୋଇପଡ଼ିଥିଲେ । ସେ ଅଚେତନାବସ୍ଥାରେ ହୋଇପଡ଼ିଥିବାବେଳେ ଏଣେ ପୁଲିସ ଲୁହାବୁହା ଗ୍ୟାସ୍ ଫୋପାଡ଼ିବାରେ ବ୍ୟସ୍ତ ରହିଥାଆନ୍ତି । ଜୟପ୍ରକାଶ ନାରାୟଣଙ୍କୁ ରକ୍ଷା କରିବାଲାଗି ସମ୍ବାଦପତ୍ର ପ୍ରତିନିଧି, ସର୍ବୋଦୟ ସ୍ୱେଚ୍ଛାସେବକ ଓ ଜନସଂଘ ନେତା ନାନାଜୀ ଦେଶମୁଖ ଏକ ଘେର କରି ତାଙ୍କୁ ଭିତରେ ରଖିଥାଆନ୍ତି ।

ଜୟପ୍ରକାଶ ନାରାୟଣ ଟିକିଏ ସୁସ୍ଥ ବୋଧକଲା ପରେ ବଲବଲେଇଲା ପରି ଅଧୀର ହୋଇ କହୁଥାଆନ୍ତି—"ଯଦି ଗୁଳି ଚଳାଅ, ମତେ ହତ୍ୟାକର । ଯେଉଁମାନେ ଲୋକଙ୍କ ନିମକଖାଇ ପୋଷି ହେଉଛନ୍ତି, ସେମାନେ ଜଣେ ଲୋକସେବକଙ୍କ ପ୍ରତି ଏମିତି ବ୍ୟବହାର ଦେଖାଇବାର କଥା !"

ସତ୍ୟାଗ୍ରହୀମାନେ ଚିତ୍କାର କରୁଥାଆନ୍ତି—"ହେ ଅତ୍ୟାଚାରୀ, ଦେଶର ଜଣେ ପ୍ରଖ୍ୟାତ ଅହିଂସ ବ୍ୟକ୍ତିଙ୍କୁ ପିଟିଦେବାଦ୍ୱାରା ତୁମେ କଣ କଲ ବୁଝିପାରୁଛ ?"

ନାନାଜୀ ଦେଶମୁଖ ଗୁରୁତର ଆଘାତପ୍ରାପ୍ତ ହେଲେ । ଶ୍ୟାମନନ୍ଦନ ମିଶ୍ର ସାମାନ୍ୟ ଆଘାତ ପାଇଲେ; ଶ୍ରୀ ରେଡ୍ଡି ସଂଜ୍ଞାହୀନ ହୋଇଗଲେ, ତାଙ୍କୁ ତାଙ୍କର ଜଣେ ବନ୍ଧୁ ରିକ୍ସାରେ ରାଜେନ୍ଦ୍ର ନଗରରେ ଥିବା ତାଙ୍କ ନିବାସକୁ ନେଇଗଲେ । ସର୍ବୋଦୟ ସୂତ୍ରରୁ ପ୍ରକାଶ ଯେ ଶ୍ରୀ ନାରାୟଣଙ୍କୁ ୩ ଥର ମାଡ଼ ହୋଇଛି । ତାଙ୍କର ବାମ ପଞ୍ଜରାହାଡ଼ ଓ ଦକ୍ଷିଣ ବାହୁ ଖଣ୍ଡିଆଖାବରା ହୋଇଯାଇଛି । ( Times of India, New Delhi, Nov. 5 )

ଏହି ମାଡ଼ ସମ୍ବାଦରେ ବିହାର ଉତ୍ତେଜିତ ହୋଇଗଲା । ସାରା ଭାରତରେ ବିଶୃଙ୍ଖଳା ଖେଳିଗଲା । ପାର୍ଲିମେଣ୍ଟରେ ବିକ୍ଷୋଭ ଉଠିଲା । ମାତ୍ର ପ୍ରଧାନମନ୍ତ୍ରୀ କହିଲେ ଏହା ଆକସ୍ମିକଭାବରେ ଘଟିଯାଇଥିବ । କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଏହା ସ୍ୱୀକାର କରିବା ନିମନ୍ତେ କୁଣ୍ଠାବୋଧ କରୁଥିଲେ । ଏହା ନଭେମ୍ବର ମାସର ଘଟଣା । ଲେଖକ ୧୯୭୫ ଜାନୁୟାରୀ ମାସରେ ବାରଣସୀରୁ ଟ୍ରେନ୍‌ରେ ଦିଲ୍ଲୀ ଯିବା ପଥରେ ଉକ୍ତ କମ୍ପାର୍ଟମେଣ୍ଟରେ ଯାତ୍ରା କରୁଥିବା କେନ୍ଦ୍ର ରିଜର୍ଭ ପୁଲିସ ବିଭାଗର ଜଣେ ସୁପରିଣ୍ଟେଣ୍ଡେଣ୍ଟ ଲାଠିମାଡ଼ ହେବା ସ୍ୱୀକାର କରିଥିଲେ ମଧ୍ୟ ଜୟପ୍ରକାଶଙ୍କ ଉପରେ ଲାଠିମାଡ଼ ମିଥ୍ୟା ବୋଲି ଲେଖକଙ୍କୁ କହିଥିଲେ ଏବଂ ଲେଖକ ଜୟପ୍ରକାଶଙ୍କୁ ଏ କଥା କହିଥିଲା । ଜୟପ୍ରକାଶ ନିଜେ ତ ଲାଠି ଖାଇଥିଲେ, ତଥାପି ଲେଖକ ମନରେ କାଳେ ତାଙ୍କ କଥା ପ୍ରତି ଅବିଶ୍ୱାସ ରହିଥିବ କିମ୍ବା ସେ ଏସ୍.ପି.ଙ୍କ କଥାକୁ ସତ୍ୟ ବୋଲି ବିଚାରିଥିବ, ସେଥିଲାଗି ୧୯୭୫ ମାର୍ଚ୍ଚ ୩୧ ତାରିଖରେ ଲେଖକ ସହିତ ପୁଣି ଭୁବନେଶ୍ୱରରେ ସାକ୍ଷାତ୍ ବେଳେ ସରକାର ଯେଉଁ ଗୁପ୍ତ ରିପୋର୍ଟରେ ତାଙ୍କ ଉପରେ ମାଡ଼ ହୋଇଥିବାର ବିବରଣ ଲେଖାଥିଲା, ତାର ଏକ କପି ଅଣାଇ ଗୋପନରେ ଦେଖାଇଥିଲେ । ଭାରତର ସାଧାରଣ ଜୀବନରେ ଏଭଳି ସତ୍ୟପ୍ରେମୀ ଆଉ କଣ କେହି ରହିଛି ?

କିନ୍ତୁ ଏହି ମାଡ଼ମାରି ନେଇ ଯେଉଁ ବିବାଦ ସୃଷ୍ଟି ହେଲା, ସେଥିରେ ବାଧ୍ୟ ହୋଇ ପ୍ରାୟ ୧୦ ଦିନ ପରେ ଜୟପ୍ରକାଶ ଏକ ବିବୃତି ଦେଲେ । ସେଥିରେ ସେ କହିଲେ—

"ମୋ ବାମକାନ୍ଧରେ ମାଡ଼ ହୋଇଛି ଏବଂ ଅନ୍ୟ ସାଥୀମାନଙ୍କ ଉପରେ ଲାଠି ପ୍ରହାର ହେଉଥିବାବେଳେ ମୁଁ ଲାଠିଖାଇ ଆଘାତ ପାଇଛି । ମୋ ସହିତ ଶୋଭାଯାତ୍ରାରେ ଥିବା ଆହୁରି ଅନେକ ସାଥୀ ଏଭଳି ମାଡ଼ଖାଇଛନ୍ତି । ମୋତେ ମାଡ଼ ଦେବାଲାଗି ଯଦି କୌଣସି ଅର୍ଡ଼ର ନ ଥିଲା, ତେବେ ମତେ ରକ୍ଷା କରିବା ନିମନ୍ତେ ଘେରିରହିଥିବା ମୋର ଏତେଗୁଡ଼ିଏ ସାଥୀଙ୍କ ଉପରେ ଏଭଳି ନିର୍ମମ ପ୍ରହାର କାହିଁକି ହେଲା ଏବଂ ସେମାନେ ଅବା କାହିଁକି ଆହତ ହେଲେ ?

ନିଜ ବିଷୟରେ କହିବା ମୋର ପ୍ରକୃତିବିରୋଧୀ । ଏପରିକି ବ୍ରିଟିଶ ଅମଳରେ ସ୍ୱାଧୀନତା ଆନ୍ଦୋଳନବେଳେ ଲାହୋର ଦୁର୍ଗରେ ମୋ ଉପରେ ଘଟିଥିବା ଅତ୍ୟାଗ୍ଭର କାହାଣୀ ଅନ୍ୟମାନେ ବର୍ଣ୍ଣନା କରିଛନ୍ତି ସିନା, ମୁଁ କିଛି କହି ନ ଥିଲି । କେହି କେବେ ସେ ସମ୍ବନ୍ଧରେ ପ୍ରଶ୍ନ ପଗ୍ଭରିଥିଲେ ମୁଁ କେବଳ ଉତ୍ତର ଛଳରେ ଯାହା କହିଥିଲି ।

ନଭେମ୍ବର ୪ ତାରିଖ ଘଟଣା ପରେ ପ୍ରାୟ ଏକ ଡଜନରୁ ଅଧିକ ସାମ୍ବାଦିକ ମୋ ଉପରେ ହୋଇଥିବା ଆଘାତ ଗୁରୁତର କି ନା, ବଡ଼ ବ୍ୟାକୁଳ ହୋଇ ମତେ ବାରମ୍ବାର ପଗ୍ଭରିଛନ୍ତି ।

ମୁଁ ପ୍ରତ୍ୟେକଙ୍କୁ କହିଛି ଯେ ମୋର କାନ୍ଧରେ ଲାଠିବସିଛି, ସେଥିରେ ମୁଁ ସାମାନ୍ୟ ଆଘାତ ପାଇଛି—କାରଣ ମୋ ଉପରେ ଲାଠି ପ୍ରହାର ପଡ଼ିଲାବେଳକୁ ନାନାଜୀ ଦେଶମୁଖ ତାକୁ ଏଡ଼ାଇବାଲାଗି ଚେଷ୍ଟା କରିବାରୁ ଲାଠିର ଅସଲ ଧକ୍କା ଓ ଚୋଟ ତାଙ୍କ ହାତ ଉପରେ ପଡ଼ିଲା । ନାନାଜୀ ଏବେ ସୁଦ୍ଧା ହାସପାତାଳରେ ପଡ଼ିଛନ୍ତି । ତାଙ୍କ ହାତର କ୍ଷତ ଆରୋଗ୍ୟ ହେବା ନିମନ୍ତେ କିଛି ସପ୍ତାହ ଲାଗିଯିବ ।

ଲାଠିମାଡ଼ ମୋ ପାଇଁ ଉଦ୍ଦିଷ୍ଟ ହୋଇଥିଲା କିମ୍ବା ଆକସ୍ମିକ ଭାବରେ ମୋ ଉପରେ ବାଜିଗଲା, ଏହା କେନ୍ଦ୍ର ସରକାରଙ୍କୁ ଭଲରୂପେ ଜଣାଥିବ । କାରଣ କେନ୍ଦ୍ର ରିଜର୍ଭ ପୁଲିସ ହିଁ ଲାଠିଚାଳନା କରୁଥିଲେ । ଆକସ୍ମିକ ଭାବରେ ଲାଠି ବସିଯିବା କଥାଟି ବିଶ୍ୱାସ କରିବା କଷ୍ଟକର । କାରଣ ମତେ ରକ୍ଷାକରିବାକୁ ଚେଷ୍ଟାକରୁଥିବା ଲୋକଙ୍କ ଭିତରୁ ନାନାଜୀ ପ୍ରମୁଖ ୫ ଜଣ ଗୁରୁତର ଭାବରେ ଆହତ ହୋଇଛନ୍ତି । ଗଣ ଜନସଂଘର୍ଷ ସମିତିର ଆବାହକ ହାଇଦରଙ୍କ ମୁଣ୍ଡରେ ଶକ୍ତ ପ୍ରହାର ପଡ଼ିଛି ଏବଂ ସେ ହାସପାତାଳରେ ଶଯ୍ୟାଶାୟୀ । ସେମାନଙ୍କ ଭିତରୁ ଜଣେ ଯୁବକକୁ ତଳେପକାଇ କେନ୍ଦ୍ର ପୁଲିସର ଜଣେ ବ୍ୟକ୍ତି ଏଭଳି ପାଦରେ ଦଳିଦେଲା ଯେ ସେ ସେହି ସ୍ଥଳରେ ରକ୍ତ ବାନ୍ତି କରିପକାଇଲା ।

ବିହାର ସରକାର ମୋର ନିରାପତ୍ତା ନିମନ୍ତେ ଦୁଇଜଣ ପୁଲିସ କର୍ମଗ୍ଭରୀ ନିଯୁକ୍ତ କରି ରଖାଇଥିଲେ; ସେମାନେ ବି ଆହତ ହୋଇଛନ୍ତି । ମତେ ମାରିବାଲାଗି ଯଦି କେନ୍ଦ୍ର ପୁଲିସଙ୍କୁ ହୁକୁମ ଦିଆଯାଇ ନଥିଲା, ତେବେ ମୋର ନିରାପତ୍ତା ଲାଗି ଚେଷ୍ଟାକରୁଥିବା ଏତେଗୁଡ଼ିଏ ଲୋକଙ୍କୁ ଆଘାତ କରିବାର କାରଣ କଣ ? ଏହାର ଏକ ସିଧା ଓ ପରିଷ୍କାର ଜବାବ ଲୋଡ଼ା ।

ଇଉନିୟନ ସ୍ୱରାଷ୍ଟ୍ରମନ୍ତ୍ରୀ ମୋ'ଠାରୁ ପ୍ରତ୍ୟକ୍ଷ ବିବୃତି ଗ୍ଭହିଁଥିଲେ । ମୁଁ ଉପରେ ଯାହା ବର୍ଣ୍ଣନା କରିଛି, ତାହାହିଁ ମୋର ବକ୍ତବ୍ୟ । ମୋ ତରଫରୁ ମୁଁ କହିଦେବାକୁ ଗ୍ଭହେଁ ଯେ, ତାଙ୍କଠାରୁ କିମ୍ବା ଆଉ କାହାରିଠାରୁ ମୁଁ ଏଥିଲାଗି କ୍ଷମାଭିକ୍ଷା ଦାବି କରୁନାହିଁ । ସଭ୍ୟତା-ସମ୍ପନ୍ନ ସାଧାରଣ ଜୀବନରେ ଯେଉଁ ଶିଷ୍ଟତା ଓ ଭଦ୍ରତା ରହିବାର କଥା, କଂଗ୍ରେସ ବହୁକାଳରୁ ତାର ସୀମା ଟପିଗଲାଣି ।"

(Times of India, Patna 14, 1974)

ଏହି ଘଟଣା ଉଲ୍ଲେଖ କରି ତାଙ୍କର 'କାରାଗାର କାହାଣୀ' ପୁସ୍ତକର ପଞ୍ଚମ ପୃଷ୍ଠାରେ ଜୁଲାଇ ୨୭ ତାରିଖ ଡାଏରୀରେ ଉଲ୍ଲେଖ ରହିଛି—

"ଜେଲ୍ ଭିତରେ ଆଜି ମୋର ଏକମାସ ପୂରିଲା । ଏହି ମାସଟି ମତେ ଏକବର୍ଷ ପରି ଲାଗୁଛି । ପ୍ରାୟ ୩୦ ବର୍ଷ, ଠିକ୍ ୨୯ ବର୍ଷ ହେବ ଜେଲ୍‌ଯିବା ଅଭ୍ୟାସଟା ଭାଙ୍ଗିଯାଇ ଥିବାରୁ ମତେ ଏମିତି ଲାଗୁଥାଇପାରେ । ବହୁ ସଫଳତା କିମ୍ବା ବହୁ ବିଫଳତା ଯୋଗୁଁ ଇନ୍ଦିରା ଗାନ୍ଧୀଙ୍କ ରାଜୁତିର ସ୍ମୃତି ଇତିହାସରେ ରହିଯିବ । ଏଥିରୁ ସର୍ବାପେକ୍ଷା ବଡ଼ ଉଲ୍ଲେଖଯୋଗ୍ୟ ସଫଳତା ହେଉଛି—ଗଣତନ୍ତ୍ରର ହତ୍ୟା । କିନ୍ତୁ (ମୁଁ ଯେଉଁ କେତୋଟି ମାସ ବା ବର୍ଷ ଜୀବିତ ରହିବି) ସ୍ୱାଧୀନ ଭାରତରେ ପ୍ରଥମ ଥର ଲାଗି ଲୁହବୁହା ଗ୍ୟାସ, ଲାଠି ପ୍ରହାର (ସି. ଆର. ପି. ଦ୍ୱାରା), ଅଟକ ହୋଇ ରହିବା ମୋ ପକ୍ଷରେ ଏକ ସ୍ମୃତିରୂପେ ରହିଯିବ । ଇଂରେଜ ରାଜତ୍ୱବେଳେ ମୁଁ ବ୍ୟକ୍ତିଗତ ଭାବରେ କେବେହେଲେ ଲୁହବୁହା ଗ୍ୟାସ୍ ବା ଲାଠିମାଡ଼ ଅନୁଭବ କରିନଥିଲି । ୧୯୪୭ ମସିହା ଏପ୍ରିଲ ମାସରେ ଆଗ୍ରା କେନ୍ଦ୍ର ଜେଲରୁ ମୁକ୍ତି ପରେ ମୁଁ କେବେ ଥରେହେଲେ ସୁଦ୍ଧା ଗିରଫ ହୋଇ ନଥିଲି କିମ୍ବା ଜେଲରେ ଅଟକ ହୋଇ ରହିନଥିଲି ।" (Prison Diary, Page-5)

ଲଢ଼ାଇର କ୍ଷେତ୍ର ପରିସର ଏହା ପରେ ବୃଦ୍ଧି ହୋଇଗଲା । ଏହା ଆଉ ବିହାର ବିଧାନସଭା ଭଙ୍ଗ ଦାବିରେ ସୀମାବଦ୍ଧ ନ ରହି କେନ୍ଦ୍ର ଶାସନ-ବିରୋଧ ଭୂମିକାରେ ପହଞ୍ଚିଲା । ରାଜନୀତିକଦଳଗୁଡ଼ିକ ଏହି ଘଟଣା ପରେ ଅଧିକ ପରିମାଣରେ ଆନ୍ଦୋଳନ ପ୍ରତି ସହାନୁଭୂତିଶୀଳ ହେଲେ ଏବଂ ପ୍ରତ୍ୟକ୍ଷ ଯୋଗଦାନ କରିବାର ମସୁଧା କଲେ । ଜୟପ୍ରକାଶଙ୍କ ଆହ୍ୱାନକ୍ରମେ ସେମାନଙ୍କ ଭିତରେ ଏକ ସମନ୍ୱୟ କମିଟି ମଧ୍ୟ ଗଠିତ ହୋଇଗଲା । ତାହା ପୂର୍ବରୁ ଭାରତୀୟ ଲୋକଦଳ ତରଫରୁ ମଧ୍ୟ ବିଭିନ୍ନ ବିରୋଧୀଦଳକୁ ଏକାଠି କରାଇ ଏକ ସଂଗଠିତ ବିରୋଧୀଦଳ ଗଠନର ପ୍ରୟାସ ଥିଲା । ମାତ୍ର ତାହା ବିଶେଷ କିଛି ଅଗ୍ରସର ହୋଇପାରିନଥିଲା ।

ପାଟନାର ଏକ ଜନସଭାରେ ନଭେମ୍ବର ୧୪ ତାରିଖରେ ଜୟପ୍ରକାଶ ନାରାୟଣ ଘୋଷଣା କଲେ, ଇନ୍ଦିରା ଗାନ୍ଧୀ ଯଦି ନିର୍ବାଚନ କରିଆରେ ଏହାର ନିଷ୍ପତ୍ତି ନେବାକୁ ଇଚ୍ଛା କରନ୍ତି, ମୁଁ ସେ ଚ୍ୟାଲେଞ୍ଜ ଗ୍ରହଣ କରୁଛି । ଆସନ୍ତା ଲୋକସଭା ଓ ବିଧାନସଭା ନିର୍ବାଚନରେ ବିହାର ହିଁ ମୁଖ୍ୟ ନିର୍ବାଚନ ପ୍ରଶ୍ନ ରୂପେ ରଖାଯାଉ ଏବଂ ଶତକଡ଼ା ୯୦ ଲୋକଙ୍କର ସମର୍ଥନ ଆମକୁ ବିହାରରେ ନିଶ୍ଚିତରୂପେ ମିଳିବ । କଂଗ୍ରେସ ଦଳ, ଇନ୍ଦିରା ଗାନ୍ଧୀଙ୍କ ସମର୍ଥକ ଏବଂ ଦକ୍ଷିଣପନ୍ଥୀ କମ୍ୟୁନିଷ୍ଟ ସଂପୂର୍ଣ୍ଣରୂପେ ଲୋପପାଇଯିବେ । ପ୍ରାୟ ୩ ବର୍ଷ ପୂର୍ବରୁ ଜୟପ୍ରକାଶ ଏଭଳି ସତର୍କବାଣୀ ଶୁଣାଇଥିବା କଥା ୧୯୭୭ ମାର୍ଚ୍ଚ ମାସ ଲୋକସଭା ନିର୍ବାଚନରେ ସ୍ପଷ୍ଟ ପ୍ରମାଣିତ ହୋଇଗଲା—କଂଗ୍ରେସ ଦଳ ଓ ତାର ସହଯୋଗୀ ଜଣେ ହେଲେ ପ୍ରାର୍ଥୀ ଲୋକସଭାକୁ ବିହାରରୁ ନିର୍ବାଚିତ ହୋଇପାରିଲେନାହିଁ ।

ଏଣେ କଂଗ୍ରେସଦଳ ତରଫରୁ ପ୍ରସ୍ତୁତ ଚାଲିଲା ଦେବକାନ୍ତ ବରୁଆଙ୍କ ନେତୃତ୍ୱରେ । ତାଙ୍କୁ କଂଗ୍ରେସ ସଭାପତି କରାଗଲା । ସେ ବିହାରର ରାଜ୍ୟପାଳ ଥିଲେ, କମ୍ୟୁନିଷ୍ଟ ପାର୍ଟି ସହିତ ସହଯୋଗ ସ୍ଥାପନ କରିପାରିବେ ଏବଂ ଜୟପ୍ରକାଶ-ବିରୋଧୀ ବ୍ୟକ୍ତି ଓ ଶକ୍ତିଙ୍କୁ ଏକାଠି କରିପାରିବେ ବୋଲି । ଜୟପ୍ରକାଶ ତାଙ୍କୁ ପରେ କିଭଳି ସେ ଜଣେ "ରାଜଦରବାରର ବିଦୂଷକ" ବୋଲି ଆଖ୍ୟା ଦେଇଥିଲେ, ତାହା ଏ ଦେଶରେ ସମସ୍ତଙ୍କୁ ଭଲରୂପେ ଜଣା । ତାଙ୍କର ନେତୃତ୍ୱରେ ଉତ୍ତରପ୍ରଦେଶର ନରୋରା ନାମକ ସ୍ଥାନରେ ଏକ କଂଗ୍ରେସ ଶିବିର ବିଶେଷଭାବରେ କରାଗଲା ଜୟପ୍ରକାଶଙ୍କ ଆନ୍ଦୋଳନ ବିଷୟରେ ଚର୍ଚ୍ଚା କରିବା ନିମନ୍ତେ । କେତେକ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଭିତ୍ତିରେ କମ୍ୟୁନିଷ୍ଟ ପାର୍ଟି ସହ ମିଳାମିଶି କାର୍ଯ୍ୟ କରିବାର ସିଦ୍ଧାନ୍ତ ନିଆଗଲା । ଚନ୍ଦ୍ରଶେଖର, ଯେ କି କାର୍ଯ୍ୟକାରୀ ସମିତିର ସଦସ୍ୟ ଥିଲେ, ସେ ପ୍ରାୟ ଏକୁଟିଆ ହୋଇପଡ଼ିଲେ; କଂଗ୍ରେସ କାର୍ଯ୍ୟକାରୀ ସମିତି ବା ନାରୋରା ଶିବିରରେ ଯୋଗ ଦେଇଥିବା କଂଗ୍ରେସଦଳର ଉପରିସ୍ଥ କର୍ମକର୍ତ୍ତାଙ୍କର ସେ ଆଦୌ ସମର୍ଥନ ପାଇଲେ ନାହିଁ । ନାରୋରା ଶିବିର ପରି ପ୍ରାଦେଶିକ ସ୍ତରରେ ମଧ୍ୟ ଶିବିରମାନ କରାଯାଇ ଜୟପ୍ରକାଶଙ୍କ ଆନ୍ଦୋଳନର ବିରୋଧ କରିବା ନିମନ୍ତେ ସଂଘବଦ୍ଧ ହେବାର ଉଦ୍ୟମ ହେଲା । କଂଗ୍ରେସ ମନ୍ତ୍ରିମଣ୍ଡଳ ଥିବା ରାଜ୍ୟମାନଙ୍କୁ କଠୋର ଦମନ ନୀତି ପ୍ରୟୋଗ କରିବା ନିମନ୍ତେ ନିର୍ଦ୍ଦେଶ ଦିଆଗଲା ।

ଏଭଳି ବିରୋଧ କରିଥିବା ରାଜ୍ୟମାନଙ୍କ ଭିତରେ ହରିଆନା, ପଶ୍ଚିମ-ବଙ୍ଗ ଓ ଓଡ଼ିଶା ଆଗୁଆ ସ୍ଥାନ ନେଲେ । ଓଡ଼ିଶା ବିଷୟ ଆମେ ପରେ ଆଲୋଚନା କରିବା । ହରିଆନାର ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀମତୀ ଗାନ୍ଧୀଙ୍କର ସଂପୂର୍ଣ୍ଣ ବିଶ୍ୱସ୍ତ ବଂଶୀଲାଲ । ସେ ଅଧୁନା କିଭଳି ପରିସ୍ଥିତିର ସମ୍ମୁଖୀନ ହୋଇଛନ୍ତି ଓ ତାଙ୍କ ବିରୁଦ୍ଧରେ ଲାଞ୍ଚ ମିଛ ଓ ନାନା ଚକ୍ରାନ୍ତ ଯୋଗୁଁ ଯେଉଁସବୁ ତଦନ୍ତ ଚାଲିଛି ତାହା ଉଲ୍ଲେଖ କରି ସ୍ଥାନ ନଷ୍ଟ କରିବା ଠିକ୍ ହେବନାହିଁ । ଏତିକି କହିଲେ ଯଥେଷ୍ଟ ହେବ ଯେ, ବଂଶୀଲାଲ, ସଞ୍ଜୟ ଗାନ୍ଧୀ ଏବଂ ଏଲ୍. ଏନ୍. ମିଶ୍ରଙ୍କ ନାମରେ ଯେଉଁସବୁ ଦୁର୍ନୀତି ଅଭିଯୋଗ ଉଠିଲା, ତାହା ରାଜନୈତିକ ଉଦ୍ଦେଶ୍ୟ ପ୍ରଣୋଦିତ ଏବଂ ତାଙ୍କ ଉପରେ ବ୍ୟକ୍ତିଗତ ଆକ୍ରମଣ ବୋଲି ଇନ୍ଦିରା ଗାନ୍ଧୀ କହିଲେ ।

ଭାରତର ବିଭିନ୍ନ ଅଞ୍ଚଳ ଗସ୍ତ ବେଳେ ଶ୍ରୀ ଜୟପ୍ରକାଶ ନାରାୟଣ ୧୯୭୪ ନଭେମ୍ବର ୨୭ ତାରିଖରେ ହରିଆନାର କୁରୁକ୍ଷେତ୍ରକୁ ପ୍ରଥମ ଥର ଲାଗି ଯାଇଥିଲେ । ସେଠାରେ ନାନା ଉପଦ୍ରବ ସୃଷ୍ଟି ହେଲା ଏବଂ ତାଙ୍କ ଗାଡ଼ି ଉପରେ ଆକ୍ରମଣ କରାଗଲା । ପୁଲିସ ଉପସ୍ଥିତ ଥାଇ କୌଣସି କାର୍ଯ୍ୟବିଧାନ କଲାନାହିଁ କିମ୍ବା ଆକ୍ରମଣକାରୀମାନଙ୍କୁ ବାଧା ଦେଲାନାହିଁ । ବିହାରରେ ନଭେମ୍ବର ୪ ତାରିଖ ଘଟଣା ପରେ ହରିଆନା ହେଉଛି ଦ୍ୱିତୀୟ ସ୍ଥଳ, ଯେଉଁଠି ଜୟପ୍ରକାଶଙ୍କ ପ୍ରତି ଶାରୀରିକ ଆଘାତ କରିବାର ଚେଷ୍ଟା ହୋଇଥିଲା ଏବଂ ବିଭିନ୍ନ ସ୍ଥାନରେ କଳାପତାକା ପ୍ରଦର୍ଶନ ବି କରାଗଲା । ଭାରତ ସରକାର ଜୟପ୍ରକାଶଙ୍କ ସ୍ୱାସ୍ଥ୍ୟ ଦୃଷ୍ଟିରୁ ତାଙ୍କ ଲାଗି ପୂରା

ନାଗପତ୍ରରକ୍ଷାର ବ୍ୟବସ୍ଥା ଖଞ୍ଜିଥିଲେ ସୁଦ୍ଧା, ହରିଆନାରେ ହିଂସା ପ୍ରୟୋଗ, ଲାଠି ଓ ଗୁଣ୍ଡା ଆକ୍ରମଣ ଜୟପ୍ରକାଶଙ୍କ ଶୋଭାଯାତ୍ରା ଉପରେ କରାଗଲା । ଏହି ଘଟଣାର ପ୍ରତିବାଦ କରି ଭାରତ ପାର୍ଲିମେଣ୍ଟରେ ବିରୋଧୀଦଳ ସଦସ୍ୟମାନେ କକ୍ଷ ତ୍ୟାଗ କରିଥିଲେ; ମାତ୍ର ଇନ୍ଦିରା ଗାନ୍ଧୀ ବଂଶୀଲାଲଙ୍କ କାର୍ଯ୍ୟ ସପକ୍ଷରେ ଯୁକ୍ତି କଲେ ସିନା, ସେଭଳି ଘଟଣାର ଆଉ କେଉଁଠି ପୁନରାବୃତ୍ତି ହେବ ନାହିଁ ବୋଲି ପ୍ରତିଶ୍ରୁତି ଦେବାକୁ ସମ୍ମତ ହେଲେ ନାହିଁ । କାରଣ ଏଗୁଡ଼ିକ ଥିଲା ପୂର୍ବ-ନିର୍ଦ୍ଦିଷ୍ଟ ଯୋଜନା । ତାଙ୍କର ଅତି ବିଶ୍ୱସ୍ତ ବଂଶୀଲାଲ, ସିଦ୍ଧାର୍ଥଶଙ୍କର ରାୟ ଓ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିବା ହରିଆନା, ପଶ୍ଚିମ-ବଙ୍ଗ ଓ ଓଡ଼ିଶାରେ ଅନୁରୂପ ଉପଦ୍ରବ ଘଟିଥିଲା ।

ଏହା ପରେ ଇନ୍ଦିରା ଗାନ୍ଧୀ ଡିସେମ୍ବର ୧୫ ତାରିଖରେ ଘୋଷଣା କଲେ ଯେ, ବିହାର ଆନ୍ଦୋଳନ କେବଳ ଅଗଣତାନ୍ତ୍ରିକ ନୁହେଁ, ଏହା ଜାତୀୟତା ବିରୋଧୀ ଆନ୍ଦୋଳନ । ସେ ଏହି ସମୟରେ 'ଇଲ୍ୟୁଷ୍ଟ୍ରେଟେଡ୍ ଉଇକ୍ଲି'ରେ ଏକ ସାକ୍ଷାତ୍କାରରେ ବିହାର ଆନ୍ଦୋଳନ ସହିତ ବହୁ ଭ୍ରଷ୍ଟାଚାରୀ ସଂପୃକ୍ତ ହୋଇଛନ୍ତି ଏବଂ ଏହା ଏକ ଫାସିଷ୍ଟ ଆନ୍ଦୋଳନ ବୋଲି ବି କହିଲେ ।

ଏହାର ଦୃଢ଼ ଜବାବ ଜୟପ୍ରକାଶ ନାରାୟଣଙ୍କ ପକ୍ଷରୁ 'ବ୍ଲିଜ୍' ପତ୍ରିକାର ଏକ ସାକ୍ଷାତ୍କାରରେ ଆସିଲା ।

ଜୟପ୍ରକାଶ କହିଲେ—

"ବିହାର ଆନ୍ଦୋଳନ, ନିର୍ବାଚନ ଓ ଶିକ୍ଷା ପଦ୍ଧତିର ସଂଶୋଧନ ଏବଂ ରାଜନୀତିକ ଦୁର୍ନୀତି ଦୂର କରିବା ନିମନ୍ତେ ଅଭିପ୍ରେତ । ସେଥିରେ ପ୍ରଥମ ଆକ୍ରମଣ କରାଯାଉଛି ଦୁର୍ନୀତିଗ୍ରସ୍ତ ରାଜନୀତିକମାନଙ୍କ ଉପରେ । ସେଉଁ ଭାବରେ ଖାଲି ବିହାର ନୁହେଁ, ସାରା ଭାରତବାସୀ ଏହି ଆନ୍ଦୋଳନ ପଶ୍ଚାତ୍‌ରେ ସମବେତ ହେଲେଣି; ଏହା ଆଉ ବିହାରର ଆନ୍ଦୋଳନ ହୋଇ ରହିନାହିଁ । ଲେନିନ୍, ମାର୍କ୍ସ, ମାଓ କିମ୍ବା ଗାନ୍ଧୀଜୀଙ୍କ ଲିଖିତ ପୁସ୍ତକର ଧାରା ନିୟମକୁ ପୁଙ୍ଖାନୁପୁଙ୍ଖରୂପେ ଅନୁସରଣ କରି କୌଣସି ବିଦ୍ରୋହ କେବେ ହୋଇପାରେନା । ପ୍ରତ୍ୟେକ ବିପ୍ଳବ ତାର ନିଜର ପୁସ୍ତକ ଲେଖେ ଏବଂ ଏହା ପରିସ୍ଥିତି ଭିତରୁ ଉଦ୍ଭବ ହୁଏ । ଭାରତ ଏଥରକ ନୂତନ ବିପ୍ଳବର ପ୍ରଥମ ଅଧ୍ୟାୟ ହିଁ ଏତଦ୍ୱାରା ଲେଖିବାକୁ ଆରମ୍ଭ କରିଛି । ଆମର ଏହି ବୈପ୍ଳବିକ ସଂଗ୍ରାମପଥରେ ଯଦି ଇନ୍ଦିରା ଗାନ୍ଧୀ ପ୍ରତିବନ୍ଧକ ହୋଇ ଛିଡ଼ାହୁଅନ୍ତି, ତେବେ ଏହି ଆନ୍ଦୋଳନ ତାଙ୍କୁ ପାଖକୁ ଠେଲିଦେଇ ଆଗକୁ ମାଡ଼ିଚାଲିବ—ଏହାକୁ ଆଉ ରୋକିବାର ତାକତ କାହାରି ନାହିଁ; କାରଣ ଲୋକେ ମାତିଉଠିଛନ୍ତି ଏବଂ ଲୋକଙ୍କଦ୍ୱାରା ଏହା ଚାଳିତ । ମୁଁ ଚରମ ତ୍ୟାଗ ଓ କଷ୍ଟଭୋଗ ଲାଗି ପ୍ରସ୍ତୁତ । ଜୀବନ ଯିବ ପଛକେ, ଏ ବିପ୍ଳବ ସଫଳ ନ ହେବା ପର୍ଯ୍ୟନ୍ତ ମୋର ବିଶ୍ରାମ ନାହିଁ ।"

□□□

# "ଜନତା ଆ ରହୀ ହେ, ସିଂହାସନ ଖାଲିକରୋ"

"ମୁଁ ଜାଣେ ରାଜନୀତିରେ ସାଧୁଙ୍କର ସ୍ଥାନ ନାହିଁ । ମୁଁ ନିଜେ କିଛି ଜଣେ ସାଧୁ ନୁହେଁ, ଧର୍ମବାଣୀ ଶୁଣାଉନାହିଁ । କିନ୍ତୁ ଗଣତନ୍ତ୍ର ଅଧୀନରେ ଅନ୍ତତଃ ରାଜନୀତି ଏକ ସୀମା ଅତିକ୍ରମ କରିଯିବା ଉଚିତ ନୁହେଁ । ନଚେତ୍ ଅସାଧୁତା, ଦୁର୍ନୀତି ଏବଂ ଲୋକଙ୍କୁ ଠକିବା, ବ୍ୟକ୍ତିଗତ କ୍ଷମତା ଓ ବ୍ୟକ୍ତିଗତ ଲାଭ ଲାଗି ଯଦି ସର୍ବଦା ମତଲବ ରହେ, ତେବେ କି ସମାଜବାଦ, ଜନକଲ୍ୟାଣ, ସଂସ୍କାର, ସାଧାରଣ ଶୃଙ୍ଖଳା, ନ୍ୟାୟ, ସ୍ୱାଧୀନତା, ଜାତୀୟ ଏକତା, ଏପରିକି ଦେଶ ବା ଜାତି କିଛିର ସତ୍ତା ରହିବ ନାହିଁ । ଏକ ପୂର୍ଣ୍ଣ ଅରାଜକତା ବିରାଜମାନ କରିବ । ମୁଁ ବିଶ୍ୱାସ କରେ, ଆମ ଦେଶରେ ଯେତେଦୂର ଏହା ଯିବା ବିଧେୟ ତାର ସୀମା ଅତିକ୍ରମ କରିସାରିଲେଣି । ଏଥିଲାଗି ଏ ଦେଶର ବୁଦ୍ଧିଜୀବୀ, ବିରୋଧୀଦଳ ଏବଂ ଏପରିକି ସାଧାରଣ ନାଗରିକ ସମସ୍ତଙ୍କୁ ଦାୟୀ କରାଯିବ । କିନ୍ତୁ ଯେଉଁଭଳି ପରିସ୍ଥିତି ଭିତରେ ଆମେ ରହିଛୁ, ସେଥିରେ ଏହି କ୍ଷମତା-ସୌଧର ଶିଖର ଉପରେ ଯେଉଁମାନେ ରହିଛନ୍ତି, ସେମାନଙ୍କୁ ସର୍ବାପେକ୍ଷା ଅଧିକ ଭାବରେ ଦାୟୀ କରାଯିବ ।"

ଏହି କ୍ଷମତା-ସୌଧର ଶିଖର ଉପରେ ବସି ସବୁ ଅନାଚାର ଓ ଅବିଚାର ଲାଗି ଯେଉଁମାନେ ଦାୟୀ, ସେମାନଙ୍କ ବିରୁଦ୍ଧରେ ନୁହେଁ, ଅନାଚାର ଓ ଅବିଚାର ଦୂର କରିବା ନିମନ୍ତେ, ସେହି ପ୍ରଥାକୁ ମୂଳରୁ ଲୋପ କରିବା ପାଇଁ ଜୟପ୍ରକାଶଙ୍କ ଆନ୍ଦୋଳନ ଆରମ୍ଭ । ଅଥଚ ଇନ୍ଦିରାଙ୍କ ଭାଷାରେ ଏହା ହେଲା ଜାତୀୟତା-ବିରୋଧୀ ଓ ଫାସିଷ୍ଟ ଶକ୍ତି ଏବଂ କମ୍ୟୁନିଷ୍ଟଙ୍କ ଭାଷାରେ ଜୟପ୍ରକାଶ ନେତୃତ୍ୱ ନେଉଛନ୍ତି "ସାମ୍ରାଜ୍ୟବାଦୀ ଓ ତାର ସମର୍ଥକ, ଏକଚାଟିଆ ପୁଞ୍ଜିପତି, ସାମନ୍ତବାଦୀ, ସାଂପ୍ରଦାୟିକତାବାଦୀ ଏବଂ ସମସ୍ତ ଦକ୍ଷିଣପନ୍ଥୀ ଶକ୍ତି ଓ ଦଳଗୁଡ଼ିକର ।" "ଜେ. ପି. ଙ୍କର ଆନ୍ଦୋଳନ ସଫଳ ହେଲେ ଦେଶରେ ଉଗ୍ର ପୁଞ୍ଜିବାଦୀ ବ୍ୟବସ୍ଥା ଆସିବ ଏବଂ ବେକାରି ଓ ବେରୋଜଗାରି ଆହୁରି ଉତ୍କଟ ହେବ ।"

ଉପରୋକ୍ତ ଦୁଇଟି ଉକ୍ତି ଯେ ଅନୁଧ୍ୟାନ କରିବ ସେ ସହଜରେ ବୁଝିପାରିବ ଯେ ଫାସିଷ୍ଟ ମନୋଭାବ କାହାଦ୍ୱାରା ବଳଶାଳୀ ହେବ । ଜୟପ୍ରକାଶ ଯେଉଁ ବାଟ ଧରି ଦେଶରେ ଅନ୍ୟାୟ ଅବିଚାର ଓ କେନ୍ଦ୍ରୀକ କ୍ଷମତାର ସୌଧକୁ ଭାଙ୍ଗିବା ଲାଗି ଲୋକ ଆନ୍ଦୋଳନ କରୁଛନ୍ତି ତାହା ଦ୍ୱାରା, କିମ୍ବା ଯେଉଁ ଇନ୍ଦିରା କଂଗ୍ରେସ ଓ କମ୍ୟୁନିଷ୍ଟ ଉକ୍ତ ବ୍ୟବସ୍ଥାକୁ କାଏମ୍ ରଖି ତାର ପୂର୍ଣ୍ଣ ସକ୍ରିୟ ହିଂସାମୂଳକ ଉପଯୋଗ କରି ଏଭଳି ଲୋକ ଆନ୍ଦୋଳନକୁ ଧ୍ୱସ୍ତ ଓ ଭ୍ରଷ୍ଟ କରିବାର ମିଳିତ ଉଦ୍ୟମ କରୁଛନ୍ତି, ତାହା ଦ୍ୱାରା ।

ଅହିଂସକ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ବିରୁଦ୍ଧରେ ପୁଣି ପ୍ରତିରୋଧ ବ୍ୟବସ୍ଥାର ଅର୍ଥ କଅଣ ? ତାଙ୍କ ଆନ୍ଦୋଳନରେ ତ ହିଂସାର ନାମ ଗନ୍ଧନାହିଁ ! ବିହାରରେ ଲକ୍ଷ ଲକ୍ଷ ଲୋକ ଯେଉଁଭଳି ଭାବରେ ସକ୍ରିୟ ଭାଗନେଲେ, କେବଳ ଗୋଟିଏ ସ୍ଥାନରେ ଗୋଟିଏ ବସ୍ ପୋଡ଼ା

କିମ୍ବା କୌଣସି ଏକ ସ୍ଥାନରେ ଆସେମ୍ବ୍ଲି ମେମ୍ବରଙ୍କୁ ଗାଲିଗୁଲଜ କରିବା ଛଡ଼ା ଅନ୍ୟ କୁତ୍ରାପି କିଛି ଅପ୍ରୀତିକର ଘଟଣା ତ ଘଟିନାହିଁ ! ଦେଶରେ ସାମାନ୍ୟ ଧର୍ମଘଟ କିମ୍ବା ଗଣ୍ଡଗୋଳ ବା ଦଙ୍ଗାହାଙ୍ଗାମା ହେଲେ ଅଜସ୍ର ଧନ ଜନ କ୍ଷୟ ହୋଇଯାଉଛି । ବିହାରର ଜେ. ପି. ଆନ୍ଦୋଳନ ଏଭଳି ଶାନ୍ତିପୂର୍ଣ୍ଣ ରହିଛି ଯେ ବିହାର ଭଳି ଅଶାନ୍ତିପୂର୍ଣ୍ଣ ସ୍ଥାନରେ ଗାନ୍ଧିଜୀଙ୍କ ଅମଳରେ ବି ଏପରି ଶୁଣା ନଥିଲା । ତେଣୁ ଶାସକ କଂଗ୍ରେସ ଓ କମ୍ୟୁନିଷ୍ଟଙ୍କର ଲଢ଼ାଇ ହିଂସା ବିରୁଦ୍ଧରେ ନୁହେଁ, ଏହି ଲଢ଼ାଇ ହେଉଛି ସାଧାରଣ ଜୀବନରେ ଯାହା ଶିଷ୍ଟତା ଓ ଭଦ୍ରତା ତାହା ବିରୁଦ୍ଧରେ । ଲଢ଼ାଇ ହେଉଛି ଦୁଇ ମୂଲ୍ୟବୋଧ ଭିତରେ—ଏକ ସ୍ୱୀକୃତ ମୂଲ୍ୟବୋଧର ସୁରକ୍ଷା; ଅନ୍ୟଟି ହେଉଛି ସାଧାରଣ ଜୀବନର ଯାହା ଗୃହୀତ ମୂଲ୍ୟବୋଧ ତାର ବିକୃତିକରଣ । ଏ ଦୁଇଟିରୁ କେଉଁଟି ଫାସିଷ୍ଟବାଦର ସୂଚନା ଦେଉଛି ?

ଫାସିଷ୍ଟବାଦର ଉଦ୍ଭବ ତ ଆମର ଜୀବନକାଳରେ ଘଟିଛି । ଏହାର ସ୍ୱରୂପ କାହାରିକି ଅବିଦିତ ନାହିଁ । ଏହାର ନଗ୍ନଚିତ୍ର ରାଜନୀତି, ଅର୍ଥନୀତି ଓ ସାମାଜିକ ସବୁ କ୍ଷେତ୍ରରେ ପରିସ୍ଫୁଟ । କେବଳ ସ୍ଥାନ କାଳ ଭେଦରେ ଯାହା ପାର୍ଥକ୍ୟ । ନଚେତ୍ ଫାସିଜମ୍ ବୋଇଲେ ବୁଝାଏ ପୂର୍ଣ୍ଣ କର୍ତ୍ତୃତ୍ୱ—ଜଣେ ସର୍ବଶକ୍ତିମାନ୍ ଅତୀବ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ—ସତେ କି ଦେଶ ଓ ଜାତିର ଗୌରବ ଫେରାଇ ଆଣିବାଲାଗି ଏବଂ ଦେଶର ହାତକୁ କ୍ଷମତା ଆଣିବାଲାଗି ତାର ଆବିର୍ଭାବ ହୋଇଛି । ସେ ହେଉଛି ସର୍ବମୟକର୍ତ୍ତା, ସେ କୌଣସି ଭୁଲ କରିପାରେନା, ତାର ଉଦ୍ଦେଶ୍ୟ ବିଷୟରେ କେହି ପ୍ରଶ୍ନ କରିପାରନ୍ତିନାହିଁ । ତାର ଅନୁଯାୟୀମାନେ ତା ପ୍ରତି ପୂର୍ଣ୍ଣ ଆନୁଗତ୍ୟରେ ବନ୍ଧାହୁଅନ୍ତି ଏବଂ ସେହି ଅନୁଯାୟୀମାନେ ପୁଣି ଦେଶକୁ ତା ପାଖରେ ଅବନତ କରନ୍ତି । ଜଣେ ଦିଜଣ ନୁହେଁ, ସାରା ଜାତି ଓ ଦେଶ ଏହି ରୂପେ ସର୍ବଶକ୍ତିମାନ ବ୍ୟକ୍ତିତ୍ୱ ପାଖରେ ଆତ୍ମସମର୍ପଣ କରିଯାଏ । ଶେଷକୁ ଜାତି ବୋଇଲେ ବା ଦେଶ ବୋଇଲେ କେବଳ ସେହି ବ୍ୟକ୍ତିତ୍ୱ ବୁଝାଏ ।

ଏହା ହେଉଛି ମାପକାଠି—ଏଥିରେ ତଉଲିଲେ ଇନ୍ଦିରା ଗାନ୍ଧୀ ଯେଉଁ ଫାସିଷ୍ଟ ଶକ୍ତି ପ୍ରତିଷ୍ଠିତ କରି ଭାରତବର୍ଷର ଶାସନ ଚଳାଇଲେ, ସେଥିରେ ସେ ଦେଶ ଓ ଜାତିକୁ ଅଧୋଗତି ଆଡ଼କୁ, ତାର ନୈତିକପତନ ଦିଗରେ ଟାଣିନେଲେ । ଯେଉଁ ଶକ୍ତି ଏହା ରୋକିବା ଲାଗି ଲୋକଶକ୍ତିର ସଂଗଠନ କଲା, ତାହା ଫାସିଷ୍ଟ ବିରୋଧୀ ସିନା, ଫାସିଷ୍ଟ ଶକ୍ତି ବୋଲି କିପରି କୁହାଯିବ ?

ଲୋକଶକ୍ତି, ବିଶେଷ ଭାବରେ ଦେଶର ଯୁବ ଓ ଛାତ୍ରଶକ୍ତି, ଏକ ନୂତନ ପ୍ରେରଣା ଓ ଉତ୍ସାହରେ ଉଦ୍‌ବୁଦ୍ଧ ହୋଇ ଜୀବନକୁ ପାଣି ଛଡ଼ାଇ ଯେତେବେଳେ ସାରା ଦେଶରେ ଜୟପ୍ରକାଶଙ୍କ ପଛରେ ଏକଜୁଟ ହୋଇଗଲେ, ସେଥିରେ କ୍ଷମତାଭୋଗୀଙ୍କ ଆସ୍ଥାନ ଟଳମଳ ହେଲା; ହୃତ୍‌କମ୍ପ ଜାତହେଲା; ଭୀତି ସଞ୍ଚାର ହେଲା । ଦେଶରେ ଅଗ୍ରଗାମୀ ବୋଲି ନିଜକୁ ପରିଚୟ ଦେଉଥିବା କମ୍ୟୁନିଷ୍ଟ ଯେତେବେଳେ ଦେଖିଲେ ଦେଶର ଅଧିକାଂଶ ବୁଦ୍ଧିଜୀବୀ, ଶିକ୍ଷିତ ମଧ୍ୟବିତ୍ତ ଯୁବକ ସବୁ ଭୁଲିଯାଇ ପାଗଳ ଭଳି ଉନ୍ମତ୍ତ ହୋଇଯାଉଛନ୍ତି ଲୋକନାୟକ

ଜୟପ୍ରକାଶ ଧ୍ୱନିରେ, ସେତେବେଳେ ସେମାନେ ପ୍ରମାଦଗଣିଲେ ଯେ ତାଙ୍କର ପ୍ରଗତି ବୋଲାଉଥିବା ମୂଳଭିତ୍ତି ବି ଦୋହଲିଯାଉଛି । ଏ ସ୍ରୋତକୁ ଅତ୍ୟାଚାର, ଦମନ, ଲାଠି ଗୁଳିଦ୍ୱାରା ରୋକିହେଉନାହିଁ ; ଦେଶ ଓ ସମାଜର ସ୍ଥାୟିତ୍ୱ ଓ ପ୍ରଗତି ଧ୍ୱନି ତାଙ୍କ ମନକୁ ପ୍ରଭାବିତ କରୁନାହିଁ ; ସେତେବେଳେ ସେମାନେ ଲୋକ ମନକୁ ବିଭ୍ରାନ୍ତ କରିବା ନିମନ୍ତେ ଫାସିଷ୍ଟ, ପ୍ରତିକ୍ରିୟାପନ୍ଥୀ, ଏକ ଆନ୍ତର୍ଜାତିକ ଷଡ଼ଯନ୍ତ୍ରର ଅଙ୍ଗ, ଧର୍ମ—ଗୃହଂକାର ଏବଂ ଭ୍ରଷ୍ଟାଚାରକୁ ପ୍ରଶ୍ରୟ ଦେଉଥିବା ଆନ୍ଦୋଳନ ବୋଲି ସ୍ଥାନେ ସ୍ଥାନେ ସମ୍ମିଳନୀ କରି, ଦମନ-ଦ୍ୱାରା ନୁହେଁ; ରାଜନୀତି କ୍ଷେତ୍ରରେ; ଏହାର ସମ୍ମୁଖୀନ ହେବା ନିମନ୍ତେ ଏକଜୁଟ୍ ହେଲେ ।

ଏଥିରେ ଜୟପ୍ରକାଶ ବିଚଳିତ ହେବା ବ୍ୟକ୍ତି ନୁହନ୍ତି । ସେ ଘୋଷଣା କଲେ, "ସଚ୍ କହନା ଅଗର ବଗାଓ୍ୱତ୍ ହୈ ତୋ ସମଝୋ ହମ୍ ଭି ବାଗୀହେଁ ।" ଅର୍ଥାତ୍ ସତ୍ୟ କହିବାଟାକୁ ଯଦି ବିଦ୍ରୋହ ବୋଲି କୁହାଯାଏ, ତେବେ ମୁଁ ଜଣେ ବିଦ୍ରୋହୀ ।

ବାସ୍ତବିକ ଏହି ଗଣତାନ୍ତ୍ରିକ ଆନ୍ଦୋଳନ ଏକ ଅଭିନବ ପର୍ଯ୍ୟାୟରେ ପହଞ୍ଚିଲା । ଏଭଳି ଶକ୍ତିଶାଳୀ ମେଣ୍ଟକୁ ପ୍ରତିହତ କରି ଦିଲ୍ଲୀ ସିଂହାସନକୁ ହଲାଇବାକୁ ହେଲେ ଯେଉଁ କୌଶଳ ଓ ପନ୍ଥା ବିରୋଧପକ୍ଷ ଗ୍ରହଣକରୁଛି, ତଦନୁରୂପ ଶକ୍ତି ଓ କୌଶଳ ପ୍ରୟୋଗ ନ କଲେ ଏହା ବଶ ହୋଇପାରିବ କି ? ରାଜନୀତିକଙ୍କ ମନରେ ମଧ୍ୟ ସେହି ପ୍ରଶ୍ନ ଉଠିଲା । କ୍ଷମତା ଲାଗି ଲଢ଼ାଇ କରୁଥିବା ରାଜନୀତିକ ଦଳମାନେ, ଆନ୍ଦୋଳନକୁ ସେହିଭଳି ଏକ ରୂପ ଦେବା ନିମନ୍ତେ ଚେଷ୍ଟା ଯେ ନକଲେ ଏମିତି ନୁହେଁ । ମାତ୍ର ଜୟପ୍ରକାଶଙ୍କ ଲକ୍ଷ୍ୟ ଓ ମନ ଏ ବିଷୟରେ ସ୍ଥିର । ସେ କୌଣସି ପ୍ରକାର କୋହଳ କରିବା ନିମନ୍ତେ ପ୍ରସ୍ତୁତ ହେଲେ ନାହିଁ । ଲୋକ-ଆନ୍ଦୋଳନର ନେତୃତ୍ୱ ଲୋକେ ହିଁ ନେବେ । ଏହା ଦଳ ବା ଗୋଷ୍ଠୀର ଶକ୍ତିଠାରୁ ଆହୁରି ବୃହତ୍ ଓ ବିଶାଳ । ଜନତାର ଶକ୍ତି ସହ ଦଳ ମିଶିପାରେ; ଦଳ ସହ ଜନତା ମିଶିବାର ପ୍ରଶ୍ନ ଉଠି ନ ପାରେ । ଦେଶର ବିଜ୍ଞଲୋକେ କହନ୍ତି ଆବ୍ରାହାମ୍ ଲିଙ୍କନ୍ ଯେଉଁ ଧ୍ୱନି ଉଠାଇଛନ୍ତି ଯେ—ଲୋକଙ୍କର, ଲୋକଙ୍କପାଇଁ ଏବଂ ଲୋକଙ୍କଦ୍ୱାରା ସରକାର ସ୍ଥାପିତ ହେବ, ତାହା ଏକ ଅସମ୍ଭବ ପରିକଳ୍ପନା – ବାସ୍ତବ ନୁହେଁ; ହୋଇପାରେନା । ନେପୋଲିୟନ ତାଙ୍କ ଅଭିଧାନରେ 'ଅସମ୍ଭବ' ଶବ୍ଦ ନାହିଁ ବୋଲି ଯେମିତି କହିଥିଲେ, ଜୟପ୍ରକାଶ ସେହିଭଳି ଦୃଢ଼କଣ୍ଠରେ ଘୋଷଣା କଲେ, ଲୋକରାଜ ହେବ ଏବଂ ଲୋକଙ୍କଦ୍ୱାରାହିଁ ହେବ; ଅନ୍ୟମାନେ ଯେ ଆସିବେ ଏହାର ସାହାଯ୍ୟକାରୀ ହେବେ ସିନା, ନେତୃତ୍ୱ ନେଇପାରିବେ ନାହିଁ ।

ଏଥିରେ ଯୋଗଦେବାର ସର୍ତ୍ତ ମଧ୍ୟ ସେହିଭଳି କଠିନ – ଏହା ରାଜଶକ୍ତି ଦଖଲ କରିବାଲାଗି ଅଭିପ୍ରେତ ନୁହେଁ, ରାଜଶକ୍ତିକୁ ଲୋକଶକ୍ତିଦ୍ୱାରା ଚାଳନା କରିବାଲାଗି, ଲୋକଶକ୍ତିର ପରାକାଷ୍ଠା ଓ ପ୍ରାଧାନ୍ୟ ପ୍ରତିଷ୍ଠା କରିବା ନିମନ୍ତେ । ତେଣୁ ଏହାର କୌଣସି ନାମ ନାହିଁ, ଧାଷା ନାହିଁ, ପତାକା ନାହିଁ—ଏହା ସାଥିରେ ଯେ ଆସିବ ସେ ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ଥିଲେ ସୁଦ୍ଧା ଏ ଜନସମୁଦାୟ ଓ ଜନସମୁଦ୍ରରେ ମିଶିପାରିବ ଅନାମଧେୟ ହୋଇ, ନିଜର ଜାତି

ପଥ ସବୁକୁ ଜଳାଞ୍ଜଳି ଦେଇ । କାରଣ ଏହା ଦଳଗତ ଆନ୍ଦୋଳନ ନୁହେଁ, ଏହା ଲୋକ-ଆନ୍ଦୋଳନ—ଏହା ବ୍ୟକ୍ତି ବା ଶକ୍ତି ବିରୁଦ୍ଧରେ ସଂଗ୍ରାମ ନୁହେଁ, ଏକ ଲୋକନୀତି ସ୍ଥାପନାଲାଗି ପ୍ରଚେଷ୍ଟା । ବିଭିନ୍ନ ଶକ୍ତି ପୁଞ୍ଜିଭୂତ ହୋଇଗଲେ କିମ୍ବା ଏକଦଳ ବା ଦଳ ସମଷ୍ଟିର ନେତୃତ୍ୱ ପ୍ରତିଷ୍ଠିତ ହୋଇଗଲେ ପୁଣି ସେହିମାନଙ୍କର ପ୍ରଭୁତ୍ୱ ବା କର୍ତ୍ତୃତ୍ୱ ଆସିଯିବ । ସେଥିରୁ ଉଦ୍ଭବ ହେବ ଦଳତନ୍ତ୍ର ଯାହା ବଦଳରେ ଲୋକତନ୍ତ୍ର ପ୍ରତିଷ୍ଠା ହେଲା । ଜୟପ୍ରକାଶଙ୍କ ଆନ୍ଦୋଳନର ଲକ୍ଷ୍ୟ, ଯାହାକୁ ସେ ବରାବର କହି ଆସିଛନ୍ତି ପ୍ରକୃତ ଲୋକ-ଗଣତନ୍ତ୍ର ବୋଲି ।

ଏହି ସର୍ତ୍ତ ମାନି ଇତିମଧ୍ୟରେ ବିରୋଧୀ ରାଜନୀତିକଦଳଗୁଡ଼ିକ ପ୍ରଥମେ ଏଥିରେ ସଂପୃକ୍ତ ହେବାଲାଗି ଅନିଚ୍ଛୁକ ହେଲେ—ଆମ୍ଭ ଡାକୁଥିଲେ ସୁଦ୍ଧା ମନ ବଳାଇ ନାହିଁ । ବିଭିନ୍ନ ବିରୋଧୀଦଳଗୁଡ଼ିକ ସୀମିତ ହେଲେ ସୁଦ୍ଧା ନିଜ ନିଜ କ୍ଷେତ୍ରରେ ସାମ୍ରାଜ୍ୟ ଗଢ଼ିଛନ୍ତି; ସେଥିରେ ନିଜର ନେତୃତ୍ୱ ବା ଆଧିପତ୍ୟ ଓ ଆତ୍ମବିହି ସୃଷ୍ଟି କରିଛନ୍ତି । କେତେକ ନେତୃମଣ୍ଡଳୀ ପଶ୍ଚାତ୍ତରେ ପୁଣି ଜୟପ୍ରକାଶଙ୍କ ଅପେକ୍ଷା ଅଧିକ କାଳର ଜନସେବା ଓ ଦେଶ ସେବାରେ ଅଭିମାନ ରହିଛି । ସେମାନେ ପୁଣି ଏଭଳି ଭାବରେ ପ୍ରବେଶ କରିବା ଅର୍ଥ ନିଜର ପ୍ରତିଷ୍ଠା ଓ ଉଚ୍ଚପଣିଆ ଉପରେ ଆଞ୍ଚ ଆସିଯିବ । ଏହା କିଭଳି ସମ୍ଭବ ? କେତେକ ଇତଃସ୍ତତ ହେଲେ, ନାସିକା କୁଞ୍ଚନ କଲେ । କେତେକ ପ୍ରଶ୍ନ କଲେ—ଏ ଆନ୍ଦୋଳନ ପଛରେ ଆଦର୍ଶବାଦ କଣ ? ଏହାର ସାମାଜିକ ଓ ଅର୍ଥନୀତିକ ଦୃଷ୍ଟିକୋଣ କିଭଳି ? ତାହାର ଏକମାତ୍ର ଜବାବ ଥାଏ ଯେ, ଏହା ଦଳ ନୁହେଁ ଯେ ଆଗରୁ ଆଦର୍ଶବାଦ ଓ କର୍ମନୀତି ଘୋଷଣା କରାଯିବ । ଏହା ଏକ ଆନ୍ଦୋଳନ – ଆନ୍ଦୋଳନ ଭିତରୁ ହିଁ ଏହାର ବିକାଶ ଘଟିବ । ମାତ୍ର ଏହାର ପନ୍ଥା ସ୍ଥିରୀକୃତ – ଏହା ଗଣତାନ୍ତ୍ରିକ ଓ ଶାନ୍ତିପୂର୍ଣ୍ଣ ଉପାୟରେ ଦାବି ହାସଲ ନିମନ୍ତେ ସଫଳତା ପ୍ରାପ୍ତି ପର୍ଯ୍ୟନ୍ତ ସଂଗ୍ରାମ ଚାଲୁରଖିବ । ଏହାର ଏକମାତ୍ର ନାମ – ତାହା ହେଉଛି ଜନସଂଘର୍ଷ ସମିତି । ଏଥିର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସହ ଯେ ଏକମତ, ଏପରି ଲୋକ ଆନ୍ଦୋଳନରେ ଯେ ବିଶ୍ୱାସୀ, ସେ ଏଥିରେ ସାମିଲ ହେବ—ମହାନ୍ ଜନତା ସାଥିରେ ଲୀନ ହୋଇଯିବ ।

ଜୟପ୍ରକାଶଙ୍କର ଏହି ଦୃଢ଼ତା ଓ ଅଟଳ ମନୋଭାବ ଏବଂ ଏଣେ ତାଙ୍କ ପଶ୍ଚାତ୍ତରେ ପ୍ରବଳ ଲୋକଶକ୍ତି ଓ ଯୁବଶକ୍ତିର ସମାବେଶ ଗଣତାନ୍ତ୍ରିକ ବିରୋଧରେ ବିଶ୍ୱାସ କରୁଥିବା ବିରୋଧୀ ଶକ୍ତିମାନଙ୍କୁ ସେମାନଙ୍କର କ୍ଷୁଦ୍ର ଓ ସଂକୀର୍ଣ୍ଣ ଗଣ୍ଡୀ ଭିତରୁ ବାହାର କରିଆଣିଲା । ସେମାନେ ଏଥିରେ ନବଶକ୍ତିର ସନ୍ଧାନ ପାଇଲେ ଏବଂ ଏକ ସଫଳ ନେତୃତ୍ୱର ଆହ୍ୱାନ ପାଇଲେ ।

ଏହାର ଫଳସ୍ୱରୂପ ସମସ୍ତ ଗଣତନ୍ତ୍ର-ପ୍ରେମୀ ବିରୋଧୀ ରାଜନୀତିକ ଦଳ ଜନସଂଘର୍ଷ ସମିତି ପତାକା ତଳେ ଏକଜୁଟ ହେଲେ । ଦେଶରେ ସଂଗଠିତ ହେଲା ଏକ ବିରାଟ ଜନଯାତ୍ରା । ୧୯୭୫ ମାର୍ଚ୍ଚ ୬ ତାରିଖ । ଭାରତର ରାଜନୀତିକ ଇତିହାସରେ ଏକ ସ୍ମରଣୀୟ ଦିବସ ହୋଇ ରହିବ । ଭାରତର ପ୍ରତ୍ୟେକ କୋଣରୁ ଲକ୍ଷାଧିକ ନରନାରୀ, ଯୁବକଯୁବତୀ

କୌଣସି ବାନା ନ ଧରି, କୌଣସି ନିର୍ଦ୍ଦିଷ୍ଟ ପୋଷାକ ଗେରୁଆ; ଲାଲ ବା କଳା କୁର୍ତ୍ତା ପରିଧାନ ନ କରି, ଶୃଙ୍ଖଳିତ ସୈନିକଙ୍କ ପରି ଯାତ୍ରା କଲେ ପାର୍ଲିମେଣ୍ଟ ଭବନକୁ । ତାଙ୍କ ମୁହଁରେ ଗୋଟିଏ ମାତ୍ର ଧ୍ୱନି—'ଜନତା ଆସୁଅଛି, ସିଂହାସନ ଖାଲିକର ।' ଆଗରେ ଜୟପ୍ରକାଶ ନାରାୟଣ ଏବଂ ତାଙ୍କ ପଶ୍ଚାତ୍‌ରେ ସର୍ବସମ୍ପ୍ରଦାୟ-ଗୋଷ୍ଠୀ ଓ ରାଜନୀତିକ-ଦଳର ନେତୃବୃନ୍ଦ ଏବଂ ବିରାଟ ଜନତା । ଲେଖକ ସେଭଳି ଶୋଭାଯାତ୍ରା ଓ ସଭା ନିଜ ଆଖିରେ ଦେଖିଛି । ସେତେବେଳକାର ସମ୍ବାଦପତ୍ରର ବିବରଣୀ ଏଠାରେ ଉଲ୍ଲେଖ କରିବାର ପ୍ରୟୋଜନ ନାହିଁ । ଦେଶର ସ୍ୱାଧୀନତା ପରେ ଏଭଳି ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରା ଅଦ୍ୱିତୀୟ । ହୁଏତ ବିଦେଶରୁ ଆଗତ ଅତିଥି କିମ୍ବା ପୂର୍ବତନ ପ୍ରଧାନମନ୍ତ୍ରୀମାନଙ୍କ ମୃତ୍ୟୁରେ ଶୋକସଭାରେ ବିପୁଳ ଲୋକସମାଗମ ହୋଇଛି । ମାତ୍ର ଭାରତର ପ୍ରତ୍ୟେକ ଅଞ୍ଚଳରୁ, ସବୁ ସ୍ଥାନରୁ—ଏତେ ଦୂରରୁ ଲୋକ ଏକ ରାଜନୀତିକ ଉଦ୍ଦେଶ୍ୟର ଠୁଳହେବା ଏବଂ ଯାତ୍ରା କରିବା ଏହାହିଁ ପ୍ରଥମ ।

ଏହି ପଦଯାତ୍ରୀମାନଙ୍କୁ ଭୟଙ୍କରି, ହିଂସା ଓ ଗଣ୍ଡଗୋଳର ଆଶଙ୍କା କରି, ଶାନ୍ତିରକ୍ଷା ନିମନ୍ତେ ବହୁ ସୈନ୍ୟ, ପୁଲିସ ଓ ଅନ୍ୟ ଶାନ୍ତିରକ୍ଷାକାରୀ ସରକାରୀ ବଳକୁ ମୁତୟନ କରାଯାଇଥିଲା; ମାତ୍ର ସେଦିନ କୌଣସି ଗୋଟିଏହେଲେ ସ୍ଥାନରେ ଲେଶମାତ୍ର ଗଣ୍ଡଗୋଳର ଚିହ୍ନ ନ ଥିଲା । କେହି ଅସାମାଜିକ ବ୍ୟକ୍ତି କେଉଁଠି କିଛି ଗଣ୍ଡଗୋଳ ସୂତ୍ରପାତ କରିବାକୁ ଉଦ୍ୟମର ସୂଚନା ମିଳିବାମାତ୍ରେ ଲୋକେ ନିଜଆଡ଼ୁ ତାହା ଆୟତ୍ତ କରିନେଇଥିଲେ; ଅନ୍ୟ କାହାରି କଣ୍ଟ୍ରୋଲର ଆବଶ୍ୟକତା ପଡ଼ୁ ନ ଥିଲା ।

ଏ ଜନଯାତ୍ରା ଯାଇ ନଥିଲା ସେକ୍ରେଟେରିଏଟ୍‌କୁ, ଭାରତର ପ୍ରଧାନମନ୍ତ୍ରୀଙ୍କ ପାଖକୁ କିମ୍ବା ରାଷ୍ଟ୍ରପତିଙ୍କ ପାଖକୁ ଗୁହାରି କରିବା ନିମନ୍ତେ । ଏମାନେ ଯାତ୍ରାକଲେ ପାର୍ଲିମେଣ୍ଟ ଭବନକୁ—ଯେଉଁ ପାର୍ଲିମେଣ୍ଟ ହାତରେ ଭାରତର ଲୋକେ ସାର୍ବଭୌମ କ୍ଷମତା ସମର୍ପି ଦେଇଛନ୍ତି । ପାର୍ଲିମେଣ୍ଟର ଲୋକସଭା ଓ ରାଜ୍ୟସଭାର ଅଧ୍ୟକ୍ଷଙ୍କ ହାତରେ ଜନ-ଦାବିପତ୍ର ଅର୍ପଣ କରାଗଲା । ଯେଉଁମାନେ ଜନତା ତରଫରୁ ଦସ୍ତଖତ୍ କଲେ ଏବଂ ଦାବିପତ୍ରର ଯେଉଁ ଶପଥପତ୍ର ଲିପିବଦ୍ଧ ହୋଇଥିଲା, ସେଥିରେ ଥିଲା—

"ଆମେ ଆମ ସମାଜରେ ଏକ ସମ୍ପୂର୍ଣ୍ଣ କ୍ରାନ୍ତି ଆଣିବା ନିମନ୍ତେ ପ୍ରତିଜ୍ଞାବଦ୍ଧ । ଗାନ୍ଧୀ ପ୍ରଦର୍ଶିତ ମାର୍ଗରେ ଏହି ସମ୍ପୂର୍ଣ୍ଣ କ୍ରାନ୍ତି ଜରିଆରେ ଦେଶରେ ଏକ ନୂତନ ସମାଜ ପ୍ରତିଷ୍ଠିତ ହେବ, ଯେଉଁଥିରେ ସାମାଜିକ ଓ ଅର୍ଥନୀତିକ ସମାନତା, ବାସ୍ତବ ଗଣତନ୍ତ୍ର ଏବଂ ନୈତିକ ମୂଲ୍ୟବୋଧ ବିରାଜମାନ ରହିବ ।"

ଏହାର ପ୍ରାପ୍ତି ନିମନ୍ତେ ଯେଉଁ କେତୋଟି ଅତି ଆବଶ୍ୟକୀୟ ପରିବର୍ତ୍ତନ ଓ ସଂଶୋଧନ ଗଣତାନ୍ତ୍ରିକ ଏବଂ ବୈଧାନିକ ଉପାୟରେ ନିତାନ୍ତ ଜରୁରି କର୍ତ୍ତବ୍ୟ, ତାହାର ଏକ ଦୀର୍ଘ ଫର୍ଦ୍ଦ ଏଥିରେ ସମ୍ମିଳିତ କରାଯାଇଥିଲା ।

ଏହା ହେଲା ଏକ ପ୍ରତିଷ୍ଠିତ ସରକାର ବଦଳାଇବାର ଗଣତାନ୍ତ୍ରିକ ଓ ବୈଧାନିକ ପନ୍ଥା, ଅଧିକୃତ କର୍ତ୍ତୃତ୍ୱାଭିଳାଷୀ ଶକ୍ତି ବିରୁଦ୍ଧରେ ଜନଶକ୍ତିର ମିଳିତ ଅଭିଯାନ । ତେଣୁ ପୂର୍ବ ଶ୍ଲୋଗାନ୍ ପରିବର୍ତ୍ତେ ଏଥିରେ ଧ୍ୱନି ହେଲା—

"ଜନତା ଆସୁଛନ୍ତି
ସିଂହାସନ ଖାଲି କରେ ।"

# ଢେଙ୍କାନାଳରେ ମାରିବା ଉଦ୍ୟମ

"ଜେ. ପି. ବିରୋଧୀ ଗୋଷ୍ଠୀରେ ଅଛନ୍ତି ଭାରତୀୟ କମ୍ୟୁନିଷ୍ଟ ପାର୍ଟି, କଂଗ୍ରେସ (ଆର୍), ସର୍ବୋଦୟ, ଯୁବ-କଂଗ୍ରେସ ଓ ଛାତ୍ର-କଂଗ୍ରେସର ସମର୍ଥକଗଣ । ଏମାନେ ଜୟପ୍ରକାଶଙ୍କ ଆଗମନର ବିରୋଧୀ ଏବଂ ବିରୋଧୀ ଗୋଷ୍ଠୀର ନେତୃତ୍ୱ ନେଉଛନ୍ତି । ସେମାନେ ନିଷ୍ପତ୍ତି କରିଛନ୍ତି କଳାପତାକା ପ୍ରଦର୍ଶନ କରିବେ ଏବଂ ସମାନ୍ତରାଳ ସଭା କରିବେ । ଦୈନନ୍ଦିନ ଖବର ଯାହା ମିଳୁଛି ସେଥିରୁ ସ୍ପଷ୍ଟ ସୂଚନା ଥିଲା ଯେ ଜେ.ପି. ବିରୋଧୀ ଗୋଷ୍ଠୀ କଳାପତାକା ପ୍ରଦର୍ଶନ ବ୍ୟତୀତ, ତାଙ୍କ ପଥ ଅବରୋଧ କରିବେ ଏବଂ ସାଧାରଣ ସଭାସ୍ଥଳରେ ଗୋଳମାଳ କରିବେ ଯେପରିକି ସଭା କାର୍ଯ୍ୟରେ ବିଶୃଙ୍ଖଳା ଜାତ ହେବ । ଜେ. ପି. ବିରୋଧୀ ଗୋଷ୍ଠୀ ଗୁପ୍ତ ବୈଠକସବୁ କରୁଛନ୍ତି ।"

ଜୟପ୍ରକାଶଙ୍କର ୧୯୭୫ ମାର୍ଚ୍ଚ ୩୦ ତାରିଖ ଢେଙ୍କାନାଳ ଆଗମନ ବିଷୟରେ ଏପରି ଏକ ଗୁପ୍ତ ରିପୋର୍ଟ ପୁଲିସ ହେଡ଼କ୍ୱାର୍ଟରରେ ହସ୍ତଗତ ହୋଇଥିଲା । ଏଭଳି ରିପୋର୍ଟ ନିଶ୍ଚିତ ଭାବରେ ସେତେବେଳର ଆଇ. ଜି. ଏବଂ ହୁଏତ ହୋମ୍ ସେକ୍ରେଟେରୀଙ୍କ ଜରିଆରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀଙ୍କ ଗୋଚରକୁ ଆସିଥିବ ନିଶ୍ଚୟ । ତାହାଛଡ଼ା, ଢେଙ୍କାନାଳରେ ଯାହାସବୁ କାଣ୍ଡ ଘଟିଗଲା, ସେଥିରେ ପ୍ରଧାନ ନାୟକ ଥିଲେ ମୁଖ୍ୟମନ୍ତ୍ରୀଙ୍କ ସ୍ୱାମୀ ଦେବେନ୍ଦ୍ର ଶତପଥୀ ଏବଂ ଆଇ. ଜି.ଙ୍କ ସମ୍ବନ୍ଧୀ ହରମୋହନ ପଟ୍ଟନାୟକ ।

"ଉକ୍ତ ଦିନ ଯେଭଳି ଆଇନ ଶୃଙ୍ଖଳାଭଙ୍ଗ ନହୋଇ ଉଭୟପକ୍ଷ ସୁରୁଖୁରୁରୂପେ କାର୍ଯ୍ୟ ଚଳାଇବେ, ସେ ସମ୍ପର୍କୀୟ ଆଲୋଚନା ଲାଗି ୨୯-୩-୭୫ ସକାଳ ୧୧ ଘଣ୍ଟାରୁ ଏକଘଣ୍ଟା ପର୍ଯ୍ୟନ୍ତ ଜିଲା କର୍ତ୍ତୃପକ୍ଷଙ୍କ ନିକଟରେ ହୋଇଥିବା ବୈଠକରେ ଜେ. ପି. ବିରୋଧୀ ଗୋଷ୍ଠୀର ପ୍ରତିନିଧି ଭାବରେ ଯେଉଁମାନେ ଯୋଗ ଦେଇଥିଲେ, ସେମାନଙ୍କ ଭିତରେ ଥିଲେ ସର୍ବଶ୍ରୀ ହରମୋହନ ପଟ୍ଟନାୟକ (ସର୍ବୋଦୟ), ବ୍ରଜ ମହାପାତ୍ର (ସି. ପି. ଆଇ.), ଶ୍ରୀବତ୍ସ ନାୟକ ଗୋଧିଆ ଏମ୍. ଏଲ୍. ଏ. (କଂଗ୍ରେସ ଆର୍), ସୁରପ୍ରସାଦ ସିଂ, ଢେଙ୍କାନାଳ ମ୍ୟୁନିସିପାଲିଟିର ଭାଇସ୍ ଚେୟାରମାନ୍ (କଂଗ୍ରେସ ଆର୍) । ଏମାନେ କହିଲେ ଯେ ଅନୁଗୁଳ ଆଡ଼୍ ଢେଙ୍କାନାଳର ପ୍ରବେଶ ଦ୍ୱାରରେ କାଳିପଡ଼ିଆ ସଭା ପଡ଼ିଆରେ ସେମାନେ ଜେ. ପି. ବିରୋଧୀ ସଭା କରିବେ ଏବଂ ଜୟପ୍ରକାଶ ନାରାୟଣଙ୍କ ସଭା ଭଣ୍ଡୁର କରିବା ନିମନ୍ତେ କଳାପତାକା ପ୍ରଦର୍ଶନ କରିବେ । ଆହୁରି ମଧ୍ୟ କହିଲେ ଯେ ଶୋଭାଯାତ୍ରାରେ ଖୁବ୍ ଶକ୍ତିଶାଳୀ ଡାକବାକ୍ୟଯନ୍ତ୍ର ବ୍ୟବହୃତ ହେବ ଏବଂ ସେଠାରୁ ସେମାନେ ଜୟପ୍ରକାଶଙ୍କ ପାଇଁ ନିର୍ଦ୍ଦିଷ୍ଟ ସଭାସ୍ଥଳୀ ଜିଲା ଖେଳପଡ଼ିଆକୁ ବିକ୍ଷୋଭ ପ୍ରଦର୍ଶନ କରିବାକୁ ଯିବେ । ଶ୍ରୀ ହରମୋହନ

ପଟ୍ଟନାୟକ ଓ ଶ୍ରୀ ବ୍ରଜ ମହାପାତ୍ର ଦୃଢ଼ ଭାବରେ ଘୋଷଣା କଲେ ଯେ ସେମାନେ ଜୟପ୍ରକାଶଙ୍କ ଆଗକୁ ଯିବା ନିମନ୍ତେ ଅବରୋଧ କରିବେ ଏବଂ ଦେଖିବେ ଯେମିତି ପୁଲିସ ହସ୍ତକ୍ଷେପ ବିନା ସେ ଆଉ ପାଦେହେଲେ ଆଗକୁ ଯାଇନପାରନ୍ତି ।"

ଏହି ମର୍ମରେ ରିପୋର୍ଟ ମଧ୍ୟ ଉପରିସ୍ଥ କର୍ତ୍ତୃପକ୍ଷଙ୍କର ହସ୍ତଗତ ହୋଇଛି । ଜୟପ୍ରକାଶ ୧୯୭୫ ମାର୍ଚ୍ଚ ୩୦ ତାରିଖ ଦିନ ପ୍ରାୟ ୧୧୮ଟାବେଳେ ସର୍ବସେବା ସଂଘର ଶ୍ରୀ ମଦନମୋହନ ସାହୁ ପ୍ରମୁଖଙ୍କ ସହିତରେ ଆସି ଢେଙ୍କାନାଳରେ ପହଞ୍ଚିଲେ । ଆଗରୁ ନିର୍ଦ୍ଧାରିତ ସମୟ ଥିଲା ୧୦ଟା; ମାତ୍ର ବାଟରେ ବିଳମ୍ବ ହୋଇଗଲା ଓ ସେଦିନର କାଣ୍ଡ ବିଷୟରେ ଯାହା ସରକାରୀ ରିପୋର୍ଟ ହେଲା ତାହା ହିଁ ସଂକ୍ଷେପରେ ଉଲ୍ଲେଖ କଲେ କି ଭୟାବହ ଷଡ଼ଯନ୍ତ୍ର କରାଯାଇଥିଲା ତାହାର ପ୍ରମାଣ ମିଳିଯିବ ।

ଜୟପ୍ରକାଶଙ୍କ ଆଗମନ ପୂର୍ବରୁ ସକାଳ ଆଠଟା ବେଳଠାରୁ ଜୟପ୍ରକାଶ ବିରୋଧୀ-ଦଳଗୁଡ଼ିକ କାଳୀପଡ଼ିଆରେ ସଭା ଆରମ୍ଭ କରିଦେଲେ । ବହୁସଂଖ୍ୟକ ସି. ପି. ଆଇ. ଲୋକ ବାହାରୁ ଆସିଥିଲେ । ବିକ୍ଷୋଭପ୍ରଦର୍ଶନକାରୀମାନେ ସମସ୍ତେ କଳାପତାକା ଧରିଥାନ୍ତି ଏବଂ ଜେ. ପିଙ୍କୁ ନିନ୍ଦାକରି ଲେଖା ପ୍ଲାକାର୍ଡ଼ ମଧ୍ୟ ସେମାନଙ୍କ ହାତରେ ଥାଏ । ବାହାରୁ ଆସିଥିବା କେତେକ ସି. ପି ଆଇ. ଲୋକ ମଧ୍ୟ ଧନୁଶର ଧରି ଆସିଥାଆନ୍ତି । ଏମାନଙ୍କ ସଂଖ୍ୟା ୫୦୦ ଯାକେ ଥିଲା ଏବଂ ପରେ ଜେ. ପିଙ୍କ ଆଗମନ ବିଳମ୍ବ ହେବାରୁ ଓ କ୍ରମାଗତ ଏମାନେ ପାଟିତୁଣ୍ଡ କରୁଥିବାରୁ ଲୋକ ସମାଗମ ବଢ଼ିଥିଲା । ଏହି ବିକ୍ଷୋଭ ପ୍ରଦର୍ଶନକାରୀମାନେ ନିଜର ସ୍ୱୀକୃତ ସ୍ଥାନରୁ ବହୁ ସଂଖ୍ୟାରେ ବାଡ଼ି ଓ ଅନ୍ୟ ଅସ୍ତ୍ରଶସ୍ତ୍ର ସାଙ୍ଗରେ ଧରି ଜୟପ୍ରକାଶଙ୍କ ସଭାସ୍ଥଳ ପାର୍ଶ୍ୱରେ ଯାଇ ପହଞ୍ଚିଲେ ଏବଂ ପୁଲିସର ବାରଣ ସତ୍ତ୍ୱେ ସେଠାରେ ରହିଲେ ।

ଜୟପ୍ରକାଶଙ୍କ ଗାଡ଼ିକୁ ଅନ୍ୟ ବାଟ ଦେଇ ସଭାସ୍ଥଳକୁ ନିଆଗଲା । ଯେମିତି ରାସ୍ତା ଛକଠାରେ ଜୟପ୍ରକାଶ ଓ ତାଙ୍କ ସହିତ ଥିବା ମଟରଗାଡ଼ି ସବୁ ଆସି ପହଞ୍ଚିଛି, ବିକ୍ଷୋଭ ପ୍ରଦର୍ଶନକାରୀମାନେ ପୁଲିସ ଘେରକୁ ଅତିକ୍ରମ କରି କଳାପତାକା ଧରି ଜୟପ୍ରକାଶଙ୍କ ଗାଡ଼ିକୁ ଘେରାଉ କରିନେଲେ ଏବଂ ତାଙ୍କୁ ଆଉ ଆଗକୁ ଯିବାକୁ ଦେଲେ ନାହିଁ । ପୁଲିସ ବହୁକଷ୍ଟରେ ସଭାସ୍ଥଳକୁ ଜୟପ୍ରକାଶଙ୍କ ଗାଡ଼ି ନେବାର ଉଦ୍ୟମ କଲା । ମାତ୍ର ବିକ୍ଷୋଭ ପ୍ରଦର୍ଶନକାରୀମାନେ ଏଥିଭିତରେ ଯାଇ ଜୟପ୍ରକାଶ ଯେମିତି ଗାଡ଼ିରୁ ଓହ୍ଲାଇ ସଭାମଞ୍ଚକୁ ଯିବାଲାଗି ବାହାରିଲେ, ତାଙ୍କ ସାମନାରେ ତାଙ୍କୁ ଶାରୀରିକ ବାଧା ଦେଲେ; ସଭାମଞ୍ଚକୁ ସେ ଯାଇପାରିଲେ ନାହିଁ ।

ଏହା ପରେ ପୁଲିସ ସହିତ ବହୁ ଧସ୍ତାଧସ୍ତି ପରେ କୌଣସି ପ୍ରକାରେ ଜୟପ୍ରକାଶ ସଭାମଞ୍ଚ ଉପରକୁ ଉଠିଲେ; ମାତ୍ର କେତେକ ଗାଡ଼ିର କାଚ ଆଦି ଏଥି ମଧ୍ୟରେ ଭାଙ୍ଗିଦିଆଗଲା । ଜୟପ୍ରକାଶ ଅସୁସ୍ଥ ଶରୀରରେ ଭୀଷଣ ରୌଦ୍ରତାପ ଭିତରେ ଏହି ଭିଡ଼ାଭିଡ଼ିରେ କିଭଳି ଯେ ବଞ୍ଚି ବାହାରିପାରିଲେ ତାହାହିଁ ବିସ୍ମୟର କଥା । ବୋଧହୁଏ ଦେଶରେ ଏକ୍ରେ ପରିବର୍ତ୍ତନ ଆସିବାଲାଗି ସେ ଯେମିତି ଏହା ପରେ ଆହୁରି ବଡ଼ ବଡ଼ ଘାଟି ପାର ହୋଇ

ବନ୍ଧି ରହିଲେ ଏବଂ ଏଡ଼େ ବଡ଼ ପ୍ରଗାନ୍ତକାରୀ ବିପ୍ଳବର ଅଧିନାୟକ ହେଲେ । ଏଠି ଏମର୍ଜେନ୍‌ସିର ୩ ମାସ ପୂର୍ବରୁ ସେମିତି ତାଙ୍କ ଉପରେ ଶାରୀରିକ ଆଘାତ କରିବାର ଷଡ଼ଯନ୍ତ୍ରରୁ ଉଦ୍ଧାର ପାଇଗଲେ ।

ଲେଖକ ଏ ସମ୍ପର୍କରେ ଗତ ଆସେମ୍ବ୍ଲି ନିର୍ବାଚନ ବେଳେ ଢେଙ୍କାନାଳର ଜଣେ ପ୍ରତ୍ୟକ୍ଷଦର୍ଶୀଙ୍କଠାରୁ ଶୁଣିଛି ଯେ ଆଗରୁ ଯୋଜନା ମୁତାବକ ଜୟପ୍ରକାଶଙ୍କ ଗାଡ଼ି ଖାଲି ଘେରିଗଲେ ନାହିଁ, ତାକୁ ଅଟକାଇ, କବାଟ ଖୋଲି ଜୟପ୍ରକାଶଙ୍କ ଉପରେ ଆଘାତ କରିବା ନିମନ୍ତେ କୌଣସି ଏମ୍. ଏଲ୍. ଏ. ଉଦ୍ୟତ ହେଉଥିବା ବେଳେ ହଠାତ୍ ସେଠାରେ ଥିବା ଜେ. ପି.ଙ୍କ ସମର୍ଥକଙ୍କ ଭିତରୁ କେହି ଜଣେ ତାଙ୍କ ଗୋଡ଼କୁ ଜୋର୍‌ରେ ଜୋତାରେ ଚକଟି ଦେବାରୁ ତାଙ୍କ ହାତ ଜେ. ପି. ଙ୍କୁ ବାହାରକୁ ଟାଣି ଆଣିବାଲାଗି ସମର୍ଥ ହେଲା ନାହିଁ; ବରଂ କେହି ହଠାତ୍ ଜୋର୍‌ରେ ମଟର କବାଟ ପକାଇଦେବାରୁ ତାଙ୍କ ହାତ ଆଙ୍ଗୁଠି ଉପରେ ମାଡ଼ ବାଜିଲା ଏବଂ ସେ ବ୍ୟସ୍ତହୋଇ ନିକଟସ୍ଥ ଜଣେ ଉଚ୍ଚପଦସ୍ଥ ଅଫିସରଙ୍କ ଘରକୁ ପଳାଇଗଲେ । ସରକାରୀ ମହଲକୁ ଏ ସବୁ ସମ୍ବାଦ ଖାଲି ଜଣା ନଥିଲା—ଉପରୁ ଏଭଳି ନିର୍ଦ୍ଦେଶ ଯାଇଥିଲା । ଆହୁରି ମଧ୍ୟ ଖବର ମିଳିଛି ଯେ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ବିଶ୍ୱାସ କରି ନଯାଇ ଉପରର ନିର୍ଦ୍ଦେଶ ସାଧାରଣତଃ ପୁଲିସ୍ ବିଭାଗ ଜରିଆରେ କାର୍ଯ୍ୟକାରୀ କରାଯାଉଥିଲା ।

ସଭାରେ ବହୁ ଲୋକ ଉପସ୍ଥିତ ଥିଲେ ମଧ୍ୟ ଅତି ପ୍ରଭାବଶାଳୀ ଡାକବାଜି ଯନ୍ତ୍ର ଖଞ୍ଜି ସଭାମଣ୍ଡପରୁ ଯେମିତି କଥା ନ ଶୁଭିବ, ସେପରି ବରାବର କରାଗଲା ଏବଂ ଜୟପ୍ରକାଶ ଶେଷକୁ ସଭାସ୍ଥଳୀରେ ହିଁ ଅଟକି ରହି ଯେପରି ତାଙ୍କର ସେଦିନର ଅନ୍ୟ କାର୍ଯ୍ୟକ୍ରମ ନ କରିପାରିବେ, ସେଥିଲାଗି ପ୍ରକାଶ୍ୟଭାବରେ ଉକ୍ତ ସ୍ଥାନରେ ଦଙ୍ଗା-ହାଙ୍ଗାମା କରାଗଲା । ଡିଉଟିରେ ଥିବା ପୁଲିସ ଲୋକଙ୍କୁ ବିକ୍ଷୋଭକାରୀମାନେ ବାଡ଼ିରେ ପ୍ରହାର କଲେ; ଗୋଇଠା, ବିଧା ମାରିଲେ; କେତେକ ପୁଲିସ କର୍ମଚାରୀ ଆହତ ହୋଇପଡ଼ିଲେ । ବାହାରୁ କେତେକ ଅସାମାଜିକ ବ୍ୟକ୍ତି ବିକ୍ଷୋଭକାରୀମାନଙ୍କ ପ୍ରରୋଚନାରେ ଜୟପ୍ରକାଶ ନାରାୟଣଙ୍କ ଦଳ ଓ ପୁଲିସ ଅଫିସରଙ୍କ ଉପରକୁ ଟେକା ପଥର ବୃଷ୍ଟି କଲେ ।

ଏହି ପରିସ୍ଥିତି ଯେ ଅତି ଗୁରୁତର ହୋଇଥିଲା, ଏଥିରେ ସନ୍ଦେହ ନାହିଁ, କାରଣ ଏହି ସନ୍ଦର୍ଭରେ ଏକ ବିବୃତି ଦେଇ ତତ୍‌କାଳୀନ ପ୍ରାଦେଶିକ କଂଗ୍ରେସ ସମ୍ପାଦକ କହିଥିଲେ ଯେ, "ଶ୍ରୀ ଜୟପ୍ରକାଶ ନାରାୟଣ ଢେଙ୍କାନାଳରେ ପହଞ୍ଚିଲାକ୍ଷଣି ଫାସିଷ୍ଟବିରୋଧୀ ସଂଗ୍ରାମ ସମିତି ପକ୍ଷରୁ ହଜାର ହଜାର ଲୋକ ଶାନ୍ତିପୂର୍ଣ୍ଣ ଭାବରେ ବିକ୍ଷୋଭକରି ଜୟପ୍ରକାଶଙ୍କ ମତବାଦର ପ୍ରତିବାଦ କରିଥିଲେ (ସମାଜ ୨-୪-୭୫); ଏବଂ ସେହି ସଂଖ୍ୟାରେ ସୋସିଆଲିଷ୍ଟପାର୍ଟି ସଭ୍ୟ ପ୍ରଶାନ୍ତ ମିଶ୍ର ତାଙ୍କ ବିବୃତିରେ ଲେଖିଲେ, "ଦକ୍ଷିଣପନ୍ଥୀ କମ୍ୟୁନିଷ୍ଟ ପତାକା ଏବଂ କଳାପତାକାଧାରୀ ମୁଷ୍ଟିମେୟ ଲୋକଙ୍କ କାର୍ଯ୍ୟର ଉଦ୍ଦେଶ୍ୟ ଜୟପ୍ରକାଶଙ୍କ ସଭାକୁ ଭଣ୍ଡୁର କରିଦେବା । ଏହା ପଛରେ ବିରାଟ ଷଡ଼ଯନ୍ତ୍ର ଥିଲା ।" (ସମାଜ ୨-୪-୭୫)

ସେ ହିଂସାକାଣ୍ଡର ବିଚାରବିଭାଗୀୟ ତଦନ୍ତ ଏବଂ କଂଗ୍ରେସ ସଂପାଦକ ଲାଠିମାଡ଼ର ଉଚ୍ଚ ବିଭାଗୀୟ ତଦନ୍ତ ଦାବି କରିଥିଲେ । ଶ୍ରୀ ଦେବେନ୍ଦ୍ର ଶତପଥୀ ଏମ୍.ପି. ମଧ୍ୟ ଲାଠିଚାଳନାର ତଦନ୍ତ ଦାବି କରିଥିଲେ । (ସମାଜ, ୧୪।୩।୭୫)

ପୁଲିସ ରିପୋର୍ଟ, ଉଭୟ ପକ୍ଷର ବିବୃତି ଏବଂ ଦେଖଣାହାରୀଙ୍କ ସହ କଥାବାର୍ତ୍ତାରୁ ଏହା ସ୍ପଷ୍ଟ ପ୍ରମାଣିତ ଯେ, ଜୟପ୍ରକାଶଙ୍କ ଉପରେ ଶାରୀରିକ ଆଘାତ କରିବା ନିମନ୍ତେ ଏଠାରେ ଯୋଜନା ହୋଇଥିଲା । ଏହା ହରିଆନାର କୁରୁକ୍ଷେତ୍ର ଯିବା ପଥର ପ୍ରତିବନ୍ଧକ ଅପେକ୍ଷା ଆହୁରି ଭୟଙ୍କର ଓ ମାରାତ୍ମକ ।

ସଂପୂର୍ଣ୍ଣରୂପେ ସରକାରୀ ପ୍ରୋତ୍ସାହନ ଥିଲା ଏବଂ ମୁଖ୍ୟମନ୍ତ୍ରୀ ଓ ଉଚ୍ଚପଦସ୍ଥ ପୁଲିସ କର୍ମଚାରୀଙ୍କ ଜ୍ଞାତସାରରେ ଏହା ଘଟିଥିଲା, ନଚେତ୍ ସେମାନଙ୍କର ଆତ୍ମୀୟସ୍ୱଜନମାନେ ପ୍ରତ୍ୟକ୍ଷଭାବରେ ଏଥିରେ ଜଡ଼ିତ ରହିପାରିନଥାନ୍ତେ ଏବଂ ଆଇ. ଜି. ଙ୍କର ସମ୍ବନ୍ଧି ହରମୋହନ ପଟ୍ଟନାୟକ ଜିଲ୍ଲା କର୍ତ୍ତୃପକ୍ଷଙ୍କ ସମ୍ମୁଖରେ ଶାରୀରିକ ଅବରୋଧ ଅବଶ୍ୟ କରାଯିବ ବୋଲି କହିଲା ପରେ ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଇନଥାନ୍ତା କାହିଁକି ?

ଏହା ଢେଙ୍କାନାଳରେ ଅଘଟନ ଘଟିଲା ନାହିଁ—ସର୍ବସେବା ସଂଘର ଶ୍ରୀ ମଦନମୋହନ ସାହୁ—ଯେ କି ଜୟପ୍ରକାଶଙ୍କ ଗସ୍ତକମର ବ୍ୟବସ୍ଥାପକ ଥିଲେ ଏବଂ ତାଙ୍କ ସହ ସବୁସ୍ଥାନରେ ଓଡ଼ିଶା ଗସ୍ତ ବେଳେ ଉପସ୍ଥିତ ଥିଲେ, ତାଙ୍କଠାରୁ ପ୍ରକାଶ ଯେ, ଝାରସୁଗୁଡ଼ାରେ ଗାଡ଼ିରୁ ଓହ୍ଲାଇବା କ୍ଷଣଠାରୁ କଟକ ପର୍ଯ୍ୟନ୍ତ ସର୍ବତ୍ର କଳାପତାକା ପ୍ରଦର୍ଶନ, ଅଶ୍ଳୀଳ ଭାଷାରେ ଗାଳିଗୁଲଜ ଏବଂ ନାନା ବାଧାବିଘ୍ନ ସୃଷ୍ଟି କରାଯାଇଥିଲା । ପୁଲିସ ରାସ୍ତାରେ ନିରାପତ୍ତା ଲାଗି ମୁତୟନ ଥିଲେ; ମାତ୍ର ଗଣ୍ଡଗୋଳକାରୀଙ୍କୁ ଆଗରୁ ନିବର୍ତ୍ତାଇବା ନିମନ୍ତେ କୌଣସି ସରକାରୀ ନିର୍ଦ୍ଦେଶ ନଥିଲା । ଚୌଦ୍ୱାରରେ ସେହିପରି ଗାଡ଼ି ଉପରେ ଟେକାପଥର ପକାଇବା ଫଳରେ ଗାଡ଼ି କାଚ ଇତ୍ୟାଦି ଭାଙ୍ଗିଯାଇଥିଲା ଏବଂ କଟକ ସହରରେ ରେଭେନ୍‌ସା କଲେଜ ଛକ ଓ ଅନ୍ୟ କେତେକ ସ୍ଥଳରେ କଳାପତାକା ପ୍ରଦର୍ଶନ ଓ ଅବରୋଧ ସୃଷ୍ଟି କରାହୋଇଥିଲା । କିନ୍ତୁ ସାଧାରଣ ଜନତା ଏତେ ବହୁଳ ସଂଖ୍ୟାରେ ଥିଲେ ଯେ, ସେଥିରେ ଏମାନଙ୍କୁ ଢେଙ୍କାନାଳ ପରି ହିଂସାକାଣ୍ଡ ଭିଆଇବାର ମଉକା ମିଳିଲା ନାହିଁ ।

ଏହି ସବୁ ଘଟଣାକୁ ଲକ୍ଷ୍ୟ କରି ଜୟପ୍ରକାଶ ନାରାୟଣ ନିଜେ କହିଲେ—"ଭାରତର ବିଭିନ୍ନ ସ୍ଥାନରେ ତାଙ୍କର ଗସ୍ତକାଳ ଭିତରେ କେବଳ ହରିଆନା ଓ ଓଡ଼ିଶାକୁ ଛାଡ଼ିଦେଲେ ଆଉ କେଉଁଠାରେ ତାଙ୍କୁ କଳାପତାକା ଓ ବିକ୍ଷୋଭ ପ୍ରଦର୍ଶନ କରାଯାଇନାହିଁ ।" (ସମାଜ, ୧. ୪. ୭୫) । ଜେ: ପି: ଏ କଥା ଓଡ଼ିଶାରେ କହିଥିଲେ ଏବଂ ତାଙ୍କୁ ସେତେବେଳକୁ ଜଣା ନ ଥିଲା ଯେ କଲିକତାରେ ପହଞ୍ଚିଲେ ସେହିଭଳି କଳାପତାକା ଓ ବିକ୍ଷୋଭର ସମ୍ମୁଖୀନ ହେବାକୁ ପଡ଼ିବ । ସେଥିଲାଗି ଆଗରୁ ଯୋଜନା ହୋଇସାରିଥିଲା । କଲିକତାରୁ ପ୍ରକାଶିତ ୩୧।୩ର ଏକ ସମ୍ବାଦରେ ଜଣାଯାଇଥିଲା ଯେ, "କଂଗ୍ରେସର ଦୁଇ ମୁଖ୍ୟ ଶାଖା—ପ୍ରଦେ

କଂଗ୍ରେସ ଓ ଗ୍ରାମ ପରିଷଦ ଶ୍ରୀ ଜୟପ୍ରକାଶଙ୍କୁ କଳାପତାକା ପ୍ରଦର୍ଶନ କରିବେ ବୋଲି ମସୁଧା କରିଛନ୍ତି ।" (ସମାଜ, ୧-୪-୭୫)

ତେଣୁ ବାଧ୍ୟବାଧ୍ୟ ଭାବରେ ବିହାର, ପଶ୍ଚିମ-ବଙ୍ଗଳା ଓ ଓଡ଼ିଶାରେ ଜୟପ୍ରକାଶଙ୍କୁ ହତ୍ୟା କରି ନ ପାରିଲେ ଅନ୍ତତଃ ଅସହାୟ ଓ ଅକ୍ଷମ ଅବସ୍ଥାରେ ପକାଇଦେବାର ବିରାଟ ଷଡ଼ଯନ୍ତ୍ର ହୋଇଥିଲା ।

ଓଡ଼ିଶାରେ, ଉପରେ ବର୍ଣ୍ଣିତ ହୋଇଛି ଯେ, ଏହି ବିରୋଧ ପଛରେ ବ୍ୟକ୍ତିଗତ ଓ ନୀତିଗତ ପ୍ରେରଣା ରହିଥିଲା । ନନ୍ଦିନୀ ଶତପଥୀ କଟକ ଉପନିର୍ବାଚନରେ ଅଜସ୍ର ଧନ ବ୍ୟୟ କରିବା କଥା ଜୟପ୍ରକାଶ ଖାଲି ପ୍ରଧାନମନ୍ତ୍ରୀଙ୍କ ପାଖରେ ଓ ଭାରତର ଅନ୍ୟ ପ୍ରଦେଶର ସଭା ସମିତିରେ ଉଠାଇ ନ ଥିଲେ—ଏହି ଗସ୍ତବେଳେ ବି ମାର୍ଚ୍ଚ ୩୧ ସନ୍ଧ୍ୟାରେ ବାଣୀବିହାରଠାରେ ହୋଇଥିବା ବିରାଟ ଛାତ୍ରସଭାରେ ସେ ଏ ବିଷୟ ଉଲ୍ଲେଖ କଲେ ଏବଂ କହିଲେ—"ଆମର ଗରିବ ଦେଶରେ କେବଳ ଅର୍ଥବଳରେ ନିର୍ବାଚନ ଲଢ଼ାଗଲେ ବହୁ ସାଧାରଣ ଲୋକ ନିର୍ବାଚନ ଲଢ଼ିବାରୁ ବଞ୍ଚିତହେବେ । ମୁଖ୍ୟମନ୍ତ୍ରୀ ଶ୍ରୀମତୀ ଶତପଥୀ କଟକ ଉପନିର୍ବାଚରେ ୩୦ ଲକ୍ଷ ଟଙ୍କା ଖରଚ କରିଥିବାର ଜଣେ କଂଗ୍ରେସୀ ମନ୍ତ୍ରୀ ତାଙ୍କୁ କହିଥିବା ସ୍ଥଳେ ଅନ୍ୟ ଜଣେ କଂଗ୍ରେସ ନେତା ୪୦ ଲକ୍ଷ ଟଙ୍କା ଖରଚ କରିଛନ୍ତି ବୋଲି ତାଙ୍କୁ କହିଲେ ।" (ସମାଜ, ୨-୪-୭୫)

ତେଣୁ ଜୟପ୍ରକାଶଙ୍କ ଓଡ଼ିଶା ଆଗମନକୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ତାଙ୍କ ବିରୁଦ୍ଧରେ ବ୍ୟକ୍ତିଗତ ଅଭିଯାନ ବୋଲି ମଣିଲେ ଓ ସାରା ସରକାରୀ କଳର ପ୍ରୟୋଗ ହେଲା ତାଙ୍କର ଗସ୍ତକ୍ରମକୁ ବିଫଳ କରିବା ନିମନ୍ତେ । ଢେଙ୍କାନାଳ ତାଙ୍କର ନିର୍ବାଚନମଣ୍ଡଳୀ ହୋଇ-ଥିବାରୁ ସେଠାରେ ନିଜ ଲୋକ, କଂଗ୍ରେସ ଓ କମ୍ୟୁନିଷ୍ଟଙ୍କ ଜରିଆରେ ତାଙ୍କ ଉପରେ ବ୍ୟକ୍ତିଗତ ଆଘାତ ଦେବା ନିମନ୍ତେ ପ୍ରକାଶ୍ୟ ଉଦ୍ୟମ ହୋଇଥିଲା । ଏହା ପରେ ଜେ. ପି. ଯେ ଅସୁସ୍ଥ ହୋଇପଡ଼ିଲେ ଏବଂ ତାଙ୍କର ଗଞ୍ଜାମ ଓ କୋରାପୁଟ ପ୍ରଭୃତିର କାର୍ଯ୍ୟକ୍ରମ ସ୍ଥଗିତ ରଖିବାକୁ ପଡ଼ିଲା, ଏଥିରେ ବିସ୍ମିତ ହେବାର କିଛି ନାହିଁ ।

ସେହିଭଳି ଏପ୍ରିଲ ପହିଲା ତାରିଖରେ ଭୁବନେଶ୍ୱରଠାରେ ତାଙ୍କର ଯେଉଁ ସଭା ହେବାର ଘୋଷଣା କରାଯାଇଥିଲା ତାକୁ ଭଣ୍ଡୁର କରିବା ନିମନ୍ତେ ପରେଡ଼ ପଡ଼ିଆରେ ଓଡ଼ିଶା ସରକାର ତରଫରୁ ବିରାଟ ଆଡ଼ମ୍ବର, ନୃତ୍ୟଗୀତ ବ୍ୟବସ୍ଥା କରାଯାଇ 'ସ୍ୱତନ୍ତ୍ର ଉତ୍କଳ ଦିବସ' ପାଳନର ଆୟୋଜନ କରାଯାଇଥିଲା । ମାତ୍ର ଏହା ସତ୍ତ୍ୱେ ଭୁବନେଶ୍ୱରରେ ଏକ ବିରାଟ ସଭାରେ ଜେ. ପି. ଭାଷଣ ଦେଲେ । ଭୁବନେଶ୍ୱରରେ ସେ ସାମ୍ବାଦିକଙ୍କୁ କହିଲେ—

"ଦେଶର ଅନ୍ୟାନ୍ୟ ରାଜ୍ୟଭଳି ଓଡ଼ିଶାରେ ମଧ୍ୟ ସେ ବହୁପରିମାଣରେ ଲୋକସାଧାରଣଙ୍କଠାରୁ ସମର୍ଥନ ପାଇଛନ୍ତି । ଜନସାଧାରଣ, ଛାତ୍ର, ଯୁବକମାନଙ୍କଠାରୁ ବିହାରରେ ତାଙ୍କୁ ଯେପରି ସମର୍ଥନ ମିଳିଥିଲା, ଓଡ଼ିଶାରେ ମଧ୍ୟ ସେପରି ମିଳିଛି । ଏଥିରୁ ଜଣାଯାଉଛି ଯେ ଏଠାରେ ମଧ୍ୟ ଜନସାଧାରଣ ଓ ଛାତ୍ରମାନେ ବିହାରଭଳି ପନ୍ଥା ଅନୁସରଣ କରିବାକୁ ଚେଷ୍ଟାକରୁଛନ୍ତି ।" (ସମାଜ, ୨-୪-୭୫)

ଓଡ଼ିଶାର ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ କିନ୍ତୁ ପରିସ୍ଥିତିକୁ ଭିନ୍ନ ଦୃଷ୍ଟିରେ ଦେଖିଲେ । ସେ କହିଲେ—ଜୟପ୍ରକାଶଙ୍କୁ ଓଡ଼ିଶାରେ ଲୋକ ସମର୍ଥନ ମିଳିଲାନାହିଁ । ଯୁବ ଓ ଛାତ୍ର ମହଲକୁ ପ୍ରଭାବିତ କରିବାକୁ ଖୁବ୍ ଉଦ୍ୟମ କରିଥିଲେ । ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ସାଧାରଣ ସଭାମାନ କରିଥିଲେ । କୌଣସି ଶ୍ରେଣୀରୁ ଉତ୍ସାହ ନ ଦେଖି ବଡ଼ ନିରାଶ ହୋଇ ଫେରିଛନ୍ତି ଏବଂ କ୍ରୋଧାନ୍ୱିତ ହୋଇ ଘୋଷଣା କରିଛନ୍ତି ଯେ ବିହାର ପଶ୍ଚାତ୍‌କୁ ସେ ବ୍ୟକ୍ତିଗତ ଭାବରେ ଓଡ଼ିଶାରେ ଆନ୍ଦୋଳନର ପରିଚାଳନା କରିବେ ।

ଆତ୍ମପ୍ରବଞ୍ଚକତାର ଚରମ । ଏହି ଓଡ଼ିଶାରେ ଜୟପ୍ରକାଶଙ୍କ ଆନ୍ଦୋଳନକୁ ପଣ୍ଡ କରିବା ନିମନ୍ତେ ଏବଂ ଦବାଇଦେବା ନିମନ୍ତେ କିଭଳି କଂଗ୍ରେସ-କମ୍ୟୁନିଷ୍ଟ ମେଣ୍ଟ ବାନ୍ଧି ଫାସିଷ୍ଟ ବିରୋଧୀ ସମ୍ମିଳନୀ ଏବଂ ଅନ୍ୟାନ୍ୟ ବ୍ୟବସ୍ଥା କରାଯାଇଥିଲା, ତାହା ପରବର୍ତ୍ତୀ ଅଧ୍ୟାୟରେ ଆଲୋଚନା କରାଯିବ । କାରଣ ନନ୍ଦିନୀ ଶତପଥୀ ବାସ୍ତବିକ୍ ଇନ୍ଦିରା ଗାନ୍ଧୀଙ୍କ ପ୍ରତି ଯେତିକି ଅନୁଗତ ଥିଲେ, ତହିଁରୁ ଅଧିକ ଆନୁଗତ୍ୟ ରହିଥିଲା ଭାରତୀୟ କମ୍ୟୁନିଷ୍ଟ ପାର୍ଟି ପ୍ରତି । ଏଠି କଂଗ୍ରେସ ଶାସନ ବୋଇଲେ ମୁଖ୍ୟତଃ କମ୍ୟୁନିଷ୍ଟଙ୍କ ଇଙ୍ଗିତାନୁସାରେ ଚାଲିତ ସରକାର ବୋଲି ଲୋକେ ବିଚାରୁଥିଲେ । ସ୍ଥାନୀୟ କମ୍ୟୁନିଷ୍ଟ ନେତାଙ୍କ ବ୍ୟତୀତ କେନ୍ଦ୍ରର ଭୂପେଶ ଗୁପ୍ତ ଓଡ଼ିଶାର ଦାୟିତ୍ୱ ନେଇଥିଲେ ଏବଂ ସେ ଥିଲେ ନନ୍ଦିନୀ ଶତପଥୀଙ୍କର ଜଣେ ମୁଖ୍ୟ ପରାମର୍ଶଦାତା । ତେଣୁ ଓଡ଼ିଶାରେ ଜୟପ୍ରକାଶ କେବଳ ନନ୍ଦିନୀଙ୍କର ବ୍ୟକ୍ତିଗତ କ୍ଷମତା ଦୁର୍ନୀତିଗ୍ରସ୍ତ ବ୍ୟକ୍ତିଙ୍କର ସମ୍ମୁଖୀନ ହୋଇନଥିଲେ । ଏଠାରେ ଜୟପ୍ରକାଶଙ୍କୁ କଂଗ୍ରେସ ମୁଖାପିନ୍ଧା ଏକପ୍ରକାର କମ୍ୟୁନିଷ୍ଟ ଶାସନର ମଧ୍ୟ ସମ୍ମୁଖୀନ ହେବାକୁ ପଡ଼ିଥିଲା । ଏଠାରେ ଯେଉଁସବୁ ଅଶୋଭନୀୟ କାଣ୍ଡ ଘଟିଗଲା, ତାହା ଅନ୍ୟ କଂଗ୍ରେସ ରାଜ୍ୟରେ ସମ୍ଭବ ହୁଅନ୍ତା ନାହିଁ ।

# କଂଗ୍ରେସ ଓ କମ୍ୟୁନିଷ୍ଟ ମିଳିତ ଅଭିଯାନ

୧୯୭୫ ଏପ୍ରିଲ ୧ ରେ ଭୁବନେଶ୍ୱର ସାମ୍ବାଦିକ ସମ୍ମିଳନୀର ନିମ୍ନଲିଖିତ ବିବରଣୀ ପ୍ରକାଶପାଇଥିଲା ।

"ଓଡ଼ିଶାରେ ବିହାର ଧରଣର ଆନ୍ଦୋଳନ ପାଇଁ ଅନୁକୂଳ ଅବସ୍ଥା ସୃଷ୍ଟି ହେଲାଣି କି ବୋଲି ପଚରାଯିବାରେ ଶ୍ରୀ ନାରାୟଣ କହିଲେ ଯେ, ଏଠାରେ ଦୁର୍ନୀତି, ଦାରିଦ୍ର୍ୟ ଓ ବେକାରି ସମସ୍ୟା ପ୍ରକୃତ ରହିଛି । ସେ ଦୃଷ୍ଟିରୁ ଲୋକେ ପରିବର୍ତ୍ତନ ଚାହୁଁଛନ୍ତି ।

ଶ୍ରୀ ନାରାୟଣ କହିଲେ ଯେ, ଶ୍ରୀମତୀ ଗାନ୍ଧୀଙ୍କ ସହିତ ପୁନର୍ବାର ଆଲୋଚନା ଲାଗି ସେ ସବୁବେଳେ ପ୍ରସ୍ତୁତ ଅଛନ୍ତି । ସେ କହିଲେ ଯେ, ଆଲୋଚନା ଦ୍ୱାରା ସମସ୍ୟାର ସମାଧାନ କରିବା ପରିବର୍ତ୍ତେ କ୍ଷମତାରେ ଥିବା ଲୋକେ ଦମନନୀତି ଧରିବାକୁ ପସନ୍ଦ କରୁଛନ୍ତି । ଦମନ-ମୂଳକ ବ୍ୟବସ୍ଥା ଯେତେ ବଢ଼ିବ, ଅବସ୍ଥା ସେତିକି ଖରାପ ହେବ ବୋଲି ସେ ମତ ଦେଇଥିଲେ ।" (ସମାଜ, ୨ । ୪ । ୭୫)

ଏହା ପୂର୍ବରୁ ଜୟପ୍ରକାଶ ଗିରଫ ହେବାର ସମ୍ବାଦ ଚାରିଆଡ଼େ ବ୍ୟାପିଯାଇଥିଲା । ବିହାର ମୁଖ୍ୟମନ୍ତ୍ରୀଙ୍କର ଦିଲ୍ଲୀଠାରେ ଏକ ବିବୃତି ଯୋଗୁଁ ସେ ଗିରଫ ହୋଇଗଲେଣି ବୋଲି ଏକ ଜନରବ ବିହାରରେ ପ୍ରଚାରିତ ହୋଇଯିବା ଫଳରେ ବିହାର ପରିସ୍ଥିତି ଉତ୍ତେଜନା-ମୂଳକ ହୋଇ ଉଠିଥିଲା । ତେଣୁ ବିହାର ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କର ବିବୃତି ସଂଶୋଧନ କରିବାକୁ ପଡ଼ିଲା । ଏହି ସମୟରେ ଫେବୃୟାରୀ ୩ ତାରିଖରେ ଉତ୍ତରପ୍ରଦେଶର ଗୋରଖପୁରରେ ଏକ ସାଧାରଣ ସଭାରେ ଭାଷଣ ଦେଇ ଜେ. ପି. ଇନ୍ଦିରା ଗାନ୍ଧୀଙ୍କୁ ଚେତାବନୀ ଶୁଣାଇ କହିଥିଲେ—

"୧୯୪୨ରେ କିଭଳି ଚାରିଆଡ଼େ ସ୍ୱତଃସ୍ଫୂର୍ତ୍ତ ହିଂସା ବ୍ୟାପିଯାଇଥିଲା ଇନ୍ଦିରାଗାନ୍ଧୀଙ୍କର ସ୍ମରଣ ଥିବ । ତେଣୁ ମତେ ଗିରଫ କଲେ ଆନ୍ଦୋଳନ ଦବିଯିବ ନାହିଁ, ଏହା କେବଳ ବିହାର ନୁହେଁ, ଅନ୍ୟ ରାଜ୍ୟକୁ ପ୍ରସାର ଲାଭ କରିବ ।"

ଏହିସବୁ ଘୋଷଣା ଓ କଥାବାର୍ତ୍ତା ବିଫଳ ହେଲେ ସୁଦ୍ଧା ଜୟପ୍ରକାଶ ଗାନ୍ଧୀଙ୍କଙ୍କ ପରି ତାଙ୍କଆଡ଼ୁ କେବେହେଲେ ଆଳାପ-ଆଲୋଚନାର ପଥ ରୁଦ୍ଧ କରିନଥାନ୍ତି । ଚନ୍ଦ୍ରଶେଖର ମଧ୍ୟ ମିଳାମିଶା ଉଦ୍ୟମ ଜାରି ରଖିଥିଲେ । ମାତ୍ର ଆନ୍ଦୋଳନର ଦ୍ରୁତ ବିସ୍ତାରରେ କମ୍ୟୁନିଷ୍ଟ ପାର୍ଟି ଅଧିକ ଭୟଚକିତ ହୋଇପଡ଼ିଲା ଏବଂ ଯେଉଁମାନେ ମିଳାମିଶା ବିଷୟ ଉଲ୍ଲେଖ କରୁଥିଲେ, ସେମାନଙ୍କୁ ଇନ୍ଦିରାଙ୍କର ଓ ଦେଶର ଶତ୍ରୁ ଏବଂ ପୁଞ୍ଜିପତି ଧନୀ ପାଶ୍ଚାତ୍ୟ ଦେଶଗୁଡ଼ିକର ଏଜେଣ୍ଟ ବୋଲି ଚିତ୍କାର କରୁଥିଲେ । ସେମାନେ ଆନ୍ଦୋଳନକୁ ଆହୁରି ତୀବ୍ର ପ୍ରତିଦ୍ୱନ୍ଦ୍ୱିତାମୂଳକ ରୂପ ଦେଲେ । ଦେଶସାରା ଏକ ନୂଆ ଅଧ୍ୟାୟ ଆରମ୍ଭ

ହୋଇଗଲା—କଂଗ୍ରେସ କମ୍ୟୁନିଷ୍ଟଙ୍କର ମିଳିତ ଉଦ୍ୟମରେ ଫାସିଷ୍ଟବିରୋଧୀ ସମ୍ମିଳନୀ । କଂଗ୍ରେସ କମ୍ୟୁନିଷ୍ଟ ଏକତ୍ର ମିଳି କାର୍ଯ୍ୟ କରିବା ସ୍ଥିରହେଲା ଏବଂ ଏହି ଘଟଣା ପୁଣି ଓଡ଼ିଶାରେ କଂଗ୍ରେସ ମଧ୍ୟରେ ତୀବ୍ର ବିରୋଧ ଦେଖାଦେଲା ।

ଏହିକବେଳେ, ମେ ମାସରେ, କଟକରେ ହୋଇଥିବା ଫାସିଷ୍ଟବିରୋଧୀ ସମ୍ମିଳନୀରେ କମ୍ୟୁନିଷ୍ଟ ନେତା ଭୁପେଶ ଗୁପ୍ତଙ୍କ ଭାଷଣ ଉଲ୍ଲେଖଯୋଗ୍ୟ :

"ଏଠାରେ ଶନିବାର ଦିନ ହୋଇଥିବା ସମ୍ମିଳନୀରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ନେତା ଭୁପେଶ ଗୁପ୍ତ ଓଡ଼ିଶାରେ ଯେଉଁ କଂଗ୍ରେସ ନେତାମାନେ ଜୟପ୍ରକାଶ ନାରାୟଣଙ୍କ ସହିତ କଥାବାର୍ତ୍ତା କରିବା ନିମନ୍ତେ ନିବେଦନ କରୁଛନ୍ତି, ତାଙ୍କର କଟୁ-ସମାଲୋଚନା କରିଥିଲେ । ଯେଉଁମାନେ ଜେ. ପିଙ୍କ ପ୍ରଶଂସା କରୁଛନ୍ତି ଏବଂ ସି. ପି. ଆଇ.କୁ ସମାଲୋଚନା କରୁଛନ୍ତି, ସେମାନଙ୍କୁ ତିରସ୍କାର କରିଥିଲେ ।

ସେ କହିଲେ, ଜେ.ପି.ଙ୍କ ଆନ୍ଦୋଳନ ସହ ମିଳାମିଶା କଥାବାର୍ତ୍ତା ହୋଇ ନପାରେ । ହିଟଲରଙ୍କର ଜର୍ମାନୀରେ ଆବିର୍ଭାବ ବେଳେ ଯେମିତି ସବୁ ଲକ୍ଷଣ ଦେଖାଯାଉଥିଲା, ଜେ. ପି.ଙ୍କ ଆନ୍ଦୋଳନରେ ଠିକ୍ ସେହିଭଳି ଭାବ ଦେଖିବାକୁ ମିଳୁଛି । ହିଟଲର କ୍ଷମତା ହାସଲ କରିବା ନିମନ୍ତେ ଏମିତି ଅନ୍ୟ ଦଳ ଓ ଶକ୍ତିମାନଙ୍କ ସହିତ କଥାବାର୍ତ୍ତା କରିବାର କୌଶଳ ପ୍ରୟୋଗ କରିଥିଲା । ଏହି କାରଣରୁ ସି. ପି. ଆଇ. ଜୟପ୍ରକାଶଙ୍କ ସହ କଥାବାର୍ତ୍ତାର ବିରୋଧୀ ଏବଂ ତାଙ୍କର ଫାସିଷ୍ଟ ଆନ୍ଦୋଳନକୁ ସବୁମନ୍ତେ ପ୍ରତିରୋଧ କରିବ ।

(ହି. ଷ୍ଟାଣ୍ଡାର୍ଡ, ୧୩ । ୫ । ୭୫)

"ଶ୍ରୀ ଗୁପ୍ତ ଆହୁରି କହିଲେ ଯେ, ଜୟପ୍ରକାଶ ନାରାୟଣ ତାଙ୍କ ଜୀବନରେ କେବେହେଲେ ଗଣତନ୍ତ୍ରରେ ବିଶ୍ୱାସ କରିନାହାନ୍ତି ଏବଂ ଆମେରିକାର ସାମ୍ରାଜ୍ୟବାଦର ସେ ଜଣେ ପ୍ରଧାନ ସମର୍ଥକ । ସେ ସି· ଆଇ. ଏ. ର ମିଟିଂରେ ମଧ୍ୟ ଯୋଗଦେଇଛନ୍ତି ।

ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଆଗରୁ ଏଥିରେ ବକ୍ତୃତା କରି କହିଲେ ଯେ, ଆମ ଦେଶର ବିଭିନ୍ନ ସ୍ଥାନରେ ଏ ଯେଉଁସବୁ ଆନ୍ଦୋଳନ ହେଉଛି ଏହା ଅକସ୍ମାତ୍ କେଉଁଠି କେମିତି ହୋଇଯାଉଛି ବୋଲି ଭାବିବା ଭୁଲ୍ ହେବ । ଦେଶରେ ଫାସିଜିମ୍ ଆଣିବା ନିମନ୍ତେ ଏହା ହେଲା ଏକ ସୁଚିନ୍ତିତ ଯୋଜନା ।

କେନ୍ଦ୍ର ଶ୍ରମମନ୍ତ୍ରୀ ରଘୁନାଥ ରେଡ୍ଡି କହିଲେ ଯେ, ଭାରତରେ ଯେଉଁମାନେ ସମ୍ପୂର୍ଣ୍ଣ କ୍ରାନ୍ତି ଧ୍ୱନି ଉଠାଉଛନ୍ତି, ସେମାନେ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଭାଙ୍ଗିଦେବା ନିମନ୍ତେ ଭାରତୀୟ ପୁଞ୍ଜିବାଦର ଏଜେଣ୍ଟ ରୂପେ କାର୍ଯ୍ୟକରୁଛନ୍ତି ।" (ହି. ଷ୍ଟାଣ୍ଡାର୍ଡ, ୧୩ । ୫ । ୭୫)

ଅନ୍ୟାନ୍ୟ ଯାହା କରାଯାଉଥାଉପଛକେ, ଓଡ଼ିଶାରେ କଂଗ୍ରେସ ଓ କମ୍ୟୁନିଷ୍ଟ ପାର୍ଟି ଏକତ୍ର ମିଳିତଭାବରେ ଜେ. ପି.ଙ୍କର ବିରୋଧ କରିବା ନିମନ୍ତେ ସ୍ଥିର କଲେ । ଓଡ଼ିଶାର ବହୁ କଂଗ୍ରେସ ଲୋକ ଜେ· ପି. ଆନ୍ଦୋଳନକୁ ସମର୍ଥନ ନକରୁଥିଲେ ପୁଣି କମ୍ୟୁନିଷ୍ଟ ପାର୍ଟି

ସହିତ ମିଳି ଏକାଠି ଅଭିଯାନ କରିବାର ବିରୋଧୀ ଥିଲେ । ମାତ୍ର ନନ୍ଦିନୀ ଶତପଥୀ କେନ୍ଦ୍ରରୁ ଏଭଳି ପାର୍ଟିସ୍ତରରେ ମିଳିତ କାର୍ଯ୍ୟ କରିବାର କୌଣସି ନିର୍ଦ୍ଦେଶ ନ ଆସିଥିଲେ ସୁଦ୍ଧା, କୁଜଙ୍ଗରେ ଏକ କଂଗ୍ରେସ-କମ୍ୟୁନିଷ୍ଟ-ସମ୍ମିଳନୀରେ କହିଲେ—"ଆମ ଦେଶର ଗଣତାନ୍ତ୍ରିକ ମାନଦଣ୍ଡକୁ ଚୂରମାର କରିବାନିମନ୍ତେ ଦେଶର ଫାସିଷ୍ଟ ଶକ୍ତିଗୁଡ଼ିକ ଯେଉଁ କୁତ୍ସିତ ଧ୍ୱଂସକାରୀ ମୁଣ୍ଡ ଟେକିଛନ୍ତି, ତାକୁ ଏକସଙ୍ଗରେ ମିଳିତ ହୋଇ କଂଗ୍ରେସ ଓ କମ୍ୟୁନିଷ୍ଟ କର୍ମୀମାନେ ପ୍ରତିରୋଧ କରିବେ ।" (ଏ. ବି. ପତ୍ରିକା, ୧୯ । ୪ ।୭୫)

ଜୟପ୍ରକାଶଙ୍କ ସଭାସମିତିର କୌଣସି ପ୍ରଭାବ ପଡ଼ିନାହିଁ ବୋଲି ଏଣେ ବିବୃତି ଦେଇ ତେଣେ ଅତି ଆତଙ୍କିତ ହୋଇ ଲକ୍ଷ ଲକ୍ଷ ସରକାରୀ ଓ ବେସରକାରୀ ଧନ ବ୍ୟୟ କରାଯାଇ ପ୍ରଦେଶ ସାରା ବ୍ୟାପକ ପ୍ରଚାର ଓ ଅଭିଯାନ ଚାଲିଲା । ଜୟପ୍ରକାଶ ତାଙ୍କର ସାମ୍ବାଦିକ ସମ୍ମିଳନୀରେ ଓଡ଼ିଶାର ଯୁବକ, ଛାତ୍ର ଓ ଅନ୍ୟମାନେ ବିହାର ପରି ଆଗ୍ରହ ପ୍ରକାଶ କରୁଛନ୍ତି କହିସିବାରୁ କଂଗ୍ରେସ ଓ କମ୍ୟୁନିଷ୍ଟଙ୍କୁ ଆତଙ୍କ ଗ୍ରାସ କରିଥିଲା ।

ଏଥିରେ ଓଡ଼ିଶା ଏତେ ଆଗୁଆ ହେବାର ମୁଖ୍ୟ କାରଣ ହେଲା, ନନ୍ଦିନୀ ଶତପଥୀ କଂଗ୍ରେସମୁଖା ପିନ୍ଧି ବାସ୍ତବିକ କମ୍ୟୁନିଷ୍ଟ ପାର୍ଟିର ବୋଲକରା ହୋଇ କାମ କରୁଥିଲେ । ଏ ସମ୍ବନ୍ଧରେ ଷ୍ଟେଟ୍‌ସମ୍ୟାନ୍ ପତ୍ରିକାରେ ପ୍ରକାଶିତ ମନ୍ତବ୍ୟ ବି ତାତ୍ପର୍ଯ୍ୟପୂର୍ଣ୍ଣ । ସେଥିରେ ଲେଖାଥିଲା :

"ସମ୍ବାଦ ମିଳିଛି ଯେ, ସି. ପି. ଆଇ. ସହିତ ମିଳିତଭାବରେ କାର୍ଯ୍ୟ କରିବାର ଯେ ଉଦ୍ୟମ ଶ୍ରୀମତୀ ଶତପଥୀ କରୁଛନ୍ତି, ଏହା ତାଙ୍କ ପାର୍ଟିର ନିର୍ଦ୍ଦେଶ ପାଇ ନୁହେଁ; ତାଙ୍କ ନିଜର ରାଜନୀତିକ ସୁବିଧା ନିମନ୍ତେ । ଶ୍ରୀମତୀ ଶତପଥୀ ସି. ପି. ଆଇ.ର ଜଣେ ପୁରାତନ ପୂର୍ବତନ ସଦସ୍ୟ ଏବଂ ସେମାନେ ନନ୍ଦିନୀ ଶତପଥୀଙ୍କି କଂଗ୍ରେସ ଭିତରେ ପ୍ରଗତିପନ୍ଥୀଙ୍କ ନେତାରୂପେ ମାନ୍ୟ କରନ୍ତି । କୋଣାର୍କରେ କଂଗ୍ରେସ ତାଲିମ ଶିବିରରେ ଯେ ୪ ଜଣ ରୁଷ୍ ପ୍ରତିନିଧି—ସେଥିରେ ପୁଣି ଦୁଇଜଣ ରୁଷ ରାଷ୍ଟ୍ରଦୂତ ଅଫିସରେ ନିଯୁକ୍ତ ଥିବା ବ୍ୟକ୍ତି—ଯେ ହଠାତ୍ ପହଞ୍ଚିଥିଲେ ବୋଲି କୁହାଯାଉଛି, ନନ୍ଦିନୀ ଶତପଥୀ ସେପରି ଯୋଗଦାନର ପୂର୍ଣ୍ଣ ସମର୍ଥନ କରିଥିଲେ ଏବଂ ଭାରତ ସୋଭିଏଟ ସାଂସ୍କୃତିକ ସୋସାଇଟି ଏବଂ ଶାନ୍ତି ଓ ଏକତା ସଂଗଠନକୁ ପୂର୍ଣ୍ଣ ସମର୍ଥନ ଦେଇଛନ୍ତି ।" (ଷ୍ଟେଟ୍‌ସମ୍ୟାନ୍, ୧୭ । ୫ । ୭୫)

ଏଥିରୁ ଦେଖାଯିବ ଯେ, ନନ୍ଦିନୀ ଶତପଥୀଙ୍କର କମ୍ୟୁନିଷ୍ଟଙ୍କ ସହ ଘନିଷ୍ଠ ସଂପର୍କ ବରାବର ରହିଥିଲା ଏବଂ ସେହିମାନଙ୍କ ନିର୍ଦ୍ଦେଶ ଅନୁସାରେ ସେ ପରିଚାଳିତ ହେଉଥିଲେ । ପରବର୍ତ୍ତୀ କେତେକ ଘଟଣା ଏହାକୁ ଆହୁରି ପ୍ରକାଶ୍ୟଭାବରେ ପ୍ରମାଣିତ କଲା ।

ପରବର୍ତ୍ତୀ କାଳରେ ନନ୍ଦିନୀ ଶତପଥୀ ଯେ ସଞ୍ଜୟ ଗାନ୍ଧୀଙ୍କର ପ୍ରତିରୋଧ କରିଥିଲେ ବୋଲି କୁହାଯାଉଛି ଏବଂ ସେ ଏବେ ବି ସେ କଥା କହିବୁଲୁଛନ୍ତି—ତାର ଅସଲ କାରଣ ହେଉଛି, ସଞ୍ଜୟ ଗାନ୍ଧୀ ଯେତେବେଳେ କଂଗ୍ରେସ-କମ୍ୟୁନିଷ୍ଟ ସଂପର୍କ ତୁଟାଇଦେବା ନିମନ୍ତେ

ପ୍ରକାଶ୍ୟ ଆନ୍ଦୋଳନ ଆରମ୍ଭ କରିଦେଲେ ଏବଂ ଶେଷରେ ଇନ୍ଦିରା ଗାନ୍ଧୀ ମଧ୍ୟ ସଞ୍ଜୟଙ୍କୁ ସମର୍ଥନ କରି କମ୍ୟୁନିଷ୍ଟ ପାର୍ଟିର ନିନ୍ଦାକଲେ, କମ୍ୟୁନିଷ୍ଟ ପାର୍ଟି ସ୍ଥିର କରିନେଲେ ଯେ ସଞ୍ଜୟ ଗାନ୍ଧୀର ପ୍ରତିରୋଧ କରା ନ ଗଲେ ଚଳିବ ନାହିଁ । ଅନ୍ୟ କେଉଁ ରାଜ୍ୟରେ ଏଭଳି ପ୍ରତିରୋଧ କରିବା ସହଜ ନ ଥିଲା । ନନ୍ଦିନୀ ଶତପଥୀ ଇନ୍ଦିରାଙ୍କ ପ୍ରିୟପାତ୍ରୀ ଥିଲେ ଏବଂ ଏଠାରେ ସଞ୍ଜୟଙ୍କୁ ନନ୍ଦିନୀ ପ୍ରତିରୋଧ କଲେ ଇନ୍ଦିରା ପ୍ରଭାବିତ ହେବେ ଏବଂ ସେ ନନ୍ଦିନୀ ଶତପଥୀଙ୍କୁ ଛାଡ଼ିପାରିବେ ନାହିଁ—ଏହିଭଳି ଏକ ପାଞ୍ଚକରି ନନ୍ଦିନୀଙ୍କୁ କମ୍ୟୁନିଷ୍ଟ ପାର୍ଟିରୁ ନିର୍ଦ୍ଦେଶ ଆସିଲା ଯୁବ-କଂଗ୍ରେସ ଗଠନ ନେଇ ସଞ୍ଜୟଙ୍କର ବିରୋଧ କରିବା ନିମନ୍ତେ; ନଚେତ୍ ନନ୍ଦିନୀ ଆଗରୁ ସଞ୍ଜୟଙ୍କୁ ବଶ କରିବା ନିମନ୍ତେ ଯାହା ସମ୍ଭବ କରିପାରିଥିଲେ ଏବଂ ବିଶେଷ ନିମନ୍ତ୍ରଣ କରି ଆଣିଥିଲେ ଓଡ଼ିଶା ଆସିବା ନିମନ୍ତେ । ମାତ୍ର ସଞ୍ଜୟ କମ୍ୟୁନିଷ୍ଟବିରୋଧୀ ଏବଂ ନନ୍ଦିନୀ କମ୍ୟୁନିଷ୍ଟଙ୍କ ସହ ପୂର୍ଣ୍ଣରୂପେ ଜଡ଼ିତ ଅଛନ୍ତି ବୋଲି ଅଭିଯୋଗ କରି; ସେ ତାଙ୍କ ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କଲେ ଓ ନୂତନ ଗଠିତ ଯୁବକଂଗ୍ରେସ ଆନୁକୂଲ୍ୟରେ ଆସିବା ନିମନ୍ତେ ସ୍ଥିର କଲେ । ଯୁବକଂଗ୍ରେସ ମଧ୍ୟ ପୁନର୍ଗଠନ କରାଯାଇ ସେଥିରେ ନନ୍ଦିନୀ-ସମର୍ଥକ ଅଳ୍ପ ରଖାଯାଇ ତାଙ୍କର ବିରୋଧ କରୁଥିବା ଯୁବକଙ୍କୁ ବେଶି ସଂଖ୍ୟାରେ ରଖାଗଲା । ନନ୍ଦିନୀ ଏହାର ପ୍ରତିବାଦ କଲେ ଏବଂ ନୂତନ କମିଟିରୁ ସହଯୋଗ ପ୍ରତ୍ୟାହାର କରି ଅନ୍ୟ ଏକ ସମାନ୍ତରାଳ ଯୁବ କଂଗ୍ରେସ ଗଠନ କଲେ । ସେ ଭାବିଥିଲେ, ଇନ୍ଦିରା ଗାନ୍ଧୀ ଓ ବରୁଆ ଏଥିରେ ତାଙ୍କ ପକ୍ଷ ସମର୍ଥନ କରିବେ । ମାତ୍ର ସେମାନଙ୍କର ସହାନୁଭୂତି ନନ୍ଦିନୀଙ୍କ ମିଳିପାରିଲାନାହିଁ । କମ୍ୟୁନିଷ୍ଟଙ୍କ ପ୍ରରୋଚନାରେ ପଡ଼ି ସଞ୍ଜୟଙ୍କ ସହ ଯୁବକଂଗ୍ରେସ ନେଇ ଯେ ପ୍ରକାଶ୍ୟ ସଂଘର୍ଷ ଲାଗିଲା, ସେଥିରେ ଶେଷକୁ ନନ୍ଦିନୀଙ୍କୁ ହିଁ ନାନା ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଚି । ପରେ ସେ ବିଷୟର ଗୁରୁତ୍ୱ ବୁଝିପାରି ସଞ୍ଜୟଙ୍କ ସହ ବୁଝାମଣା—ଏଭଳିକି ଆତ୍ମସମର୍ପଣ କରିବାଲାଗି ପ୍ରସ୍ତୁତ ଥିଲେ; ମାତ୍ର ନେଡ଼ିଗୁଡ଼ି କହୁଣିକି ବୋହିଯାଇଥିଲା ।

ନନ୍ଦିନୀ ଓ କମ୍ୟୁନିଷ୍ଟମାନେ କିଭଳି ଅସହିଷ୍ଣୁ ହୋଇ ଓଡ଼ିଶାର ଗଭର୍ଣ୍ଣର ଆକବର୍ ଅଲ୍ଲୀ ଖାଁ ଜୟପ୍ରକାଶଙ୍କ ସହ ଏକ ରାତ୍ରିଭୋଜନ କରିଥିବାରୁ ତାଙ୍କର ପ୍ରକାଶ୍ୟ ସମାଲୋଚନା କରିଥିଲେ, ତାହା ସମସ୍ତିଙ୍କୁ ଭଲରୂପେ ଜଣା ।

ଜୟପ୍ରକାଶ ଆକବର ଅଲ୍ଲୀ ଖାଁଙ୍କର ଘନିଷ୍ଠ ବନ୍ଧୁ । ଏପ୍ରିଲ ୩୦ ତାରିଖରେ ସେ ଓଡ଼ିଶା ଆସିଥିବା ବେଳେ ଆକବର ଅଲ୍ଲୀ ଖାଁଙ୍କ ସହ ଘରୋଇ ଭାବରେ ରାତ୍ରିଭୋଜନ କରିଥିଲେ । ଏହା କରିବା ଠିକ୍ ହୋଇନାହିଁ ବୋଲି ଅଭିଯୋଗ କରି ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନିକଟରେ ପ୍ରତିବାଦ କଲେ । ଲେଖକ ନିଜେ ଆକବର ଅଲ୍ଲୀ ଖାଁଙ୍କୁ ଏ ବିଷୟ ପଚାରିବାରେ ସେ କହିଲେ ଯେ, ପ୍ରଧାନମନ୍ତ୍ରୀ ମତେ ଏ ବିଷୟ ପଚାରିଥିଲେ; ମାତ୍ର ସେ ପ୍ରଧାନମନ୍ତ୍ରୀଙ୍କୁ କହିଥିବା ପ୍ରକାଶ ଯେ—ମୁଁ ଗଭର୍ଣ୍ଣର ହୋଇଛି ବୋଲି ମୋର ଯଦି ଏକ ବ୍ୟକ୍ତିଗତ ବନ୍ଧୁଙ୍କୁ ଭୋଜନକୁ ଡାକିବାର ସ୍ୱାଧୀନତା ପର୍ଯ୍ୟନ୍ତ ନାହିଁ

ତେବେ ମୋର ଇସ୍ତଫା ସାଙ୍ଗେ ସାଙ୍ଗେ ନେଇପାରନ୍ତି । ଏଥିକରେ ଇନ୍ଦିରା ଗାନ୍ଧୀ ଏ ପ୍ରସଙ୍ଗ ବନ୍ଦକରିଦେଲେ । ନନ୍ଦିନୀଙ୍କ କାରସାଦି ଆଉ ଆଗେଇପାରିଲା ନାହିଁ ।

ତେଣୁ ନନ୍ଦିନୀ ସାଧାରଣରେ ଗଭର୍ଣ୍ଣରଙ୍କ ସମାଲୋଚନା କରିବାର ଆୟୋଜନ କଲେ । ଗଭର୍ଣ୍ଣର ଆକବର ଅଲ୍ଲୀ ଖାଁଙ୍କ ବିରୁଦ୍ଧରେ ବିଧିବଦ୍ଧ ସର୍ବସାଧାରଣରେ ଏବଂ ଘରୋଇ ଭାବରେ ଚର୍ଚ୍ଚା ଆରମ୍ଭ ହୋଇଗଲା ଏବଂ କୁହାଗଲା ଯେ ଗଭର୍ଣ୍ଣରଙ୍କ ଦିନକାଳ ଆଉ ବେଶି ଦିନ ନୁହେଁ ।

ପୂର୍ବରୁ କଟକରେ ହୋଇଥିବା ଯେଉଁ ଫାସିଷ୍ଟ ବିରୋଧୀ ସମ୍ମିଳନୀ ବିଷୟ ଉଲ୍ଲେଖ କରାଯାଇଛି, ସେଠାରେ ମୁଖ୍ୟମନ୍ତ୍ରୀ ଓ ଆଉ ଜଣେ କେନ୍ଦ୍ର ମନ୍ତ୍ରୀ ଏବଂ ଓଡ଼ିଶା ମନ୍ତ୍ରୀଙ୍କ ଉପସ୍ଥିତିରେ କମ୍ୟୁନିଷ୍ଟ ନେତା ଭୂପେଶ ଗୁପ୍ତ ଗଭର୍ଣ୍ଣରଙ୍କର ସମାଲୋଚନା କଲେ ।

"ଜୟପ୍ରକାଶଙ୍କର ଏଥର ଗସ୍ତବେଳେ ଗଭର୍ଣ୍ଣର ତାଙ୍କୁ ରାଜଭୋଜନକୁ ଡାକିବା କାର୍ଯ୍ୟକୁ ଶ୍ରୀ ଗୁପ୍ତ ନିନ୍ଦାକଲେ । ଗଭର୍ଣ୍ଣରଙ୍କର ଯେ ଅତିଥିଚର୍ଚ୍ଚା ଭଳି ଏକ ଶିଷ୍ଟ ମନୋଭାବ ଅଛି ଏଥିରେ ସନ୍ଦେହ ନାହିଁ; ମାତ୍ର ସେ ଭୁଲିଯିବା ଉଚିତ ନୁହେଁ ଯେ, ଜୟପ୍ରକାଶ ନାରାୟଣ ଏକ ଆମେରିକାନ୍ ଏଜେଣ୍ଟରୂପେ କାର୍ଯ୍ୟ କରୁଛନ୍ତି । ତେଣୁ ତାଙ୍କର ଏଭଳି ନିମନ୍ତ୍ରଣକୁ କେବେହେଁ ପସନ୍ଦ କରାଯାଇ ପାରିବ ନାହିଁ ।" (ହି. ଷ୍ଟାଣ୍ଡାର୍ଡ଼, ୧୩।୫।୬୫)

ଗଭର୍ଣ୍ଣର ରାଜ୍ୟର ସର୍ବୋଚ୍ଚକର୍ତ୍ତା । ସେ ବାହାରେ ସାଧାରଣରେ କୌଣସି ବାଦବିବାଦରେ ଯୋଗ ଦେଇ ପାରିବେ ନାହିଁ—ସେ ତାର ବହୁ ଉର୍ଦ୍ଧ୍ୱରେ । ଗଭର୍ଣ୍ଣରଙ୍କୁ କେହି କିଛି ଆକ୍ଷେପ କଲେ ମୁଖ୍ୟମନ୍ତ୍ରୀ ଏବଂ ଓଡ଼ିଶାର ମନ୍ତ୍ରିମଣ୍ଡଳ ତାର ପ୍ରତିବାଦ କରିବାର କଥା—କାରଣ ଗଭର୍ଣ୍ଣରଙ୍କ ସମ୍ମାନ ଓ ମର୍ଯ୍ୟାଦା ରକ୍ଷା କରିବା ସରକାରର ହିଁ କର୍ତ୍ତବ୍ୟ । ଏ କ୍ଷେତ୍ରରେ ସରକାରର ମୁଖ୍ୟମାନଙ୍କ ଉପସ୍ଥିତିରେ ଏକ ସମ୍ମିଳନୀରେ ଏଭଳି ଆକ୍ଷେପ ହେଲା ଏବଂ ଏମାନେ ଶୁଣି ନୀରବ ରହିଲେ । ଏଥିରୁ ଲୋକେ ବୁଝିଲେ ଯେ ସରକାର ଜାଣିଶୁଣି ଏହାକୁ ଉତ୍ସାହ ଦେଉଛି । କମ୍ୟୁନିଷ୍ଟଙ୍କ ସହ ମିଶି ଏଭଳି ସମାଲୋଚନା ନୀରବ ହୋଇ ଗ୍ରହଣ କରିବା ଅତ୍ୟନ୍ତ ଗର୍ହିତ କାର୍ଯ୍ୟ । ମାତ୍ର ଜୟପ୍ରକାଶଙ୍କ ପ୍ରତି ମୁଖ୍ୟମନ୍ତ୍ରୀଙ୍କର ଏତେ କ୍ରୋଧ ଯେ, ସେ ସବୁ ପରମ୍ପରା ଓ ଶୃଙ୍ଖଳାକୁ ଜଳାଞ୍ଜଳିଦେଇ କମ୍ୟୁନିଷ୍ଟଙ୍କ ସହଯୋଗରେ ଯଥେଚ୍ଛା କାର୍ଯ୍ୟ କରିବାକୁ ପ୍ରସ୍ତୁତ ଥିଲେ । ସେହିଭଳି ମାଜିଷ୍ଟ୍ରେଟମାନଙ୍କ ଅଗୋଚରରେ ସିଧା ଜିଲ୍ଲା ପୁଲିସ କର୍ତ୍ତୃପକ୍ଷଙ୍କ ସହ ସଂଯୋଗ ରକ୍ଷା କରି ଝାରସୁଗୁଡ଼ାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ବରାବର ବାଟରେ କଳାପତାକା ପ୍ରଦର୍ଶନ ଓ ଅନ୍ୟାନ୍ୟ ପ୍ରତିରୋଧ ବ୍ୟବସ୍ଥା ହୋଇଥିଲା । ଏବେ ପୁଣି ଜୟପ୍ରକାଶ ଓଡ଼ିଶାରୁ ଯିବା ପରେ ଗଭର୍ଣ୍ଣରଙ୍କର ପ୍ରକାଶ୍ୟ ସମାଲୋଚନାକୁ କେହି ପସନ୍ଦ କଲେ ନାହିଁ ।

ଲେଖକ ଏ ସଂପର୍କରେ ଏକ ବିବୃତି ଦେଇ କହିଲା—

"ନିତାନ୍ତ ଦୁର୍ଭାଗ୍ୟର କଥା ଯେ, ଭୂପେଶ ଗୁପ୍ତ ଫାସିଷ୍ଟବିରୋଧୀ ସମ୍ମିଳନୀ ପୀଠରେ କେତେକ କଂଗ୍ରେସଜନଙ୍କ ଉପସ୍ଥିତିରେ ଓଡ଼ିଶାର ଗଭର୍ଣ୍ଣର ଏବଂ କେତେକ କଂଗ୍ରେସ

ଲୋକଙ୍କ ବିରୁଦ୍ଧରେ ବିଷ ଉଦ୍‌ଗାର କରିଗଲେ । ମୁଁ ଆହୁରି ଆଶ୍ଚର୍ଯ୍ୟ ହେଉଛି ଯେ, ଏଭଳି ସମାଲୋଚନା କରାଯାଉଥିବାବେଳେ ସେଠାରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଓ ଜଣେ କେନ୍ଦ୍ରମନ୍ତ୍ରୀ ବି ଉପସ୍ଥିତ ଥିଲେ, ସେମାନେ କିଛି ପ୍ରତିବାଦ କଲେ ନାହିଁ । ରାଜ୍ୟର ମୁଖ୍ୟକର୍ତ୍ତାଙ୍କର ସମ୍ମାନ ଓ ପ୍ରତିଷ୍ଠା ଆଉ କିଏ ରକ୍ଷା କରିବ !

ମୁଁ କଂଗ୍ରେସରେ ଥିବା ପୂର୍ବତନ କମ୍ୟୁନିଷ୍ଟଙ୍କୁ ନିବେଦନ କରୁଛି—ସେମାନେ କମ୍ୟୁନିଷ୍ଟଙ୍କର କାରସାଦିର ଶିକାର ହୁଅନ୍ତୁ ନାହିଁ ଏବଂ ସଂସଦୀୟ ତଥା ସାଧାରଣ ଶିଷ୍ଟାଚାର ବିଜାତ କୌଣସି ପ୍ରକାର କାର୍ଯ୍ୟକଳାପରେ ଭାଗୀ ହୁଅନ୍ତୁ ନାହିଁ । ଉଚ୍ଚ ମର୍ଯ୍ୟାଦାଧିକାରୀ ବ୍ୟକ୍ତିଙ୍କୁ ଏଭଳି ସାଧାରଣ ବିବାଦୀୟ ଅବସ୍ଥାକୁ ଟାଣିଆଣିବାର ଯେକୌଣସି କୌଶଳକୁ କଂଗ୍ରେସଲୋକେ ବାଧାଦେବେ ଏବଂ କୁତ୍ସାରଟନାମୂଳକ କାର୍ଯ୍ୟକଳାପକୁ ନିନ୍ଦା କରିବେ ବୋଲି ମୁଁ ଆଶାକରୁଛି ।" (ସମାଜ, ୧୫ । ୫ । ୭୫)

ଏହି ବିବୃତିକୁ ଯେନି ତୁମୁଳ ବିବାଦ ସୃଷ୍ଟି ହେଲା । ନନ୍ଦିନୀ ଓ ତାଙ୍କ ସମର୍ଥକଗଣ ଲେଖକ ବିରୁଦ୍ଧରେ ଶୃଙ୍ଖଳାଗତ ଶାସ୍ତି ବିଧାନ କରିବା ନିମନ୍ତେ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ପ୍ରକାଶ୍ୟ ନିବେଦନ କରିଥିଲେ—ମୁଖ୍ୟତଃବରେ କମ୍ୟୁନିଷ୍ଟ ପାର୍ଟି ଓ କଂଗ୍ରେସରେ ଥିବା ପୂର୍ବତନ କମ୍ୟୁନିଷ୍ଟମାନେ ଏଥିରେ ଅଗ୍ରଣୀ ହୋଇଥିଲେ । କଂଗ୍ରେସ ଭିତରେ ଶ୍ରୀ ବନମାଳୀ ପଟ୍ଟନାୟକ ଓ ଆଉ କେତେକ କଂଗ୍ରେସ କର୍ମକର୍ତ୍ତା, କଂଗ୍ରେସ ଓ କମ୍ୟୁନିଷ୍ଟଙ୍କ ମିଳିତ ଅଭିଯାନ ବିରୁଦ୍ଧରେ ମତ ଦେଇ କଂଗ୍ରେସ ଭିତରେ ଏକଜୁଟ ଆସିବା ନିମନ୍ତେ ଆହ୍ୱାନ କଲେ । ବିବାଦ ଗୁରୁତର ଆକାର ଧାରଣ କଲା ଏବଂ ନନ୍ଦିନୀ ଶତପଥୀ କେନ୍ଦ୍ର କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ; ମାତ୍ର ତହିଁରେ ବିଶେଷ ସାହାଯ୍ୟ ପାଇଲେ ନାହିଁ । ଏତିକବେଳର ରାଜନୀତିକ ପରିସ୍ଥିତି ଓ କଂଗ୍ରେସ-କମ୍ୟୁନିଷ୍ଟ ସଂପର୍କ ଯେନି 'ଷ୍ଟେଟସ୍‌ମାନ୍' ପତ୍ରିକା ୧୭ । ୫ । ୭୫ରେ ଏକ ରାଜନୀତିକ ମନ୍ତବ୍ୟରେ ଲେଖିଥିଲା :

"ଜୟପ୍ରକାଶଙ୍କ ଆନ୍ଦୋଳନ ଫଳରେ କଂଗ୍ରେସ ଭିତରେ ଯେଉଁ କମ୍ୟୁନିଷ୍ଟ ବିରୋଧୀ ମନୋଭାବ ତୀବ୍ର ଭାବରେ ପ୍ରକାଶ ପାଇଛି, ଶ୍ରୀମତୀ ଗାନ୍ଧୀ ତାହା ଦେଖି କମ୍ୟୁନିଷ୍ଟଙ୍କ ସହ କଂଗ୍ରେସର ସଂପର୍କକୁ ଆଉ ସେତେ ଗୁରୁତ୍ୱ ଦେଉନାହାନ୍ତି । ଏବେ ଗୁଜରାଟରେ ସେ ସି. ପି. ଆଇ. ସହ ମିଳିତ ସହଯୋଗ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ; ଅବଶ୍ୟ ସେଠି ସି. ପି. ଆଇ.ଙ୍କର ବିଶେଷ କିଛି ପ୍ରଭାବ ନାହିଁ । ବହୁଗୁଣାଙ୍କୁ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ପଦରୁ ବାହାରକରିଦେଲା ପରେ କମ୍ୟୁନିଷ୍ଟଙ୍କ ସହ କଂଗ୍ରେସର ଆଉ ଏକ ସଂପର୍କ ବିଚ୍ଛିନ୍ନ ହୋଇଯିବ ।

"ଏହିସବୁ ଘଟଣା ଦ୍ୱାରା ଶ୍ରୀମତୀ ଗାନ୍ଧୀଙ୍କର ନୀତି ପରିବର୍ତ୍ତନ ହେବାର ସୂଚନା ମିଳୁଛି ଏବଂ ଏହା ହେଲେ କଂଗ୍ରେସ ଭିତରେ କମ୍ୟୁନିଷ୍ଟ ସମର୍ଥକଙ୍କ ସଂଖ୍ୟା ଊଣା ହୋଇଯିବ । ବୋଧହୁଏ ସେ ଅନୁଭବ କରୁଛନ୍ତି ଯେ, କମ୍ୟୁନିଷ୍ଟବିରୋଧୀ ମନୋଭାବ କଂଗ୍ରେସ ଭିତରେ ଖୁବ୍ ବେଶି ଏବଂ ଏହାକୁ ଦେଖି କାର୍ଯ୍ୟନୀତି ସ୍ଥିର କରିବାକୁ ହେବ । ତାହାଛଡ଼ା କଂଗ୍ରେସ-କମ୍ୟୁନିଷ୍ଟଙ୍କ ପ୍ରକାଶ୍ୟର ସଂପର୍କ ବହୁସଂଖ୍ୟକ ଭୋଟର ଗ୍ରହଣ କରୁନାହାନ୍ତି ।

"କଂଗ୍ରେସ ଭିତରେ କମ୍ୟୁନିଷ୍ଟ-ବିରୋଧୀ ମନୋଭାବ ବୃଦ୍ଧି ପାଉଥିବାରୁ କମ୍ୟୁନିଷ୍ଟ ସମର୍ଥକ ଲିବି ସହିତ ଜଡ଼ିତ ଥାଉ ଏକ କଂଗ୍ରେସୀ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ପାଇଁ ଏଇଥିଲାଗି ଏହା ଏକ ସମସ୍ୟା ସୃଷ୍ଟି କଲାଣି । ସି. ପି. ଆଇ.ର ସହଯୋଗରେ ଓଡ଼ିଶାରେ ଜୟପ୍ରକାଶଙ୍କ ଆନ୍ଦୋଳନ ବିରୁଦ୍ଧରେ ଅଭିଯାନ ଚଳାଇବାର ଯେଉଁ ଉଦ୍ୟମ ନନ୍ଦିନୀ ଶତପଥୀ କରୁଥିଲେ, ତଦ୍ୱାରା ପ୍ରାଦେଶିକ କଂଗ୍ରେସ କମିଟିରେ ବେଶ୍ ଟଣାଭିଡ଼ା ଲାଗିଗଲାଣି । ଅଧୁନା ଓଡ଼ିଶାରେ ଏକ ସମ୍ମିଳନୀରେ ଭୂପେଶ ଗୁପ୍ତ 'କଂଗ୍ରେସର ଏକ ଗୋଷ୍ଠୀଙ୍କୁ ଯେ ସମାଲୋଚନା କଲେ,' ସେଥିରେ ତାଙ୍କର ଉପସ୍ଥିତିଟା ଅନ୍ୟ ସମୟ ହୋଇଥିଲେ କେହି ମୂଳରୁ ନଜରକୁ ବି ନେଇନଥାନ୍ତେ । ଜଣେ ବଡ଼ କଂଗ୍ରେସ ନେତା ଯେ ଏହାର ଦୃଢ଼ ପ୍ରତିବାଦ କରିଛନ୍ତି, ସେଥିରୁ କମ୍ୟୁନିଷ୍ଟ-ବିରୋଧ ଭାବ କେତେ ପ୍ରବଳ ହୋଇଛି ତାହା ଜଣାପଡ଼ୁଛି ।

"ପ୍ରାଦେଶିକ କଂଗ୍ରେସ କମିଟିରେ ଶତପଥୀ ବିରୋଧୀ ଗୋଷ୍ଠୀ ତାଙ୍କୁ ବାହାର କରିବାର ସୁଯୋଗ ଜଗିି ବସିରହିବା ସ୍ୱାଭାବିକ । ବିରୋଧୀ ଗୋଷ୍ଠୀଙ୍କର ପ୍ରଚେଷ୍ଟାକୁ ଏପର୍ଯ୍ୟନ୍ତ ଶ୍ରୀମତୀ ଗାନ୍ଧୀ ତାଙ୍କର ସମ୍ମତି ଦେଖାଇ ନାହାନ୍ତି । କିନ୍ତୁ ଦିଲ୍ଲୀର କଂଗ୍ରେସ ମହଲର କଳନା-ଜଳନାରୁ ଅନୁମାନ ହେଉଛି, ନନ୍ଦିନୀ ଶତପଥୀଙ୍କ ମୁଖ୍ୟମନ୍ତ୍ରିତ୍ୱ ଆଉ ବେଶି ଦିନ ନୁହେଁ ।"

୧୯୭୫ ଜୁନ୍ ମାସର ଏ କଳନା ୧୯୭୬ ଡିସେମ୍ବର ମାସରେ ଫଳବତୀ ହେଲା । ଡିସେମ୍ବର ୧୭ ତାରିଖରେ ନନ୍ଦିନୀ ମୁଖ୍ୟମନ୍ତ୍ରୀ ପଦରୁ ବିଦାୟ ନେଲେ ଏବଂ ରାଷ୍ଟ୍ରପତି ଶାସନ ଜାରିହେଲା । ଯେଉଁମାନେ କହନ୍ତି, ସେ ଇନ୍ଦିରାଙ୍କ ଏମର୍ଜେନ୍ସିଜନିତ କାର୍ଯ୍ୟରେ ସମ୍ମତ ନହେବା ଯୋଗୁଁ ଏବଂ ସଞ୍ଜୟ ଗାନ୍ଧୀଙ୍କର ବିରୋଧ ହେତୁ ବିତାଡ଼ିତ ହେଲେ, ତାହା କେତେଦୂର ସତ୍ୟ ଏଇଥିରୁ ବୁଝାଯିବ । ବାସ୍ତବ ପକ୍ଷେ କଂଗ୍ରେସ ନୀତିର ବିରୋଧାଚରଣ କରି, କମ୍ୟୁନିଷ୍ଟଙ୍କଦ୍ୱାରା ଚାଳିତ ହୋଇ, ମନମୁଖୀ ଶାସନ ଓ ବ୍ୟଭିଚାର କରିଥିବା ଯୋଗୁଁ ନନ୍ଦିନୀ ଶତପଥୀଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ବାହାରକରି ଦିଆଯାଇଥିଲା ।

# ଏମର୍ଜେନ୍ସି ଲାଗି ସଜବାଜ

ଉମା ବାସୁଦେବ ତାଙ୍କର "ଇନ୍ଦିରା ଗାନ୍ଧୀଙ୍କର ଦୁଇଟି ମୂର୍ତ୍ତି" ପୁସ୍ତକରେ ଲେଖିଛନ୍ତି

"୧୯୭୫ ଜାନୁୟାରୀ ୮ ତାରିଖରେ ସିଦ୍ଧାର୍ଥ ଶଙ୍କର ରାୟ, ରଜନୀ ପଟେଲ ଏବଂ ଡି. କେ. ବରୁଆ ଇନ୍ଦିରା ଗାନ୍ଧୀଙ୍କୁ ଏକ ଚିଠି ଲେଖି ଜଣାଇଲେ ଯେ, ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ଗୁରୁତର ପଦକ୍ଷେପ ନେବା ଦରକାର ଏବଂ ଇନ୍ଦିରା ଗାନ୍ଧୀ ଏମର୍ଜେନ୍ସି ଘୋଷଣା ସାଙ୍ଗେ ସାଙ୍ଗେ କରିବା ଉଚିତ।" ଏହା ଏମର୍ଜେନ୍ସି ଜାରି ହେବାର ୬ମାସ ପୂର୍ବରୁ, ସେମାନେ କଂଗ୍ରେସ ଭିତରେ ଥିବା କମ୍ୟୁନିଷ୍ଟ ସମର୍ଥକ ଗୋଷ୍ଠୀ ତରଫରୁ ଏଭଳି ଲେଖିଥିଲେ । ଏହି ଗୋଷ୍ଠୀଟି କଂଗ୍ରେସ ନେତୃତ୍ୱ ନିଜ ହାତକୁ ପୁରାପୁରି ନେବା ନିମନ୍ତେ ତତ୍ପର ହୋଇ ଥାଆନ୍ତି। ଏଥିରେ ଥିଲେ ଚନ୍ଦ୍ରଜିତ୍ ଯାଦବ, ପି. ଏନ୍. ହକସାର, ଡି. ପି. ଚଟ୍ଟୋପାଧ୍ୟାୟ, କେ. ଆର. ଗଣେଶ, ରଘୁନାଥ ରେଡ୍ଡି, ନନ୍ଦିନୀ ଶତପଥୀ, ସିଦ୍ଧାର୍ଥ ଶଙ୍କର ରାୟ ଏବଂ ରଜନୀ ପଟେଲ । କମ୍ୟୁନିଷ୍ଟ ପାର୍ଟି ଏବଂ ତାର ସହଯୋଗୀ କଂଗ୍ରେସ ଭିତରେ ଥିବା କମ୍ୟୁନିଷ୍ଟ ସମର୍ଥକମାନେ ଆନ୍ଦୋଳନ ଯୋଗୁଁ ସବୁଠୁଁ ବେଶି ଆତଙ୍କିତ ହୋଇପଡ଼ିଥିଲେ । ସେମାନେ ସବୁମନ୍ତେ ଜୟପ୍ରକାଶ ଆନ୍ଦୋଳନର ସଂଗଠିତ ବିରୋଧ ଲାଗି ସେବେଠୁଁ ପ୍ରସ୍ତୁତ ଥିଲେ । ଇନ୍ଦିରା ଗାନ୍ଧୀ ସେତେବେଳେ ଜୟପ୍ରକାଶଙ୍କ ଆନ୍ଦୋଳନକୁ ଯେକୌଣସି ମତେ ଦବାଇବା ଲାଗି ସ୍ଥିର କରିସାରିଥିଲେ ସୁଦ୍ଧା ଏମର୍ଜେନ୍ସି ଘୋଷଣା କରିବାର ପକ୍ଷପାତୀ ନଥିଲେ। ତେଣୁ ବିଷୟଟି ବିଳମ୍ବ ହୋଇଗଲା; ମାତ୍ର ପ୍ରସ୍ତୁତି ଚାଲିଥିଲା। ପରିସ୍ଥିତି ନାନା କାରଣରୁ ଜଟିଳ ହୋଇଯାଇଥିଲା । ବିଶେଷ ଭାବରେ ଆର୍ଥିକ ଦୁର୍ଗତି ବଢ଼ିଗଲା । ମୂଲ୍ୟବୃଦ୍ଧି ରୋକ ହେଲାନାହିଁ । ଭୂସଂସ୍କାର ଆଦି କାର୍ଯ୍ୟ କିଛି ଅଗ୍ରସର ହେଲାନାହିଁ । ଗ୍ରାମାଞ୍ଚଳର ଦୁର୍ଦ୍ଦଶା ବୃଦ୍ଧି ହେବାରୁ ଲୋକଙ୍କ ଭିତରେ ଭୀଷଣ ଅସନ୍ତୋଷ ଭରିଥିଲା । ବେକାର ସମସ୍ୟା ଯୋଗୁଁ ଯୁବକଙ୍କ ପ୍ରାଣ ଅସ୍ଥିର ହୋଇଯାଇଥିଲା । ତାହା ସାଙ୍ଗକୁ ରାଜନୀତିକ ଓ ଶାସନ କ୍ଷେତ୍ରରେ ଦୁର୍ନୀତି ଚରମସୀମାରେ ପହଞ୍ଚିଥିବାରୁ ଲୋକେ କଳବଳ ହେବାକୁ ଲାଗିଲେ ।

ଏଇଥିଯୋଗୁଁ ଯେତେ ରାଜନୀତିକ ଦିଗରୁ ଆକ୍ରମଣ କଲେ ସୁଦ୍ଧା ଜୟପ୍ରକାଶଙ୍କର ଦୁର୍ନୀତି-ବିରୋଧୀ-ବାଣୀ ଲୋକଙ୍କ ହୃଦୟକୁ ସ୍ପର୍ଶ କଲା। ଚାରିଦିଗରୁ ନିରାଶ ହୋଇପଡ଼ିଥିବା ଶହ ଶହ ଯୁବକଙ୍କ ପ୍ରାଣରେ ଜୟପ୍ରକାଶଙ୍କ ବାଣୀ ନୂତନ ସ୍ପନ୍ଦନ ଆଣିଦେଲା । ଏକ ନୂଆ ବିଶ୍ୱାସ ନେଇ ସେମାନେ ଯାତ୍ରା କଲେ। ଭାରତର ରାଜନୀତିକ ଇତିହାସରେ ଏକ ଅଭିନବ ପର୍ବ ଆରମ୍ଭ ହୋଇଗଲା। ଏକ ବାସ୍ତରି ବର୍ଷ ବୃଦ୍ଧର ଆହ୍ୱାନରେ ସହସ୍ର ସହସ୍ର ନବ ଯୁବକ-ଯୁବତୀ ବାହାରିପଡ଼ିଲେ ଆତ୍ମୋତ୍ସର୍ଗ କରିବା ନିମନ୍ତେ ।

ଜୟପ୍ରକାଶ ଉତ୍ତର ପ୍ରଦେଶ, ବିହାର, ପଶ୍ଚିମବଙ୍ଗ, ହାଇଦ୍ରାବାଦ, ଓଡ଼ିଶା, ହରିଆନା, ମଧ୍ୟପ୍ରଦେଶ, କେରଳ, କର୍ଣ୍ଣାଟକ ଓ ଦିଲ୍ଲୀ ମିଶାଇ ୨୪ଟି ବଡ଼ ବଡ଼ ସଭାରେ ପୁଲିସ ଓ ମିଲିଟାରିଙ୍କୁ ଆହ୍ୱାନ କରିଥିଲେ ବେଆଇନ ହୁକୁମ ଅମାନ୍ୟ କରିବା ନିମନ୍ତେ । ୧୯୭୫ ଜୁନ୍ ୨୫ତାରିଖ ସନ୍ଧ୍ୟା ରାମଲୀଳା ପଡ଼ିଆ ସଭାରେ ଜୟପ୍ରକାଶ ପୁଲିସ ଓ ମିଲିଟାରୀଙ୍କୁ ହୁକୁମ ନ ମାନିବାକୁ ପରାମର୍ଶ ଦେବାରୁ ଏମର୍ଜେନ୍ସି ଜାରି କରିବାକୁ ପଡ଼ିଲା ବୋଲି ଯାହା ପ୍ରଚାର କରାଯାଉଛି, ତାହା ସତ୍ୟ ନୁହେଁ; କାରଣ ତା' ପୂର୍ବରୁ କେବଳ ଉପରେ ଉଲ୍ଲେଖ କରିଥିବା ୨୪ଟି ସଭା ନୁହେଁ—୧୯୭୪ ମସିହା ଜୁନ୍ ୫ ତାରିଖରେ ପାଟନାର ଗାନ୍ଧୀ ମଇଦାନରେ ଯେ ସଭା ହୋଇଥିଲା, ସେଥିରେ ମଧ୍ୟ ଜୟପ୍ରକାଶ ନିରପରାଧ ଲୋକଙ୍କ ଉପରେ ଗୁଳି ନ କରିବା ନିମନ୍ତେ ପୁଲିସ, ମିଲିଟାରିଙ୍କୁ ଡାକଦେଇଥିଲେ । ସମ୍ବାଦପତ୍ର-ମାନଙ୍କରେ ମଧ୍ୟ ପୂର୍ବରୁ ଏ ସମ୍ପର୍କରେ ମନ୍ତବ୍ୟ ପ୍ରକାଶ ପାଇଥିଲା ଏବଂ କେତେକ ସମ୍ପାଦକୀୟ ଜୟପ୍ରକାଶଙ୍କର ବିରୋଧ ବି କରିଥିଲେ । ବିହାରରେ ଜନତା ସରକାର, ଜନତା କୋର୍ଟ ଆଦି କାର୍ଯ୍ୟ ଆରମ୍ଭ ହୋଇଯାଇଥାଏ । ଜନ-ବିଦ୍ରୋହ ଓ ଜନ-ଅସନ୍ତୋଷ କ୍ରମେ ସଂଗଠିତ ହେବାକୁ ଲାଗିଲା । ସବୁ ବିରୋଧୀ ଶକ୍ତିଙ୍କର ମିଳନ ହୋଇ ଏକ ଦଳ ଗଠିତ ହୋଇ ନପାରିଲେ ହେଁ ପାର୍ଲିମେଣ୍ଟରେ ଏକ ଜନତା ଫ୍ରଣ୍ଟ ଗଢ଼ାହୋଇ, ସି. ପି. ଆଇ. ଓ କେତେକ ସ୍ୱାଧୀନ ସଭ୍ୟଙ୍କୁ ଛାଡ଼ି ଅନ୍ୟମାନଙ୍କ ମଧ୍ୟରେ ପରସ୍ପର ବୁଝାମଣାର କାର୍ଯ୍ୟ କରିବା ଲାଗି ବିଚାର ହେଲା । ପାର୍ଲିମେଣ୍ଟରେ ରାଜନୈତିକ ଦୁର୍ନୀତି ନେଇ ବାଦାନୁବାଦ ଆରମ୍ଭ ହୋଇଗଲା । ବିଶେଷତଃ ଏଲ୍. ଏନ୍. ମିଶ୍ରଙ୍କ ପଣ୍ଡିଚେରୀର କମ୍ପାନୀ ସହ କାରବାର ନେଇ ସରକାର ମହା ଜଞ୍ଜାଳରେ ପଡ଼ିଲେ ଏବଂ ଗୋଟିକ ପରେ ଗୋଟିଏ ଘଟଣାରେ ବିରୋଧ ପାଖରେ ତାଙ୍କୁ ମୁଣ୍ଡ ନୁଆଁଇବାକୁ ପଡ଼ିଲା । ଇନ୍ଦିରା ଗାନ୍ଧୀ ଏଥିରେ ବଡ଼ ବିବ୍ରତ ହୋଇପଡ଼ିଲେ; କାରଣ ତାଙ୍କର ସତେ କି ସବୁ କ୍ଷେତ୍ରରେ ପରାଜୟ ଘଟୁଛି ଓ କ୍ଷମତା ହାତରୁ ଚାଲିଯାଉଛି ଏମିତି ମନେହେଲା । ଲୋକଙ୍କ ମନରେ ଏ ଧାରଣା ଦେବା ନିମନ୍ତେ ସେ ପ୍ରସ୍ତୁତ ନ ଥିଲେ । ଏଲ୍. ଏନ୍. ମିଶ୍ରଙ୍କର ମୃତ୍ୟୁ ତାଙ୍କ ଶିବିରରେ ଅତ୍ୟନ୍ତ ଆତଙ୍କ ପ୍ରସାର କଲା । ଏଲ୍. ଏନ୍. ମିଶ୍ରଙ୍କ ହତ୍ୟାକାଣ୍ଡକୁ ସେ ବିହାର ଆନ୍ଦୋଳନରେ ହେଉଥିବା ହିଂସାର ପରିଣତି ବୋଲି ବର୍ଣ୍ଣନା କଲେ ଏବଂ ପ୍ରକାରାନ୍ତରେ ଜୟପ୍ରକାଶଙ୍କୁ ହିଁ ଦାୟୀ କଲେ । ଜୟପ୍ରକାଶ ସେହିଦିନ ନୂଆଦିଲ୍ଲୀରେ ସରକାରୀ କର୍ମଚାରୀଙ୍କର ଏକ ବିରାଟ ସଭାରେ ଭାଷଣ ଦେଉଥାଆନ୍ତି ଏବଂ ସେଭଳି କାଣ୍ଡର ଘୋର ନିନ୍ଦା କଲେ । ତେଣୁ ଏ ଅପବାଦ ତାଙ୍କ ମୁଣ୍ଡରେ ଢାଳିବା କଥା ସଫଳ ହେଲା ନାହିଁ; ବରଂ ଲୋକଙ୍କ ଭିତରେ ବିଦ୍ୟୁତ୍ ବେଗରେ ପ୍ରଚାର ହୋଇଗଲା ଯେ ଇନ୍ଦିରା ଗାନ୍ଧୀ ହିଁ ଏଭଳି କାଣ୍ଡ ଘଟାଇଛନ୍ତି । ଲଳିତନାରାୟଣ ମିଶ୍ରଙ୍କ ନିକଟରେ ବହୁ ଗୋପନୀୟ ଦଲିଲ ଓ ଅନ୍ୟ କାଗଜପତ୍ର ରହିଥିଲା । ସେଗୁଡ଼ିକ ସେ ପ୍ରକାଶ କରିଦେଲେ ଇନ୍ଦିରା ଗାନ୍ଧୀ ଅସୁବିଧାରେ ପଡ଼ିଯିବେ, ଏଇଥିଲାଗି ଏଭଳି ବ୍ୟବସ୍ଥା କରିଦିଆଗଲା ବୋଲି ଗୁରିଆଡ଼େ ଲୋକେ ବିଶ୍ୱାସ କରିବାକୁ ଲାଗିଲେ । ଏହି ହେତୁ ଯୋଗୁଁ ଅଞ୍ଜୁଦ୍ଧାର୍ଯ୍ୟନ୍ତ ବି ସମାପ୍ତି

ଘଟିନାହିଁ । ମାଥ୍ୟୁସ୍ କମିଶନ ତାଙ୍କର ରିପୋର୍ଟ ଦେଲାପରେ ବି ଲଳିତନାରାୟଣ ମିଶ୍ରଙ୍କ ପତ୍ନୀ ଏହାର ପୁଣି ତଦନ୍ତ ନିମନ୍ତେ ପୁନର୍ବାର ଜନତା ପାର୍ଟି ସରକାର ପାଖରେ ଦାବି କରିବା ହେତୁ ଲୋକଙ୍କ ମନରେ ସନ୍ଦେହ ଆହୁରି ଦୃଢ଼ୀଭୂତ ହୋଇଯାଇଛି ।

ବିହାରରେ ସେତେବେଳକୁ ପ୍ରାୟ ଏକଶହରୁ ଅଧିକ ଲୋକଙ୍କର ମୃତ୍ୟୁ ଘଟିସାରିଥାଏ । ୭ ହଜାରରୁ ଅଧିକ ଯୁବକ ଜେଲବରଣ କରିଥାଆନ୍ତି । ଟିକସ ବନ୍ଦ ଆନ୍ଦୋଳନ ଓ ଜନତା କୋର୍ଟର ବିଚାର ଆଦି ଆରମ୍ଭ ହୋଇଯାଇଥାଏ; ଏକପ୍ରକାର ଅଚଳ ଅବସ୍ଥା ସୃଷ୍ଟି ହୋଇଯାଇଥାଏ । ସରକାରୀ କର୍ମଚାରୀଙ୍କ ଭିତରୁ ପ୍ରାୟ ଶତକଡ଼ା ୯୦ ଜୟପ୍ରକାଶଙ୍କୁ ସମର୍ଥନ କରୁଥାଆନ୍ତି । ଶିକ୍ଷାନୁଷ୍ଠାନଗୁଡ଼ିକ ବନ୍ଦହୋଇଯାଇଥାଏ ଏବଂ ଶିକ୍ଷାର ପରିବର୍ତ୍ତନ କିଭଳି ଧରଣରେ କରିବାକୁ ଜୟପ୍ରକାଶ ଚାହାନ୍ତି, ତାର ନମୁନା ସ୍ୱରୂପ ଏକ ଖୋଲା ଜନତା ବିଶ୍ୱବିଦ୍ୟାଳୟ ସ୍ଥାପନା ଲାଗି ପ୍ରକାଶ୍ୟ ଉଦ୍ୟମ ଆରମ୍ଭ ହୋଇଗଲା । ବିହାର ଆନ୍ଦୋଳନରେ ପ୍ରତ୍ୟକ୍ଷଭାବରେ ସଂପୃକ୍ତ ନ ହେଲେ ସୁଦ୍ଧା ତା ପ୍ରତି ସବୁ ବିରୋଧୀ ଶକ୍ତି ସମର୍ଥନ ଜଣାଇଲେ ଏବଂ ମୋରାରଜୀ ଦେଶାଇ ଅନଶନ ଧମକ ଦେବାରୁ ଗୁଜୁରାଟରେ ଆସେମ୍ବ୍ଲି ନିର୍ବାଚନ କରାଇବା ଲାଗି ଇନ୍ଦିରା ଗାନ୍ଧୀ ବାଧହୋଇ ଘୋଷଣାକଲେ ।

ଏସବୁ ସତ୍ତ୍ୱେ ତଥାପି ଯଦି ଇନ୍ଦିରା ଗାନ୍ଧୀ ମିଳାମିଶାର ଉଦ୍ୟମ କରିଥାଆନ୍ତେ, ଦେଶ ଏପରି ଅନ୍ଧକାର କାଳରୁ ରକ୍ଷା ହୋଇପାରିଥାନ୍ତା । ଆଗରୁ କୁହାଯାଇଛି, ୧୯୭୫ ଏପ୍ରିଲ ମାସରେ ମଧ୍ୟ ଜୟପ୍ରକାଶ ଓଡ଼ିଶାରେ ଘୋଷଣା କରିଗଲେ ଯେ ସେ ଇନ୍ଦିରା ଗାନ୍ଧୀଙ୍କ ସହ କଥାବାର୍ତ୍ତା କରିବା ପାଇଁ ବରାବର ପ୍ରସ୍ତୁତ ଅଛନ୍ତି ।

କେନ୍ଦ୍ର ମନ୍ତ୍ରିମଣ୍ଡଳର ସଭ୍ୟ ମୋହନ ଧାରିଆ ଏପରି ଏକ ମିଳାମିଶା ଲାଗି ଜୋର୍ ଦେଲେ ଏବଂ ପ୍ରକାଶ୍ୟରେ ଏଥିଲାଗି ଏକ ଆନ୍ଦୋଳନ ଚଳିଲା । ଏହି ସମୟରେ ସେ ଆହୁରି କେତେକ ତଥ୍ୟ ପ୍ରକାଶକରି କମ୍ୟୁନିଷ୍ଟମାନେ କିଭଳି କଂଗ୍ରେସକୁ ଦଖଲ କରିବାର ଷଡ଼ଯନ୍ତ୍ର କରୁଛନ୍ତି, ତାହା ପ୍ରକାଶ କରିଦେଲେ ଏବଂ କମ୍ରେଡ଼ ଡାଙ୍ଗେଙ୍କର ଆନ୍ତର୍ଜାତିକ କମ୍ୟୁନିଷ୍ଟ ପାର୍ଟିକୁ ଦେଇଥିବା ଏକ ରିପୋର୍ଟର ଉଲ୍ଲେଖ କରିବାରୁ ରାଜନୀତିକ ମହଲରେ ମହାଚାଞ୍ଚଲ୍ୟ ଜାତହୋଇଗଲା । ମାତ୍ର ସେତେବେଳକୁ ଇନ୍ଦିରା ଗାନ୍ଧୀଙ୍କର ଅବସ୍ଥା ଯାହା ଥିଲା, କମ୍ୟୁନିଷ୍ଟ ପାର୍ଟି ବ୍ୟତୀତ ତାଙ୍କର ଅନ୍ୟ କେହି ସମର୍ଥକ ନଥିଲେ ଏବଂ କଂଗ୍ରେସ ଭିତରେ ଥିବା କମ୍ୟୁନିଷ୍ଟ ସମର୍ଥକ ଗୋଷ୍ଠୀ ତାଙ୍କୁ ଖୁବ୍ ପ୍ରଭାବିତ କରିପାରିଥାଆନ୍ତି । ସେହିମାନଙ୍କ ପ୍ରରୋଚନାରେ ଦେବକାନ୍ତ ବରୁଆ, ଶଙ୍କର ଦୟାଲ ଶର୍ମାଙ୍କ ବଦଳରେ କଂଗ୍ରେସର ସଭାପତିରୂପେ ନିଯୁକ୍ତ ହୋଇଥାଆନ୍ତି । ଜୟପ୍ରକାଶ ତାଙ୍କ 'କାରାଗାର କାହାଣୀ'ରେ ଲେଖିଛନ୍ତି —''ପ୍ରଧାନମନ୍ତ୍ରୀ, କଂଗ୍ରେସ ଭିତରେ ଥିବା କମ୍ୟୁନିଷ୍ଟଙ୍କ ବୋଲକରା ଗୋଷ୍ଠୀ ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟି—ଏହି ତିନୋଟି ଯାକ ଗୋଷ୍ଠୀ ଗଣତନ୍ତ୍ରକୁ ଏକ ବିପଦ ବୋଲି ଗଣ୍ୟ କରୁଥିଲେ । ସେମାନେ ବହୁକାଳରୁ ଯୋଜନା କରୁଥିଲେ ତାଙ୍କର ଉଦ୍ଦେଶ୍ୟ ହାସଲ ଲାଗି—ପ୍ରଥମେ ''ସୋସିଏଲ ଡେମୋକ୍ରେସୀ'' ଏବଂ ତା ପରେ ସୁଚିନ୍ତିତ ଯୋଜନାନୁସାରେ

ରୁଷର ବଶ୍ୟତା ସ୍ୱୀକାରପୂର୍ବକ ଏକ କମ୍ୟୁନିଷ୍ଟ ପାର୍ଟିର ଶାସନ କବଳିତ ଭାରତବର୍ଷରେ ସ୍ଥାପିତ ହେବ ଏବଂ ଗଣତନ୍ତ୍ର ବଦଳରେ ଏକ-ଅଧିନାୟକ-ବାଦର ପ୍ରତିଷ୍ଠା ହେବ ।" ଇନ୍ଦିରା ଗାନ୍ଧୀ ଜଣେ ସ୍ୱାଭିମାନୀ ବ୍ୟକ୍ତି ହୋଇଥିବାରୁ କମ୍ୟୁନିଷ୍ଟ ପାର୍ଟିର ଏହି ଲକ୍ଷ୍ୟ ସାଧିତ ହୋଇ-ପାରିଲା ନାହିଁ । ସେ ନିଜ ହାତରୁ କର୍ତ୍ତୃତ୍ୱ ଛାଡ଼ିବାଲାଗି କେବେହେଲେ ପ୍ରସ୍ତୁତ ନ ଥିଲେ କି ହୁଅନ୍ତେ ନାହିଁ; କିନ୍ତୁ ଏହି ପରିସ୍ଥିତିର ସୁଯୋଗରେ ସେ ନିଜର ଏକାଧିପତ୍ୟ ଜାରି କରିବା ନିମନ୍ତେ ମନସ୍ଥ କରିନେଲେ ଏବଂ ସେହି ଅନୁସାରେ କଂଗ୍ରେସ ସଂଗଠନକୁ ପ୍ରଥମେ ନିଜର ପୂର୍ଣ୍ଣ କର୍ତ୍ତୃତ୍ୱରେ ଆଣିଲେ । ଏହା ନହୋଇଥିଲେ ଏବଂ ଇନ୍ଦିରା ଗାନ୍ଧୀଙ୍କର ଗଣତନ୍ତ୍ର ପ୍ରତି ବାସ୍ତବିକ ଯଦି ମମତା ଥାଆନ୍ତା, ସେ ଜୟପ୍ରକାଶଙ୍କର ଏଭଳି ଇଙ୍ଗିତର ସୁଯୋଗ ନେଇ ଭାରତର ଇତିହାସକୁ ଭିନ୍ନଭାବରେ ମୋଡ଼ ଦେଇପାରିଥାନ୍ତେ । ମାତ୍ର ଏବେ ବିଚାର କରି ଦେଖିଲେ ମନେହେଉଛି ଇନ୍ଦିରା ଗାନ୍ଧୀ ଏଭଳି ଏକଚ୍ଛତ୍ର ମନୋବୃତ୍ତି ନନେଇଥିଲେ ଭାରତରେ ଗଣତନ୍ତ୍ର ପଦ୍ଧତିର ପରାକାଷ୍ଠା କେମିତି ବଜାୟ ହୋଇଥାଆନ୍ତା, ନୂଆ ବିପ୍ଳବ କିଭଳି ସୃଷ୍ଟି ହୋଇପାରିଥାଆନ୍ତା ! ଭାରତବର୍ଷର ଭବିଷ୍ୟତ ଠିକଣା ରାସ୍ତାରେ ଯିବାର ଗତିରୋଧ କରୁଥିବା ବ୍ୟକ୍ତି, ଶକ୍ତି ଓ ଦଳଗୁଡ଼ିକର କିଭଳି ଲୋପ ହୋଇଥାଆନ୍ତା ! ଇନ୍ଦିରା ଗାନ୍ଧୀ ଯେ ଅଧୁନା କାଶ୍ମୀରର ଶ୍ରୀନଗରରେ କହିପକାଇଲେ ଯେ ଏମର୍ଜେନ୍‌ସି ଜାରି ନହୋଇଥିଲେ ଜନତା ପାର୍ଟି ସରକାର କୁଆଡ଼ୁ ଆସିଥାଆନ୍ତା !

କମ୍ୟୁନିଷ୍ଟ ସମର୍ଥକଙ୍କର ପୂର୍ଣ୍ଣ ସମର୍ଥନ ଲାଭ କରି କଂଗ୍ରେସ ସଂଗଠନକୁ ଇନ୍ଦିରା ଗାନ୍ଧୀ ସଂପୂର୍ଣ୍ଣରୂପେ କରାୟତ୍ତ କଲେ ଏବଂ କୌଣସି ପ୍ରକାର ବିରୋଧ ବା ସମାଲୋଚନାକୁ ପ୍ରଶ୍ରୟ ଦେଲେ ନାହିଁ । ଜୟପ୍ରକାଶ ଉଠାଇଥିବା ମୌଳିକ ପ୍ରଶ୍ନଗୁଡ଼ିକ, ଯଥା ଦୁର୍ନୀତି ବିରୋଧ, ନିର୍ବାଚନ ପଦ୍ଧତି ଓ ଶିକ୍ଷାପଦ୍ଧତିର ସଂଶୋଧନ ଆଦି ପ୍ରଶ୍ନ କଂଗ୍ରେସର ନିର୍ବାଚନ ଇସ୍ତାହାରରେ ରହିଥିଲା ଏବଂ ସେ ସମସ୍ୟା ସମ୍ବନ୍ଧରେ ପରସ୍ପର ଆଲୋଚନା କରାଯାଉ ବୋଲି ମୋହନ ଧାରିଆ ଯେଉଁ ପ୍ରକାଶ୍ୟ ଦାବି କଲେ, ସେଥିର ବହୁସମର୍ଥନ କଂଗ୍ରେସ ଭିତରେ ଓ ବାହାରେ ପ୍ରକାଶ ପାଇଲା । ଏହା କ୍ରମେ ଇନ୍ଦିରା ଗାନ୍ଧୀଙ୍କ ପୂର୍ବ ନିର୍ଦ୍ଧାରିତ ପନ୍ଥାରେ କଣ୍ଟକ ହୋଇପାରେ ବୋଲି ମୋହନ ଧାରିଆଙ୍କୁ ମନ୍ତ୍ରିମଣ୍ଡଳରୁ ବହିଷ୍କାର କରାଗଲା । ଏଭଳି ପଦକ୍ଷେପ ଯେ ସମ୍ବିଧାନ ଓ ଗଣତନ୍ତ୍ର ପରମ୍ପରା ଦୃଷ୍ଟିରୁ ଅନ୍ୟାୟ, ଏହା ଇନ୍ଦିରା ଗାନ୍ଧୀ ଜାଣିଥିଲେ ସୁଦ୍ଧା, ନିଜର ଅଖଣ୍ଡ କର୍ତ୍ତୃତ୍ୱ ଜନସାଧାରଣଙ୍କ ନିକଟରେ ପ୍ରତିପାଦନ କରିବାପାଇଁ ଏପରି କରୁଥିଲେ । ମୋହନ ଧାରିଆଙ୍କର ଇସ୍ତଫା ସମ୍ବନ୍ଧୀୟ ବିବୃତି ଓ ଅନ୍ୟାନ୍ୟ ଯାହାସବୁ ଘଟିଗଲା, ସେତେବେଳେ ଲେଖକ ଦିଲ୍ଲୀରେ ଥିଲା ଏବଂ ଏସବୁ ଘଟଣାଗୁଡ଼ିକ ବିଷୟରେ ତାରି ପ୍ରତ୍ୟକ୍ଷ ଜ୍ଞାନ ରହିଛି—କିଛି ବିଚାର ପରାମର୍ଶରେ ମଧ୍ୟ ସେ ସଂପୃକ୍ତ ରହିଥିଲା । ଇନ୍ଦିରା ଗାନ୍ଧୀଙ୍କ ଏହା ଅଗୋଚର ନ ଥିବ । ତେଣୁ ୧୯୭୫ ମାର୍ଚ୍ଚ ୨୬ ତାରିଖରେ ଲେଖକର ଇନ୍ଦିରା ଗାନ୍ଧୀଙ୍କ ସହି ସାକ୍ଷାତ୍‌ବେଳେ ସେ ନିଜଆଡ଼ୁ ମୋହନ ଧାରିଆଙ୍କର ଏଭଳି ଅନ୍ୟାୟ ଭାବରେ ବହିଷ୍କାରର ଏକ ଯାର୍ଦ୍ଧ ସଫେଇ ଦେଲେ ଏବଂ କହିଲେ କେବଳ ଜୟପ୍ରକାଶଙ୍କ ସହି

ମିଳାମିଶା ଲାଗି ଦାବି କରିବାରୁ ଯେ ତାଙ୍କ ପ୍ରତି ଏଭଳି ବିଧାନ କରାଗଲା, ତାହା ନୁହେଁ; ମନ୍ତ୍ରିମଣ୍ଡଳର ଆଲୋଚନାରେ ଏବଂ କାର୍ଯ୍ୟରେ ମଧ୍ୟ ସେ ନାନା ଘଟଣାରେ ବିଶୃଙ୍ଖଳା ଜାତ କରୁଥିଲେ । ଲେଖକ ପରେ ମୋହନ ଧାରିଆଙ୍କ ସହ ଆଲୋଚନା କରି ଜାଣିବାକୁ ପାଇଲି ଯେ, ଆର୍ଥିକ ନୀତିର କାର୍ଯ୍ୟକାରିତାରେ ବିଳମ୍ବ ଯୋଗୁଁ ସେ ବରାବର ପ୍ରଧାନମନ୍ତ୍ରୀଙ୍କୁ ଦୋଷ ଦେଖାଇ ପତ୍ର ଲେଖୁଥିଲେ ଏବଂ କେବେ ମନ୍ତ୍ରିମଣ୍ଡଳ ବୈଠକରେ ମଉକା ମିଳିଲେ ସେ ବିଷୟ ଉତ୍ଥାପନ କରୁଥିଲେ ।

ଇନ୍ଦିରା ଗାନ୍ଧୀଙ୍କ ସହ ଏହି ମୁଲାକାତରେ ଆଉ ଏକ ସ୍ପଷ୍ଟ ସୂଚନା ମିଳିଲା ଯେ ସେ ପ୍ରଗତିଶୀଳ କର୍ମପନ୍ଥା ନେବାରେ ଅବହେଳା କରୁଛନ୍ତି କିମ୍ବା ଚୋରାବଜାରୀଙ୍କ ପ୍ରତି କୋହଳ ବ୍ୟବହାର ଦେଖାଉଛନ୍ତି, ଏଭଳି ସମାଲୋଚନା ମଧ୍ୟ ସହ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ । କେ. ଆର. ଗଣେଶ ସେତେବେଳେ ଅର୍ଥ-ରାଷ୍ଟ୍ରମନ୍ତ୍ରୀ ଥାଆନ୍ତି ଏବଂ ଚୋରାବେପାରୀଙ୍କୁ ଧରିବାକୁ କେତେକ ଦୃଢ଼ ପଦକ୍ଷେପ ନିଆହେଉଥାଏ । ମାତ୍ର ଏ କାର୍ଯ୍ୟକୁ କେବଳ କମ୍ୟୁନିଷ୍ଟପନ୍ଥୀ ମନ୍ତ୍ରୀ କେ. ଆର. ଗଣେଶ ଦୃଢ଼ତା ସହକାରେ କରୁଛନ୍ତି ଏବଂ ଅନ୍ୟମାନେ ଏଥିରେ ଶିଥିଳ ବୋଲି ଏକ ଧାରଣା ସୃଷ୍ଟି କରାଯାଉଥିଲା । ଏଭଳି କି କମ୍ୟୁନିଷ୍ଟପନ୍ଥୀ କଂଗ୍ରେସ ଲୋକଙ୍କର ମୁଖପତ୍ର 'ନ୍ୟୁ ୱେଭ୍' କାଗଜରେ ପ୍ରକାଶପାଇଗଲା ଯେ, ଚୋରାବେପାରୀଙ୍କୁ ପୂରାପୂରି ବନ୍ଦ କରିବା ନିମନ୍ତେ ଏବଂ ସେମାନଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ କରିବା ନିମନ୍ତେ ପ୍ରସ୍ତାବିତ ଅର୍ଡିନାନ୍ସ ଓ ଅନ୍ୟାନ୍ୟ ଆଇନଗତ ବ୍ୟବସ୍ଥା ଶୀଘ୍ର କରାଇବାରେ ଇନ୍ଦିରା ଗାନ୍ଧୀ ଉତ୍ସାହୀ ନୁହନ୍ତି ଓ ଫାଇଲ ମାଡ଼ିବସିଛନ୍ତି । କିଛିଦିନ ଆଗରୁ ଶ୍ରୀ ଗଣେଶ ମଧ୍ୟ ଲେଖକଙ୍କୁ ଥରେ ଅନୁରୋଧ କରିଥିଲେ ପ୍ରଧାନମନ୍ତ୍ରୀଙ୍କି କହିବା ନିମନ୍ତେ—ତାଙ୍କ ପାଖରେ ପଡ଼ିରହିଥିବା ଏ ସଂକ୍ରାନ୍ତୀୟ ଫାଇଲ୍ ଗୁଡ଼ିକୁ ଶୀଘ୍ର ଯେପରି ଫଏସଲା କରନ୍ତି । ଲେଖକ କେବେ ସେ ବିଷୟ ଇନ୍ଦିରା ଗାନ୍ଧୀଙ୍କ ଆଗରେ ଉଠାଇ ନ ଥିଲା । ମାତ୍ର ଏହି ସାକ୍ଷାତ୍‌ରେ ଇନ୍ଦିରା ଗାନ୍ଧୀ ନିଜ ଆଡ଼୍ କମ୍ୟୁନିଷ୍ଟ ଗୋଷ୍ଠୀ ତରଫରୁ New Wave ସମ୍ବାଦପତ୍ରରେ ଗଣେଶଙ୍କ ଉଦ୍ୟମ ପ୍ରଧାନମନ୍ତ୍ରୀଙ୍କ ଯୋଗୁଁ ବିଳମ୍ବିତ ବୋଲି ପ୍ରଚାରର ନିନ୍ଦାକଲେ । କିଛିଦିନ ପରେ ଗଣେଶ ଯେ ମନ୍ତ୍ରିମଣ୍ଡଳରୁ ବିଦାୟ ହୋଇଗଲେ, ସେ ସମ୍ବାଦରେ ଲେଖକ କିଛି ବିସ୍ମିତ ହୋଇ ନଥିଲା ।

ଏହି ଦୁଇଟି ଘଟଣା ଏଠାରେ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି, କଂଗ୍ରେସ ସଂଗଠନ ଓ ସରକାରୀ ସ୍ତରରେ ଇନ୍ଦିରା ଗାନ୍ଧୀ ତାଙ୍କ ସମର୍ଥକ କମ୍ୟୁନିଷ୍ଟଙ୍କର କିମ୍ବା ଅନ୍ୟ କୌଣସି ପ୍ରକାର ବିରୋଧ ବା ସମାଲୋଚନା ସହ୍ୟ କରିବାକୁ ପ୍ରସ୍ତୁତ ନ ଥିଲେ । ନିଜର ପୂର୍ଣ୍ଣ କର୍ତ୍ତୃତ୍ୱ ସବୁମନ୍ତେ ନିଜ ହାତରେ ରଖିବା ନିମନ୍ତେ ସେ ଦୃଢ଼ ପଦକ୍ଷେପମାନ ନେଲେ । ନିଜ ମନ୍ତ୍ରିମଣ୍ଡଳର ସମସ୍ତ ସଦସ୍ୟଙ୍କ ଉପରେ ମଧ୍ୟ ତାଙ୍କର ବିଶ୍ୱାସ ନଥିଲା । ଏଣେ କଂଗ୍ରେସ କମିଟିରେ ଯଦି କେଉଁଠାରେ କିଛି ବିରୋଧ ଥିଲା, ତାହା ପୂର୍ଣ୍ଣଭାବରେ ସେ ଆୟତ୍ତ କରିନେଲେ । ବହୁ ପ୍ରଦେଶର କଂଗ୍ରେସ କମିଟିଗୁଡ଼ିକୁ ଭାଙ୍ଗିଦିଆଯାଇ କେବଳ ଆଡ଼ହକ-କମିଟି ଗଠନ କରାଗଲା ଏବଂ ସେଗୁଡ଼ିକ ଏକପ୍ରକାର ମୁଖ୍ୟମନ୍ତ୍ରୀମାନଙ୍କର ଅଧସ୍ତନ କମିଟି

ଭାବରେ କାର୍ଯ୍ୟ କଲା । ଲେଖକ ନିଜ ଅନୁଭୂତିରୁ କେତେକ ଘଟଣାରେ ଜାଣେ ଯେ କଂଗ୍ରେସ ସଭାପତି ବୋଲାଉଥିବା ଦେବକାନ୍ତ ବରୁଆ, ଇନ୍ଦିରା ଗାନ୍ଧୀଙ୍କ ବିଶ୍ୱସ୍ତ ସେକ୍ରେଟେରୀ ଆର୍‌. କେ. ଧାୱନ୍‌ଙ୍କ ଦ୍ୱାରା ପରିଚାଳିତ ହେଉଥିଲେ ଏବଂ କଂଗ୍ରେସ ଅଭିଯାନ କମିଟି ନାମରେ ଏକ କମିଟିରେ ଶ୍ରୀ ଜଗଜ୍ଜୀବନ ରାମଙ୍କୁ ନାମମାତ୍ର ଚେୟାରମାନ୍‌ ରଖାଯାଇ ଯଶପାଲ କାପୁର । ଏହାର ସାଧାରଣ ସଂପାଦକ ରୂପେ ସବୁ ସ୍ତରରେ କଂଗ୍ରେସର ଏକପ୍ରକାର ସମାନ୍ତରାଳ ସଂଗଠନ ଛିଡ଼ାକରାଇବାକୁ ଲାଗିଲେ । କଂଗ୍ରେସ କମିଟି ଥିବା ନଥିବା ଅବସ୍ଥାରେ ହିଁ ରହିଲା । ସାଂଗଠନିକ ଏବଂ ନିର୍ବାଚନ ଆଦିର ଆୟୋଜନ ଓ ପରିଚାଳନା ଏହି ଅଭିଯାନ କମିଟି ହିଁ କରିବାକୁ ଲାଗିଲା । କେତେକ ପ୍ରଦେଶ ମୁଖ୍ୟମନ୍ତ୍ରୀମାନଙ୍କୁ ଏଥିଭିତରେ ପରିବର୍ତ୍ତନ କରାଗଲା ଏବଂ ସେମାନେ ସମ୍ପୂର୍ଣ୍ଣରୂପେ ଇନ୍ଦିରା ଗାନ୍ଧୀଙ୍କ ଅନୁଗତ ଓ ବିଶ୍ୱସ୍ତ ହୋଇ ରହିଲେ । ଉତ୍ତର ପ୍ରଦେଶରେ ଏହି କାଳ ଭିତରେ ଶ୍ରୀ ବହୁଗୁଣାଙ୍କୁ ମୁଖ୍ୟମନ୍ତ୍ରୀ କରାଯାଇଥିଲା । ସେ ଇନ୍ଦିରା ଗାନ୍ଧୀଙ୍କର ନେତୃତ୍ୱ ସ୍ୱୀକାର କରୁଥିଲେ ମଧ୍ୟ କେତେକ କ୍ଷେତ୍ରରେ ନିଜର ସ୍ୱାଧୀନଭାବ ଦେଖାଇବାରୁ ଏବଂ ବ୍ୟକ୍ତିଗତ ଭାବରେ ସାଂଗଠନିକ ପ୍ରଭାବ ଓ ଶାସନରେ ପ୍ରତିଷ୍ଠା ବଢ଼ାଇବାରୁ ତାଙ୍କୁ ଅନ୍ତର କରିଦିଆଗଲା । କଂଗ୍ରେସଦଳର ବହୁମତ ଥାଇ ସୁଦ୍ଧା କଂଗ୍ରେସ ଭିତରେ ଏପରି ଆଭ୍ୟନ୍ତରୀଣ ପରିସ୍ଥିତି ରହିଥିଲା ଯେ ଆଉ ଜଣେ କାହାରିକି ହଠାତ୍ ମୁଖ୍ୟମନ୍ତ୍ରୀ ଭାବରେ ନିଯୁକ୍ତ ଦେବା ସମ୍ଭବ ହୋଇପାରିଲାନାହିଁ ଏବଂ ସାଂବିଧାନିକ ପରମ୍ପରାକୁ ଲଙ୍ଘନ କରାଯାଇ ରାଷ୍ଟ୍ରପତି ଶାସନ ଜାରି କରାଗଲା ।

ଏତିକବେଳେ ଦେଶରେ ଯେତେ ବେସରକାରୀ ଜନମତ ସଂଗ୍ରହ କରାଗଲା ଏବଂ କେତେକ ସମ୍ବାଦପତ୍ରରେ ଜୟପ୍ରକାଶଙ୍କ ଲୋକପ୍ରିୟତା ସମ୍ବନ୍ଧରେ ପାଠକଙ୍କ ମତ ନିଆଗଲା, ସେଥିରୁ ଜଣାପଡ଼ିଲା ଯେ ଇନ୍ଦିରା ଗାନ୍ଧୀଙ୍କ ଅପେକ୍ଷା ଜୟପ୍ରକାଶ ନାରାୟଣ ବହୁ ଅଧିକ ଲୋକପ୍ରିୟତା ଅର୍ଜନ କରିଛନ୍ତି—ଲୋକେ କଂଗ୍ରେସ ଦଳ ଓ ଇନ୍ଦିରା ଗାନ୍ଧୀଙ୍କର ଅଧିକ ସମାଲୋଚକ ଏବଂ ବିରୋଧୀ ପାଲଟିଛନ୍ତି । ସୋଭିଏତ୍‌ ସମ୍ବାଦ-ସରବରାହ ସଂସ୍ଥାଠାରୁ ୧୯୭୪ ନଭେମ୍ବରରେ ଏକ ସମ୍ବାଦ ପ୍ରଚାରିତ ହୋଇ ପରିବେଷଣ କରି ଲୋକମତରେ ଏଭଳି ପରିବର୍ତ୍ତନରେ ଆଶଙ୍କା ପ୍ରକାଶ କରିଥିଲା । ତାହାର ବକ୍ତବ୍ୟ ଥିଲା ଯେ ଦକ୍ଷିଣପନ୍ଥୀ ପ୍ରତିକ୍ରିୟାବାଦୀ ଜୟପ୍ରକାଶ ନାରାୟଣ ଏବେ ସବୁ ଦକ୍ଷିଣପନ୍ଥୀ ଓ ସାଂପ୍ରଦାୟିକ ଶକ୍ତିଗୁଡ଼ିକୁ ଏକତ୍ର କରିସାରିଲେଣି । ସେଥିରେ ବିଶେଷ ଭାବରେ ଜନସଙ୍ଘ, ଭାରତୀୟ ଲୋକଦଳ, ସଂଗଠନ କଂଗ୍ରେସ ଓ 'ଅର୍ଦ୍ଧଫାସିଷ୍ଟ' ଆନନ୍ଦମାର୍ଗୀ ସଂଗଠନର ନାମ ଉଲ୍ଲେଖ କରାଯାଇଥିଲା । ଏହାକୁ ପ୍ରତିହତ କରିବା ନିମନ୍ତେ ସି. ପି. ଆଇ., ଅନ୍ୟ ବାମପନ୍ଥୀ ଶକ୍ତି ଏବଂ କଂଗ୍ରେସ ଭିତରେ ରହିଥିବା ପ୍ରଗତିପନ୍ଥୀ ଶକ୍ତିଙ୍କ ଭିତରେ ଏକତା ଆଣିବା ଓ ଐକ୍ୟବଦ୍ଧ ସଂଗ୍ରାମ କରିବା ନିମନ୍ତେ ନିର୍ଦ୍ଦେଶ ରହିଥିଲା । ପରିସ୍ଥିତିର ପରିବର୍ତ୍ତନ ହେତୁ ସେମାନଙ୍କର ଯୁଦ୍ଧ କୌଶଳ ବଦଳାଇ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱକୁ ବଳଶାଳୀ କରିବା ଓ ତାଙ୍କ ପଶ୍ଚାତ୍‌ରେ ଦୃଢ଼ଭାବରେ ରହିବା ନିମନ୍ତେ କମ୍ୟୁନିଷ୍ଟ ପାର୍ଟି ସ୍ଥିର କରିନେଲା । କଂଗ୍ରେସର

ସଭାପତି ରୂପେ ଦେବକାନ୍ତ ବରୁଆ ରହିଥିବାରୁ କଂଗ୍ରେସ ସହ ସଂପୂର୍ଣ୍ଣ ଭାବରେ ମିଳିତ ହୋଇ କାର୍ଯ୍ୟପନ୍ଥା ନେବାରେ କୌଣସି ଅସୁବିଧା ରହିନଥିଲା ।

ଗୁଜରାଟ ଆସେମ୍ବ୍ଲି ନିର୍ବାଚନ ଓ ଲୋକସଭାର କେତେକ ଉପନିର୍ବାଚନ ହେବାର ଥାଏ । ବିହାର ଆସେମ୍ବ୍ଲିରୁ ଜୟପ୍ରକାଶଙ୍କ ଆହ୍ୱାନରେ କେତେକ ଆସେମ୍ବ୍ଲି ସଭ୍ୟ ଇସ୍ତଫା ଦେଇଥାଆନ୍ତି ଏବଂ ଅନ୍ୟ କେତେକ ଆସେମ୍ବ୍ଲିରେ ସଭ୍ୟ ପଦ ଖାଲି ଥାଏ । ତାହା ପାଇଁ ନିର୍ବାଚନ କରାଇବାଲାଗି ଭାରତସରକାର ସମ୍ମତ ହେଲେନାହିଁ; କିନ୍ତୁ ଶେଠ ଗୋବିନ୍ଦ ଦାସଙ୍କ ମୃତ୍ୟୁପରେ ଲୋକସଭା ଲାଗି ଜବଲପୁରର ଖାଲି ସ୍ଥାନ ପୂରଣ କରିବା ନିମନ୍ତେ ଏବଂ ଗୁଜରାଟ ଆସେମ୍ବ୍ଲି ନିର୍ବାଚନ କରାଇବା ଲାଗି ଇନ୍ଦିରା ଗାନ୍ଧୀ ବାଧ୍ୟହୋଇଥିଲେ । ଜବଲପୁର ଲୋକସଭା ଉପନିର୍ବାଚନରେ ବିରୋଧୀ ପକ୍ଷଙ୍କ ଭିତରେ ଗୋଟାଏ ରାଜିନାମା ହୋଇ ଜଣେ ଯୁବକ ଜନତା ପ୍ରାର୍ଥୀ ଭାବରେ ପ୍ରତିଦ୍ୱନ୍ଦ୍ୱିତା କରି ଅପୂର୍ବ ସାଫଲ୍ୟ ଲାଭକଲେ । କଂଗ୍ରେସ ଲୋକଙ୍କ ମନରେ ଏହାର ପ୍ରତିକ୍ରିୟା ସୃଷ୍ଟି ହେଲା ଏବଂ ବିରୋଧୀ ଶକ୍ତିଙ୍କ ଭିତରେ ଖୁବ ଉତ୍ସାହ ପରିଲକ୍ଷିତ ହେଲା । ତେଣୁ ଜୁନ ମାସରେ ହେବାକୁ ଥିବା ଗୁଜରାଟ ଆସେମ୍ବ୍ଲି ନିର୍ବାଚନ ବେଳକୁ ବିରୋଧୀଦଳଗୁଡ଼ିକ ଭିତରେ ଗୋଟାଏ ବୁଝାମଣା ହୋଇ ଜନତା ପାର୍ଟି ନାମରେ ସେମାନେ ନିର୍ବାଚନରେ ଅବତୀର୍ଣ୍ଣ ହେଲେ । ଇନ୍ଦିରା ଗାନ୍ଧୀଙ୍କର ସମସ୍ତ ଲୋକପ୍ରିୟତା, କଠିନ ପରିଶ୍ରମ, ଦକ୍ଷ ସଂଗଠନ ସତ୍ତ୍ୱେ ଓ ପ୍ରଚୁର ଅର୍ଥ ବ୍ୟୟ କରାଯାଇ ବି କଂଗ୍ରେସକୁ ବହୁମତ ମିଳିଲା ନାହିଁ ।

ଗୁଜରାଟ ଆସେମ୍ବ୍ଲି ନିର୍ବାଚନ ଜୁନ୍ ୧୦ ତାରିଖରେ ଶେଷ ହେଲା—ଫଳାଫଳ ପ୍ରକାଶଲାଗି ଆହୁରି ବିଳମ୍ବ ଥାଏ; କିନ୍ତୁ ଜୁନ୍ ୧୨ ତାରିଖରେ ଏଲାହାବାଦ ହାଇକୋର୍ଟ ଇନ୍ଦିରା ଗାନ୍ଧୀଙ୍କୁ ଯେ ୬ ବର୍ଷ ପର୍ଯ୍ୟନ୍ତ ନିର୍ବାଚନ ଲଢ଼ିପାରିବେ ନାହିଁ ବୋଲି ଦୂଷିତ ଅପରାଧରେ ଦଣ୍ଡିତ କରି ନିର୍ବାଚନକୁ ଅସିଦ୍ଧ ଘୋଷଣା କରିଦେଲେ; ତହିଁରେ ପରିସ୍ଥିତିର ଗୁଣାତ୍ମକ ପରିବର୍ତ୍ତନ ହୋଇଗଲା । ଏହା ଏକ ଐତିହାସିକ ରାୟ । ଏପର୍ଯ୍ୟନ୍ତ କୌଣସି ପ୍ରଧାନମନ୍ତ୍ରୀ ଏଭଳି ନିର୍ବାଚନ ମକଦ୍ଦମାରେ ପରାଜୟ ଲଭିବା ଏବଂ ସେଥିରେ ପୁଣି ନିର୍ବାଚନ ଲଢ଼ିବାରୁ ବଞ୍ଚିତ ହେବା ଏହା ପ୍ରଥମ । ତେଣୁ ରାଜନୀତିକ ଜୀବନ ଚମତ୍କୃତ ହୋଇଗଲା । ଯେଉଁ ଦୁଇଟି ନିର୍ବାଚନ ଅପରାଧରେ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇଥିଲା ତାହା ଅପେକ୍ଷା ଅଧିକ ଗୁରୁତର ହେଉଛି ବିଚାରପତି ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କର ସାକ୍ଷ୍ୟକୁ ଅବିଶ୍ୱାସ କଲେ । ଏ ଲେଖକ ତାର ଡାଏରୀରେ ଜୁନ ୧୨ ଓ ୧୩ ତାରିଖରେ ନିମ୍ନମତେ ଲିପିବଦ୍ଧ କରିଛି :—

"ଏହି ରାୟ ଦେଇ ବିଚାରପତି ସିହ୍ନା ବାସ୍ତବିକ ବିଚାରାଳୟ ପ୍ରତି ଲୋକଙ୍କର ଆସ୍ଥା ବଢ଼ାଇଛନ୍ତି ଏବଂ ଯେତେ ବଡ଼ଲୋକ ବା ଅଧିକାରୀ ସଂପୃକ୍ତ ଥିଲେ ସୁଦ୍ଧା ପ୍ରକୃତ ନ୍ୟାୟ କାର୍ଯ୍ୟରେ ସେମାନେ ପ୍ରଭାବିତ ହେଉନାହାନ୍ତି ବୋଲି ପ୍ରମାଣିତ କରିଛନ୍ତି । ଆଜିକାଲି ଯେପରି ସବୁକ୍ଷେତ୍ରରେ ଶାସକବର୍ଗ ହସ୍ତକ୍ଷେପ ଓ ପ୍ରଭାବ ପକାଇ ନିଜର ଉଦ୍ଦେଶ୍ୟ ହାସଲ କରୁଛନ୍ତି,

ସେଥିରେ ଏପରି ସ୍ୱାଧୀନତା ଖୁବ୍ ବିରଳ ଦେଖାଯାଉଛି । ଭାରତର ଗଣତନ୍ତ୍ର, ନିୟମକାନୁନ ଏବଂ ସମ୍ବିଧାନର ମର୍ଯ୍ୟାଦା ଏତଦ୍ୱାରା ବୃଦ୍ଧି ପାଇଲା ।

× × ×

ସବୁଠାରୁ ଗୁରୁତର ହେଉଛି ଶ୍ରୀମତୀ ଗାନ୍ଧୀଙ୍କର ସାକ୍ଷ୍ୟକୁ ବିଚାରପତିଙ୍କର ଅବିଶ୍ୱାସ । ବାସ୍ତବିକ ସାକ୍ଷ୍ୟ ପଢ଼ି ଯାହାସବୁ ଦେଖାଯାଉଛି, ଗୋଟିଏ ଅଡ଼ୁଆ ପରିସ୍ଥିତିରୁ ରକ୍ଷା ପାଇବା ନିମନ୍ତେ ଇନ୍ଦିରା ଗାନ୍ଧୀ ମିଥ୍ୟା କହିଛନ୍ତି ଏବଂ ତାହା ବିଶ୍ୱାସଯୋଗ୍ୟ ହୋଇନାହିଁ । ଅନ୍ୟ କୌଣସି କାରଣରୁ ନ ହେଲେ ସୁଦ୍ଧା ଏହି କାରଣରୁ ପ୍ରଧାନମନ୍ତ୍ରୀ ଯଦି ଇସ୍ତଫା ଦିଅନ୍ତେ, ତେବେ ଦେଶର ନୈତିକ ମାନକୁ ବଢ଼ାନ୍ତେ ।

ପୁଣି ଜୁନ୍ ୧୩ରେ ଲେଖାଅଛି :

"ସୁପ୍ରିମ୍ କୋର୍ଟ ଅପିଲ ଶେଷ ନ ହେବା ପର୍ଯ୍ୟନ୍ତ ଚୂଡ଼ାନ୍ତ ନିଷ୍ପତ୍ତି ହୋଇଗଲା ବୋଲି ଧରାଯିବ ନାହିଁ । ମାତ୍ର ଏହି ରାୟ ପରେ ପ୍ରଧାନମନ୍ତ୍ରୀ, ଯେ କି ଦେଶର ମୁଖ୍ୟ ନେତା, ତାଙ୍କର ସମ୍ମାନ, ମର୍ଯ୍ୟାଦା ଏବଂ ନିର୍ମଳତା ଉପରେ ନିଶ୍ଚିତଭାବରେ ଆଞ୍ଚ ପହଞ୍ଚିଛି । ସେହି ଦୃଷ୍ଟିରୁ ତାଙ୍କ ପକ୍ଷରେ ଶୋଭନୀୟ ହୁଅନ୍ତା, ସେ ଯଦି ସ୍ୱେଚ୍ଛାକୃତଭାବେ ଇସ୍ତଫା ଦେଇ ଅନ୍ୟ କେହି କଂଗ୍ରେସ ଦଳ ତରଫରୁ ଏ ଦାୟିତ୍ୱ ତୁଲନ୍ତେ ଏବଂ ସୁପ୍ରିମ୍ କୋର୍ଟରେ ଏ ରାୟ ବାତିଲ ନହେଲେ ତାଙ୍କ ପକ୍ଷରେ ଆଉ ଏ ଦାୟିତ୍ୱକୁ ଫେରିବା ପ୍ରଶ୍ନ ଉଠନ୍ତା ନାହିଁ ।

ମାତ୍ର ଯେପରି ଦେଖାଯାଉଛି ଇନ୍ଦିରା ଗାନ୍ଧୀ ସେପରି କୌଣସି ପଦକ୍ଷେପ ନେବାଲାଗି ପ୍ରସ୍ତୁତ ନୁହନ୍ତି; ବରଂ ଚାରିଆଡ଼େ ସେ ଯେମିତି ରହିଲେ ଏବଂ ଦେଶରେ ତାଙ୍କ ଛଡ଼ା ଆଉ କେହି ନେତୃତ୍ୱ ଦେଇପାରିବ ନାହିଁ ବୋଲି ଏକ ଆବହାଓଆ ଓ ନିଜ ସମର୍ଥନରେ ଲୋକ-ମେଳା ଏବଂ ପ୍ରଦର୍ଶନ କରାଉଛନ୍ତି । ଏହା ଅତ୍ୟନ୍ତ ମାରାତ୍ମକ ମନୋବୃତ୍ତି ।"

ଦେଶର ଚାରିଆଡ଼େ ସ୍ୱଭାବତଃ ଇନ୍ଦିରା ଗାନ୍ଧୀଙ୍କର ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦାବି ହେଲା । ବିରୋଧୀଦଳ ସଂଗଠିତ ଭାବରେ ଏଥିଲାଗି ଆନ୍ଦୋଳନ କଲେ । କଂଗ୍ରେସ ଭିତରେ ମଧ୍ୟ ଆଲୋଡ଼ନ ପଡ଼ିଗଲା । ଇନ୍ଦିରା ଗାନ୍ଧୀ ପ୍ରଥମାବସ୍ଥାରେ ଇସ୍ତଫା ଦେବା ବିଷୟ ବିଚାରକୁ ନେଇଥିଲେ, କିନ୍ତୁ ଏଣେ କ୍ଷମତା ହାତରୁ ଥରେ ଚାଲିଗଲେ କଂଗ୍ରେସର ଯେଉଁ ବନ୍ଧୁମାନଙ୍କ ହାତରେ ସମର୍ପି ଦେବେ, ସେମାନେ ଆଉ ଛାଡ଼ିବେ କି ନାହିଁ ଏ ଭୟ ରହିଲା । ସେ ନିଜେ ତ ତଦ୍ରୂପ ଆଚରଣ କରିଥିଲେ । କାମରାଜ ଓ ଅନ୍ୟମାନଙ୍କୁ ସମସ୍ତଙ୍କ ପରାମର୍ଶରେ କାର୍ଯ୍ୟ କରିବାର ପ୍ରତିଶ୍ରୁତି ଦେଇ ସେ ପ୍ରଧାନମନ୍ତ୍ରୀ ହେବାର ସୁଯୋଗ ଲାଭକରିଥିଲେ; ମାତ୍ର ପ୍ରଧାନମନ୍ତ୍ରୀ ହେବା ପରେ ଠିକ୍ ବିପରୀତ କାର୍ଯ୍ୟ କଲେ ଏବଂ ଅନ୍ୟମାନଙ୍କୁ ପ୍ରତ୍ୟାଖ୍ୟାନ କରି କ୍ଷମତାରେ ଦୃଢ଼ ହୋଇ ବସିଲେ । ତାଙ୍କ ବଦଳରେ ଯେ ବସିବ ସେ ଯେ ତଦ୍ରୂପ ଆଚରଣ ନ କରିବ ଏଥିର ପ୍ରତିଆରି କିଏ !

ତେଣୁ ଏଠାରେ ବିରୋଧୀର ଦାବି ଯୋଗୁଁ ଇନ୍ଦିରା ଗାନ୍ଧୀ ଯେତେ ବ୍ୟସ୍ତ ହେଲେ ନାହିଁ, ଅଧିକ ବିଚଳିତ ହେଲେ କଂଗ୍ରେସ ପାର୍ଟିର ନେତାମାନେ ତାଙ୍କ ପ୍ରତି କିଭଳି ବ୍ୟବହାର କରିବେ ଭାବି । କଂଗ୍ରେସର ବୃଦ୍ଧ ନେତାମାନେ ଯେ ଏ ସୁଯୋଗର ସୁବିଧା ନେବେନାହିଁ କିମ୍ବା

ସେତେବେଳେ ସେଭଳି ଏକ ଉଦ୍ୟମ ଆରମ୍ଭ ନ ହୋଇଥିଲା, ଏପରି ନୁହେଁ । କଂଗ୍ରେସ ମଣ୍ଡଳର ଏକ ପ୍ରଭାବଶାଳୀ ଶ୍ରେଣୀ ତାଙ୍କ ଇସ୍ତଫା ଦାବିକରିଥିଲେ ।

କାଶ୍ମୀରର କରଣ ସିଂ ତାଙ୍କ ମନ୍ତ୍ରିମଣ୍ଡଳ ସଭ୍ୟ ଥାଆନ୍ତି । ସେ କହିଥିବାର ପ୍ରକାଶ— "ଆମେ ସବୁ ବିଗ୍ଭରିଲୁ ଏହା କେବଳ ବୈଧାନିକ ପ୍ରଶ୍ନ ନୁହେଁ, ରାଜନୀତିରେ ଏହା ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ହେଉଛି ରାଜନୀତିକ ତଥା ନୈତିକତାର ପ୍ରଶ୍ନ । ବାସ୍ତବିକ ୧୨ ଜୁନ୍ ଇନ୍ଦିରା ଗାନ୍ଧୀଙ୍କ ପକ୍ଷରେ ଏକ ଚରମ ପରୀକ୍ଷାର ଦିନ ଥିଲା । ବନ୍ଧୁକରେ, ଯେମିତି କହନ୍ତି, କେଉଁଆଡ଼କୁ ମାରିବ ନିଷ୍ପତ୍ତିର ବେଳ ପହଞ୍ଚିଥାଏ, ଏହା ସେହିଭଳି । ଠିକଏ ଇତସ୍ତତଃ ହେଲେ ଅନ୍ୟ ଆଡ଼େ ପହଞ୍ଚିଯିବ । ଉପନିଷଦରେ କୁହାଯାଇଛି—ସର୍ବଦା ଦୁଇଟି ପଥ ରହିଛି ଏବଂ ଏକ ନିଷ୍ପତ୍ତିର ମୁହୂର୍ତ୍ତ ମଧ୍ୟ ଥାଏ । ଇନ୍ଦିରା ଗାନ୍ଧୀ ଇସ୍ତଫା ନ ଦେବା ଦ୍ୱାରା ଯାହାସବୁ କାଣ୍ଡ ପରେ ଘଟିଲା ତାହା ହୋଇ ନଥାନ୍ତା ।

ଚନ୍ଦ୍ରଶେଖର କହିଲେ—"ଇନ୍ଦିରା ଗାନ୍ଧୀ ଗଣତାନ୍ତ୍ରିକ ନେତା ହୋଇ ରହିବା ଦିନ ଗ୍ଭଲିଗଲା । ସେ ଏଣିକି ଡିକ୍ଟେଟର ହେବେ ।"

ତାହାହିଁ ଶେଷକୁ ହେଲା ।

# ଜୁନ୍ ୧୨ରୁ ୨୫

ଇଂରାଜୀରେ ଏକ ପୁସ୍ତକ ଅଛି—Ten days that shook the world—"ଦଶ ଦିନରେ ଦୁନିଆ ହଲଚଲ ହୋଇଗଲା ।"

ସେମିତି ୧୯୭୫ ଜୁନ ୧୨ରୁ ଜୁନ ୨୫ ପର୍ଯ୍ୟନ୍ତ ଭାରତ ଦୋହଲିଗଲା—ରାଜନୀତିର ଏକ ପର୍ବ ୨୫ରେ ଅନ୍ତହୋଇ ନୂତନ ଅନ୍ଧକାର ଯୁଗ ଆରମ୍ଭହୋଇଗଲା ।

ଜୁନ ୧୨ ତାରିଖ ଇନ୍ଦିରା ଗାନ୍ଧୀଙ୍କ ପକ୍ଷରେ ଥିଲା ଏକ ଦୁର୍ଯୋଗର ଦିନ; ସେଦିନ ଆନନ୍ଦମୟୀଙ୍କ ପ୍ରଦତ୍ତ ରୁଦ୍ରାକ୍ଷମାଳା ଛିଣ୍ଡି ପଡ଼ିଥିଲା; ନାରି ହାତରେ ରହିଯାଇଥିଲା କମ୍ବା ଭୁଲିରେ ସେହି ମୁହୂର୍ତ୍ତରେ ପିନ୍ଧାହୋଇଥିଲା କି ନାହିଁ ଜଣାନାହିଁ; କିନ୍ତୁ ତାହା ଏ କ୍ଷେତ୍ରରେ କିଛି କରାମତି ଦେଖାଇଲା ନାହିଁ । ନିଜର ନିର୍ବାଚନ ଅସିଦ୍ଧ ହେଲା; ୬ ବର୍ଷ ଲାଗି ନିର୍ବାଚନ ଲଢ଼ିବା ଲାଗି ଅଯୋଗ୍ୟ ଘୋଷଣା ହେଲା ଏବଂ କୋର୍ଟରେ ଦେଇଥିବା ସାକ୍ଷ୍ୟ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ବିଚାରପତି ରାୟରେ ଲେଖିଲେ । ପୁଣି ଏହି ସମୟରେ ଗୁଜୁରାଟ ଆସେମ୍ବ୍ଲି ନିର୍ବାଚନ ଫଳାଫଳ ବାହାରିଲା—ଏଥିରେ ଜନତା ଫ୍ରଣ୍ଟ ଅଧିକ ସଂଖ୍ୟାରେ ନିର୍ବାଚିତ ହେଲା ଏବଂ କଂଗ୍ରେସ ଦଳର ପରାଜୟ ଘଟିଲା । ଦୁଇଟିଯାକ ଘଟଣାରେ ଇନ୍ଦିରା ଗାନ୍ଧୀ ଖାଲି ଅପମାନିତ ହେଲେ ନାହିଁ, ଲାଞ୍ଛିତ ବି ହେଲେ । ଏହି ଦିବସଟି ଆହୁରି ଘୋର ଦୁର୍ଦ୍ଦିନରେ ପରିଣତ ହୋଇଥାଆନ୍ତା ଯଦି ବିଚାରପତି ଜଗମୋହନ ସିହ୍ନା ସୁପ୍ରିମ୍ କୋର୍ଟରେ ଅପୀଲ କରିବାକୁ ୨୦ ଦିନ ପର୍ଯ୍ୟନ୍ତ ସମୟ ଦେଇ ନଥାନ୍ତେ । ହାଇକୋର୍ଟ ରାୟ ବିରୁଦ୍ଧରେ ସୁପ୍ରିମ୍ କୋର୍ଟକୁ ଯିବାର ଅଧିକାର ପ୍ରତ୍ୟେକର ଅଛି । କିଛିଦିନ ସମୟ ନଦେଇଥିଲେ ଇନ୍ଦିରା ଗାନ୍ଧୀଙ୍କୁ ତତ୍‌କ୍ଷଣାତ୍ ପ୍ରଧାନମନ୍ତ୍ରୀ ପଦ ତ୍ୟାଗ କରିବାକୁ ପଡ଼ିଥାନ୍ତା—ସୁପ୍ରିମ୍ କୋର୍ଟରେ ଯଦି ହାଇକୋର୍ଟ ରାୟ ସ୍ଥଗିତ ରଖିବାର ନିର୍ଦ୍ଦେଶ ପାଇଥାଆନ୍ତେ ତାହା ସ୍ୱତନ୍ତ୍ର ବିଷୟ ହୋଇଥାଆନ୍ତା । ବିଚାରପତି ଏଭଳି ସମୟ ଦେବାଦ୍ୱାରା 'ଆଇନ ସମ୍ମୁଖରେ ସର୍ବେ ସମାନ' ନୀତିର ଟିକିଏ ଖିଲାପ ହୋଇଗଲା । କୁହାଗଲା ଯେ ହଠାତ୍ ପ୍ରଧାନମନ୍ତ୍ରୀ ପଦ ଖାଲି ହୋଇଗଲେ ନାନା ଶାସନ ସଂକ୍ରାନ୍ତୀୟ ସମସ୍ୟା ଉପସ୍ଥିତ ହେବ; ଶାସନ ଏକପ୍ରକାର ଅଚଳ ହୋଇଯିବ । ନୂଆ ନେତା ନିର୍ବାଚନ ଆଦି କରିବା ନିମନ୍ତେ ସମୟ ଲାଗିବ ଇତ୍ୟାଦି । ଦୁଇ ଦୁଇଜଣ ପ୍ରଧାନମନ୍ତ୍ରୀଙ୍କର ମୃତ୍ୟୁ ପରେ ଭାରତବର୍ଷରେ ଅଚଳ ଅବସ୍ଥା ସୃଷ୍ଟି ହୋଇନାହିଁ । ରାଷ୍ଟ୍ରପତି ହେଲେ ଜାତିର ମୁଖ୍ୟ ଏବଂ ଶାସନର ସର୍ବୋଚ୍ଚ ଶିଖର ସ୍ତର । ପଣ୍ଡିତ ଜବାହରଲାଲ ଓ ଲାଲବାହାଦୁରଙ୍କର ମୃତ୍ୟୁ ପରେ ଅତି ଅଳ୍ପ ସମୟ ମଧ୍ୟରେ ନୂତନ ଅସ୍ଥାୟୀ ପ୍ରଧାନମନ୍ତ୍ରୀ ଶପଥ ଗ୍ରହଣ କରିଥିଲେ । ସେହି ନୀତି ଏ କ୍ଷେତ୍ରରେ ଅନୁସରଣ କରାଯାଇପାରିଥାନ୍ତା । ବିଚାରପତି ଏହି ବିଶେଷ ଦୟା ଦେଖାଇବାଦ୍ୱାରା ପ୍ରକୃତପକ୍ଷେ

ଇନ୍ଦିରା ଗାନ୍ଧୀ ଗାଦିଚ୍ୟୁତ ନ ହୋଇ ଯାବତୀୟ ଖଳ କୌଶଳ ଖେଳିବା ନିମନ୍ତେ ମଉକା ପାଇଗଲେ । ଦେଶର ଗୃହଆଡ଼େ ହୁଲସ୍ଥୁଲ ପଡ଼ିଗଲା । ଏହି କେତୋଟି ଦିନର ଘଟଣାବଳୀ ବର୍ଣ୍ଣନା କରି ବସିଲେ ଦୀର୍ଘ ବିବରଣୀ ଲେଖିବାକୁ ପଡ଼ିବ । ତେଣୁ ଜୁନ୍ ୧୨ରୁ ୨୫ ପର୍ଯ୍ୟନ୍ତ ଘଟଣାବଳୀର କ୍ରମ-ଅନୁସାରେ ତଳେ ଲିପିବଦ୍ଧ କରାଯାଉଛି ।

**ଜୁନ୍ ୧୨ :** ଏଲାହାବାଦ ହାଇକୋର୍ଟର ରାୟ । ୧୦-୫ରେ ନିର୍ବାଚନ ଅସିଦ୍ଧ ହେବାର ସମ୍ବାଦ । ୧୦-୪୫ ସୁଦ୍ଧା ପୂର୍ଣ୍ଣ ବିବରଣ—୨୦ ଦିନ ପର୍ଯ୍ୟନ୍ତ ରାୟ ସ୍ଥଗିତ । ମଧ୍ୟାହ୍ନ ସୁଦ୍ଧା—ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ନ ଦେବା ନିମନ୍ତେ ନିଷ୍ପତ୍ତି । ବିରୋଧ ପକ୍ଷରୁ ସମ୍ମିଳିତରୂପେ ଇସ୍ତଫା ଦାବି ଏବଂ ଏହି ଦାବି ପୂରଣ କରିବା ନିମନ୍ତେ ରାଷ୍ଟ୍ରପତି ଭବନରେ ବିରୋଧୀ ଦଳ ମେମ୍ବରମାନଙ୍କର ରାଷ୍ଟ୍ରପତିଙ୍କ ବାସଭବନରେ ଧାରଣା—ରାଷ୍ଟ୍ରପତି କାଶ୍ମୀର ଯାଇଥିବାରୁ ଦିଲ୍ଲୀରେ ଅନୁପସ୍ଥିତ । ଇନ୍ଦିରା ଗାନ୍ଧୀ ଇସ୍ତଫା ଦେବା ବିଷୟରେ ଟିକିଏ ଚିନ୍ତା କରୁଥିବାବେଳେ ସଞ୍ଜୟ ଗାନ୍ଧୀଙ୍କର ଆଗମନ ଏବଂ ମାତାଙ୍କୁ ଅଭୟପ୍ରଦାନ ।

**ଜୁନ୍ ୧୩ :** ଇନ୍ଦିରା ଗାନ୍ଧୀଙ୍କ ବାସଭବନ ସମ୍ମୁଖରେ ସରକାରୀ ବସ୍ ଓ ଅନ୍ୟାନ୍ୟ ସୂତ୍ରରେ ଲୋକସମାଗମ । ଏହା ଇନ୍ଦିରାଜୀଙ୍କୁ ଜନତାର ବିପୁଳ ସମର୍ଥନ ରହିଛି, ସେହିକଥା ଜଣାଇବା ନିମନ୍ତେ କରାଯାଉଥିଲା । ପ୍ରାୟ ୧୦ ଦିନରୁ ଅଧିକ ଏହି ପାଲା ଚାଲିଲା । ତାଙ୍କ ଘର ସାମନାରେ ଏକ ସ୍ୱତନ୍ତ୍ର ମଞ୍ଚ ମଧ୍ୟ ନିର୍ମାଣ କରାଗଲା । ଏପରି ଲୋକସମାଗମ ଆୟୋଜନରେ ମୁଖ୍ୟ ଭାଗ ନେଉଥିଲେ ସଞ୍ଜୟ ଗାନ୍ଧୀ ଓ ବଂଶୀଲାଲ ।

**ଜୁନ୍ ୧୪ :** ରାଷ୍ଟ୍ରପତିଙ୍କ ଅନୁପସ୍ଥିତିରେ ବି ଇନ୍ଦିରାଙ୍କ ଇସ୍ତଫା ଦାବି କରିଚାଲିଥିବା ଧାରଣା ଜାରି । ସାରା ଦେଶରେ ଇସ୍ତଫା ଦାବି ନିମନ୍ତେ ଜୁନ୍ ୧୫ରୁ ୨୨ ପର୍ଯ୍ୟନ୍ତ ଏକ ସପ୍ତାହବ୍ୟାପୀ ଅଭିଯାନ ।

ନିଜ ଘର ସାମନା ମିଟିଂରେ ଇନ୍ଦିରା ଗାନ୍ଧୀଙ୍କର ବିରୋଧକୁ ଜବାବ ଦେଇ ଘୋଷଣା—"କେହି ଭୁଲିଯିବା ଉଚିତ ନୁହେଁ ଯେ ମୁଁ ବିରୋଧକୁ ଖୁବ୍ ଦୃଢ଼ତାର ସହି ସମ୍ମୁଖୀନ ହୋଇପାରେ ଏବଂ ଇନ୍ଦିରା ଗାନ୍ଧୀଙ୍କୁ ଯେତେ ଅଧିକ ଚାଲେଞ୍ଜ ଆସିବ ସେ ତାର ସେତିକି ବେଶି ପ୍ରତିରୋଧ କରିପାରିବ ।"

**ଜୁନ୍ ୧୫ :** କଂଗ୍ରେସର ମୁଖ୍ୟ ନେତାମାନଙ୍କ ଭିତରେ ପରାମର୍ଶ ହୋଇ ସ୍ଥିର କରାଗଲା ଯେ ଇନ୍ଦିରା ଇସ୍ତଫା ଦେବେ ନାହିଁ; ପ୍ରଧାନମନ୍ତ୍ରୀ ହୋଇ ରହିବେ । ଜଗଜ୍ଜୀବନ ରାମ ବି ଏହି ପରାମର୍ଶ ବୈଠକରେ ଉପସ୍ଥିତ ଥିଲେ ଏବଂ ଇନ୍ଦିରା ତାଙ୍କୁ ସ୍ୱତନ୍ତ୍ରଭାବରେ ଡାକି ପଚାରନ୍ତେ, ସେ ତାଙ୍କୁ ପୂରା ସମର୍ଥନ ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସ୍ୱରଣ ସିଂ ବା କମଳାପତି ତ୍ରିପାଠୀ ଅସ୍ଥାୟୀ ପ୍ରଧାନମନ୍ତ୍ରୀ ହେବାର ଜଗଜ୍ଜୀବନ ରାମ ପକ୍ଷପାତୀ ନଥିଲେ । କଂଗ୍ରେସ ସଂଗଠନକୁ ଏକଜୁଟ ଓ ଶୃଙ୍ଖଳାବଦ୍ଧ କରିବା ଏବଂ ମିଳିତ ଅଭିଯାନର ସମ୍ମୁଖୀନ ହେବା ନିମନ୍ତେ ବିହିତ ବ୍ୟବସ୍ଥା କରିବାର ସିଦ୍ଧାନ୍ତ ।

**ଜୁନ୍ ୧୬ :** ରାଷ୍ଟ୍ରପତଙ୍କର କାଶ୍ମୀରରୁ ପ୍ରତ୍ୟାବର୍ତ୍ତନ—ଧାରଣାକାରୀଙ୍କର କୌଣସି ଦାବି ଗ୍ରହଣ କରିବାରେ ଅକ୍ଷମତା ପ୍ରଦର୍ଶନ ।

**ଜୁନ ୧୮ :** କଂଗ୍ରେସ ପାର୍ଲିମେଣ୍ଟାରୀ ଦଳର ବୈଠକରେ ଇନ୍ଦିରାଙ୍କ ପ୍ରଧାନମନ୍ତ୍ରୀତ୍ୱ ବିନା ଦେଶ ଚଳିପାରିବ ନାହିଁ ଏବଂ ତାଙ୍କ ନେତୃତ୍ୱ ଅନିବାର୍ଯ୍ୟ ବୋଲି ପ୍ରସ୍ତାବ ଗୃହୀତ । ପ୍ରସ୍ତାବକ-ଜଗଜ୍ଜୀବନ ରାମ ଓ ସମର୍ଥକ ୱାଇ. ବି. ଚୌହାନ୍ । ଏହି ଦୁଇଜଣ କଂଗ୍ରେସରେ ବିଦ୍ରୋହ କରିବେ ବା ଇନ୍ଦିରା ଗାନ୍ଧୀଙ୍କ ଡିକ୍ଟେଟରଶିପ୍‌ର ବିରୋଧ କରିବେ ବୋଲି ଜୟପ୍ରକାଶ ନାରାୟଣ ବିଶ୍ୱାସ ପୋଷଣ କରିଥାଆନ୍ତି ।

ଏହି ବୈଠକରେ "ଇନ୍ଦିରା ହିଁ ଭାରତ ଏବଂ ଭାରତ ହିଁ ଇନ୍ଦିରା" ବୋଲି ସଭାପତି ବରୁଆଙ୍କର ନୂତନ ଧ୍ୱନି ।

**ଜୁନ ୨୦ :** ଦିଲ୍ଲୀର ବୋଟ କ୍ଲବ ପଡ଼ିଆରେ ଭାରତର କାଶ୍ମୀରଠାରୁ କେରଳ, ପଞ୍ଜାବରୁ ଆସାମ ପର୍ଯ୍ୟନ୍ତ ହଜାର ହଜାର ମାଇଲ ଦୂରରୁ ଲକ୍ଷ ଲକ୍ଷ ଲୋକଙ୍କର ସମାବେଶ ତାଙ୍କର ପ୍ରିୟ ନେତା ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ ଜଣାଇବା ନିମନ୍ତେ ।

ସେଦିନ ଦିଲ୍ଲୀ ରାଜଧାନୀର ସବୁ ପଥ ବୋଟ କ୍ଲବ ଅଭିମୁଖୀ ହୋଇଥିଲା ଏବଂ ପୂର୍ବ, ପଶ୍ଚିମ, ଉତ୍ତର ଓ ଦକ୍ଷିଣ ଭାରତରୁ ଟ୍ରେନ ସବୁ "ଇନ୍ଦିରା ସ୍ପେଶାଲ" ନାମିତ ହୋଇ ଲୋକ ଏକତ୍ରିତ୍ କରାଇଲେ । କେବଳ ପଞ୍ଜାବରୁ ହଜାର ହଜାର ସଂଖ୍ୟାରେ ନରନାରୀ ଏକହଜାରରୁ ଅଧିକ ସୁସଜ୍ଜିତ ବସ୍‌ରେ ଧ୍ୱନି ଦେଇ ଆସିଥିଲେ—ସମସ୍ତଙ୍କୁ ଖର୍ଚ୍ଚ ଦିଆଯାଇଥିଲା । ତାହାଛଡ଼ା ଟ୍ରାକ୍ଟର, ଘରୋଇ କାର୍, ସାଧାରଣ ବସ୍ ଏବଂ ଟ୍ରକ୍‌ରେ ଲୋକମାନେ ଆସିଥିଲେ । କଂଗ୍ରେସ ଓ ଯୁବକଂଗ୍ରେସର ଅଧିକାଂଶ ଲୋକ ଉଡ଼ାଜାହାଜରେ ହିଁ ଆସିଥିଲେ । ଏସବୁର ବ୍ୟୟ ରାଜ୍ୟ ସରକାର, କେନ୍ଦ୍ର ସରକାର ଓ କେନ୍ଦ୍ର କଂଗ୍ରେସ କମିଟି ମିଳିତଭାବରେ ବହନ କରିଥିଲେ । ଲୋକମେଳାକୁ ଜଗିବା ଓ ପରିଚାଳନା କରିବା ନିମନ୍ତେ ସୀମାନ୍ତରକ୍ଷୀ ବାହିନୀ ଏବଂ କେନ୍ଦ୍ର ରିଜର୍ଭ ପୁଲିସର ଉପଯୋଗ କରାଯାଇଥିଲା । ଦିଲ୍ଲୀର ସମସ୍ତ ସରକାରୀ କଳ ଏହି ଲୋକମେଳା ଲାଗି କାର୍ଯ୍ୟ କରୁଥିଲେ ଏବଂ ସଞ୍ଜୟ ଗାନ୍ଧୀ ଏଭଳି ଆୟୋଜନରେ ଖୁସି ହୋଇଗଲେ ।

ପ୍ରାୟ ୧୫ ଲକ୍ଷ ଲୋକଙ୍କ ମେଳାରେ ମଞ୍ଚ ଉପରେ ଇନ୍ଦିରା ଗାନ୍ଧୀ ନିଜ ପରିବାର—ଦୁଇପୁଅ ରାଜୀବ ଓ ସଞ୍ଜୟଙ୍କ ସହ—ଉପସ୍ଥିତ ହୋଇ ବିଶାଳ ଜନତା ଦେଖି ପ୍ରୀତ ହେଲେ । ସେ ପୃଥିବୀରେ ନିଜ ଉପରେ ଓ ତାଙ୍କ ପରିବାର ଉପରେ କିଭଳି ଅପବାଦ ଦିଆଯାଉଛି, ତାଙ୍କୁ ବାହାର କରିବା ନିମନ୍ତେ କିଭଳି ବିରୋଧୀଦଳଗୁଡ଼ିକ ଲାଗିପଡ଼ିଛନ୍ତି, ଭିତର ଓ ବାହାରର ଶକ୍ତି ସେମାନଙ୍କ ପଶ୍ଚାତ୍‌ରେ ରହିଛନ୍ତି, ତାହା ଘୋଷଣା କଲେ । "ମତେହିଁ ଧ୍ୱଂସ କରିବା ନିମନ୍ତେ ଏ ଷଡ଼ଯନ୍ତ୍ର । ମୋ ପରିବାରର ପଶ୍ଚାତ୍‌ରେ ଦେଶସେବାର ଯେ ଇତିହାସ ରହିଛି, ତ୍ୟାଗ ରହିଛି, ଭାରତବର୍ଷରେ ଆଉ କାହାରି ନାହିଁ । ତେଣୁ ମୁଁ ବଞ୍ଚିବି କି ମରିବି ଏହା ବଡ଼ ସମସ୍ୟା ନୁହେଁ; ବଡ଼ ପ୍ରଶ୍ନ ହେଉଛି ଜାତୀୟ ସ୍ୱାର୍ଥ କେମିତି ରକ୍ଷାହେବ ।"

ନିର୍ବାଚନ ମକଦ୍ଦମାରେ ପରାଜୟ ଲଭିବା ପରେ, ଦେଶବାସୀ ସମ୍ପୂର୍ଣ୍ଣ ଇନ୍ଦିରାବିରୋଧୀ ହୋଇଯାଇଥିବା ବେଳେ, ଏଭଳି ଏକ ଦମ୍ଭୋକ୍ତି ନିଜର ସମର୍ଥକମାନଙ୍କ ସମ୍ମୁଖରେ ରଖିବାର ଆବଶ୍ୟକତା ଥିଲା ।

ଏହା କରାଗଲା ସାରା ଦୁନିଆକୁ ଏବଂ ବିରୋଧୀଙ୍କୁ ଦେଖାଇବା ଲାଗି ଯେ କୋର୍ଟ କଚେରୀରେ ସାମାନ୍ୟ ଅପରାଧ ଯୋଗୁଁ ଯେଉଁ ଦଣ୍ଡବିଧାନ ହୋଇଛି, ତାହା ସତ୍ତ୍ୱେ ଭାରତବାସୀ ଲକ୍ଷ ସଂଖ୍ୟାରେ ସେ ପ୍ରଧାନମନ୍ତ୍ରୀ ଓ ନେତା ହୋଇ ରହିବାର ପକ୍ଷପାତୀ ଏବଂ ତାଙ୍କୁ ଛାଡ଼ିବା ଲାଗି ଚାହାଁନ୍ତି ନାହିଁ । ହିଟ୍‌ଲର ଓ ମୁସୋଲିନୀ ଯେମିତି ତଥାକଥିତ ଜନ-ସମର୍ଥନରେ ନିଜର ଏକଛତ୍ର ଅଧିକାର କାଏମ୍ କରିଥିଲେ, ଇନ୍ଦିରାଙ୍କର ଏକଛତ୍ର ନିମନ୍ତେ ପଥ ପ୍ରସ୍ତୁତିର ଏହା ଥିଲା ପ୍ରଥମ ସାଧାରଣ ପ୍ରଦର୍ଶନ ।

**ଜୁନ୍ ୨୧ :** ସରକାରୀ କଳକୁ ପାର୍ଟି ଉଦ୍ଦେଶ୍ୟରେ ଉପଯୋଗ କରାଯାଉଥିବାରୁ, ତାର ବିରୋଧ କରିଥିବା ନିମନ୍ତେ, ସଞ୍ଜୟ ଗାନ୍ଧୀଙ୍କ ନିର୍ଦ୍ଦେଶମତେ ହୋମ୍ ସେକ୍ରେଟାରୀଙ୍କୁ ହଠାତ୍ କାର୍ଯ୍ୟରୁ ଅନ୍ତର କରାଯାଇ ରାଜସ୍ଥାନର ଚିଫ୍ ସେକ୍ରେଟାରୀ ଖୁରାନାଙ୍କୁ ଅଣାଯାଇ ୨୨ ତାରିଖରେ ହୋମ୍ ସେକ୍ରେଟାରୀ ଭାବରେ ନିଯୁକ୍ତି ।

**ଜୁନ୍ ୨୨ :** ସୁପ୍ରିମ୍ କୋର୍ଟରେ ଅପିଲ୍ ଦାଖଲ ପୂର୍ବରୁ ଦିଲ୍ଲୀର ଚତୁର୍ଦ୍ଦିଗରେ ଏକ ବିରାଟ ଶୋଭାଯାତ୍ରା—"ଇନ୍ଦିରା ଲଢ଼ାଇ ହମାରା ଲଢ଼ାଇ" ଧ୍ୱନିରେ ଭରା । ଉଦ୍ଦେଶ୍ୟ, ସୁପ୍ରିମ୍ କୋର୍ଟ ବିଚାରବେଳେ ସ୍ମରଣ ରଖିବା ନିମନ୍ତେ ଯେ ଏହା ଇନ୍ଦିରା ଗାନ୍ଧୀଙ୍କର ଲଢ଼ାଇ ନୁହେଁ, ଭାରତୀୟ ଜନତାର ଲଢ଼ାଇ ଏବଂ ଭାରତୀୟ ଜନତା ତାଙ୍କ ନେତୃତ୍ୱ ଓ ପ୍ରଧାନମନ୍ତ୍ରୀତ୍ୱ ଚାହାଁନ୍ତି ।

**ଜୁନ୍ ୨୨ :** ଏହିଭଳି ବାକ୍ ଓ ଶକ୍ତିର ଯୁଦ୍ଧ ହେତୁ ଏକ ଅନିଶ୍ଚିତତାର ଭାବ ଦେଶରେ ଖେଳିଗଲା ଏବଂ ବିରୋଧୀ ଶକ୍ତିଗୁଡ଼ିକ ଭିତରେ ଅଧିକ ଐକ୍ୟ ଦେଖାଦେଲା । ବିରୋଧୀଙ୍କ ପକ୍ଷରୁ ଭାରତୀୟ ଲୋକଦଳ, ସଂଗଠନ କଂଗ୍ରେସ, ଭାରତୀୟ ଜନସଂଘ, ସୋସିଆଲିଷ୍ଟ ପାର୍ଟି ଏବଂ ଅକାଲୀ ଦଳର ୧୦ ଜଣ ପ୍ରତିନିଧିଙ୍କୁ ନେଇ ଏକ କମିଟି ଘୋଷଣା କରାଗଲା । ଏହି କମିଟି 'ଇନ୍ଦିରା-ଇସ୍ତଫା ଦାବି' ଆନ୍ଦୋଳନକୁ ପ୍ରଚାର କରିବେ; ଜନ-ପ୍ରତିବାଦ ଜଣାଇବା ନିମନ୍ତେ 'ଦିଲ୍ଲୀ ବନ୍ଦ' ପାଳନ କରାଯିବ ଏବଂ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଧାରଣା ଦିଆଯିବ ଲୋକରୁପ ପକାଇବା ନିମନ୍ତେ ।

**ଜୁନ ୨୩ :** ଇନ୍ଦିରା ଗାନ୍ଧୀଙ୍କ ତରଫରୁ ସୁପ୍ରିମ୍ କୋର୍ଟରେ ଛୁଟିକାଳୀନ ବିଚାରପତି କୃଷ୍ଣା ଆୟାର୍‌ଙ୍କ ପାଖରେ ଏଲାହାବାଦ ହାଇକୋର୍ଟ ରାୟ ବିରୁଦ୍ଧରେ ଅପିଲ ଦାଖଲ ।

**ଜୁନ୍ ୨୪ :** ଶ୍ରୀମତୀ ଗାନ୍ଧୀ ଘୋଷଣା କଲେ—"ବିରୋଧୀର ଦାବି ଉପରେ ମୋର ରହିବା ନ ରହିବାର ପ୍ରଶ୍ନ ନିର୍ଭର କରୁନାହିଁ । ମୋ ଦଳ ଏବଂ ଭାରତର ଲୋକେ କଣ ଚାହାଁନ୍ତି, ତା ଉପରେ ନିର୍ଭର କରୁଛି ।"

ଏହାର ଜବାବରେ ଜୟପ୍ରକାଶଙ୍କ ଘୋଷଣା :

"କଂଗ୍ରେସ ଏମ୍. ପି. ମାନଙ୍କର ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱ ଉପରେ ବିଶ୍ୱାସ ଅଛି କି ନା ତାହା ପ୍ରଶ୍ନ ନୁହେଁ; କିନ୍ତୁ ଆଜି ଦେଶ ସମ୍ମୁଖରେ ପ୍ରଧାନ ସମସ୍ୟା ହେଉଛି ଦେଶରେ ଆଇନର ଶାସନ ତିଷ୍ଠି ବି କି ନାହିଁ ଏବଂ ଏହା ଛୋଟ ବଡ଼ ସମସ୍ତଙ୍କ ପ୍ରତି ସମାନଭାବରେ ପ୍ରଯୁଜ୍ୟ ହେବ କି ନାହିଁ ।"

ଜୁନ୍ ୨୪ : ଜଷ୍ଟିସ୍ କୃଷ୍ଣା ଆୟାର ତୁରନ୍ତ ତା ପରଦିନ ରାୟ ଦେଲେ । ଏଥିରେ କେତେକ ସର୍ତ୍ତରେ ହିଁ ତାଙ୍କୁ ରାୟ ସ୍ଥଗିତ ରହିବାର ନିର୍ଦ୍ଦେଶନାମା ମିଳିଲା । ସେ ପ୍ରଧାନମନ୍ତ୍ରୀ ରହିପାରିବେ ଏବଂ ପ୍ରଧାନମନ୍ତ୍ରୀ ଭାବରେ ପାର୍ଲିମେଣ୍ଟରେ ଭାଷଣ ଦେଇପାରିବେ; କିନ୍ତୁ ଲୋକସଭାର ମେମ୍ବର ଭାବରେ ଲୋକସଭା କାର୍ଯ୍ୟରେ ଯୋଗଦେଇ ପାରିବେ ନାହିଁ, ଭୋଟ ଦେଇପାରିବେ ନାହିଁ; ବେତନ ବି ନେଇପାରିବେ ନାହିଁ ।

ଏହା ଏଲାହାବାଦ ହାଇକୋର୍ଟ ରାୟ ଅପେକ୍ଷା ଆହୁରି ଅଧିକ ଅପମାନଜନକ ।

ଜଷ୍ଟିସ୍ ଆୟାର ତାଙ୍କ ରାୟରେ କହିଲେ—ପୂର୍ବରୁ ଏଭଳି ସବୁ ମକଦ୍ଦମାରେ ଯେମିତି ରହିତ ଆଦେଶ ଦିଆଯାଇଅଛି, ମୁଁ ସେହି ପରମ୍ପରାକୁ ପାଳନ କରୁଛି; ମାତ୍ର ଏହି ମକଦ୍ଦମାର କେତେକ ଅପରିହାର୍ଯ୍ୟ ଆବଶ୍ୟକତା ହେତୁ ତାକୁ କିଛି ପରିମାଣରେ ସଂଶୋଧନ କରୁଛି । ସୁପ୍ରିମ୍ କୋର୍ଟ ଅପିଲର ଶେଷ ଶୁଣାଣୀ ପର୍ଯ୍ୟନ୍ତ ହାଇକୋର୍ଟର ରାୟ ବଳବତ୍ତର ହୋଇ ରହିବ । ୨।୩ ମାସ ଭିତରେ ସୁପ୍ରିମ୍ କୋର୍ଟରେ ନିଷ୍ପତ୍ତି ହୋଇଯିବ । ତେଣୁ ମନ୍ତ୍ରିମଣ୍ଡଳରେ ଯେଉଁ ଅସଲ ବ୍ୟକ୍ତିବିଶେଷ ରହିଛନ୍ତି ତାଙ୍କ ସହ ଉପସ୍ଥିତ ସଭ୍ୟମାନେ ରହିବାଦ୍ୱାରା ହିଁ ଚଳନ୍ତି ବ୍ୟବସ୍ଥାରେ କିଛି ଆଞ୍ଚ ଆସିବ ନାହିଁ । ଏହା ଥିଲା ତାଙ୍କ ମତରେ ଅପରିହାର୍ଯ୍ୟ ଆବଶ୍ୟକତା; କିନ୍ତୁ ଶେଷରେ ଯାହା ମତ ଦେଲେ ତାହା ଇନ୍ଦିରା ଗାନ୍ଧୀଙ୍କି ଚାପଡ଼ା ମାରିଲା ପରି । କୌଣସି ସମ୍ମାନଜନକ ବ୍ୟକ୍ତି ଏଭଳି ରାୟ ପରେ ଆଉ ଦିନକ ପାଇଁ ସୁଦ୍ଧା ପ୍ରଧାନମନ୍ତ୍ରୀ ଭାବରେ ରହିବା ଲାଗି ପସନ୍ଦ କରିନଥାନ୍ତା ।

"ସୁପ୍ରିମ୍ କୋର୍ଟରେ ଇନ୍ଦିରା ଗାନ୍ଧୀ ହୁଏତ ଶେଷକୁ ଜିତିପାରନ୍ତି, ମାତ୍ର ରାଜନୀତି କ୍ଷେତ୍ରରେ ଥରେ କ୍ଷମତା ଚାଲିଗଲେ ଆଉ ଆଇନସମ୍ମତ ଭାବରେ ତାକୁ ଫେରିପାଇଲେ ସୁଦ୍ଧା, ସେମିତି ଶକ୍ତି କଣ କେବେ ପୁନର୍ବାର ଫେରିଆସିବ !"

ଏଲାହାବାଦ ହାଇକୋର୍ଟ ରାୟ ବେଳେ ଇନ୍ଦିରା ଗାନ୍ଧୀ ଇସ୍ତଫା ଦେଲେନାହିଁ; ମାତ୍ର ସୁପ୍ରିମ୍ କୋର୍ଟ ରାୟ ପରେ ଇସ୍ତଫା ଦେଇଥିଲେ ନିଜର, ଦେଶର ଓ କଂଗ୍ରେସ ଦଳର ଇଜ୍ଜତ ରକ୍ଷା ହୋଇଥାଆନ୍ତା । ଦେଶର ରାଜନୀତିରେ ନୈତିକ ପ୍ରଭାବ ପୁଣି ଫେରିଆସି-ଥାଆନ୍ତା, କିନ୍ତୁ ଇନ୍ଦିରା ଗାନ୍ଧୀଙ୍କ ସମ୍ମୁଖରେ ଦେଶ ଅପେକ୍ଷା ଅଧିକ ବଡ଼ ଥିଲା ନିଜ ହାତରେ କ୍ଷମତା କାବୁଡ଼ି ରଖିବା ଏବଂ ନିଜ ପରିବାର ଯେଉଁ ଦୁର୍ନୀତି ଓ ଅପକର୍ମରେ ଜଡ଼ିତ ହୋଇ ଯାଇଛି ସେଥିରୁ ସେମାନଙ୍କୁ ରକ୍ଷାକରିବା ।

**ଜୁନ୍ ୨୪ :** ଜୟପ୍ରକାଶ ନାରାୟଣ ପାଟନା ଫେରିଯିବାର ପ୍ରୋଗ୍ରାମ୍ ବନ୍ଦ କରି ଆଉ ଏକ ଦିନ ଦିଲ୍ଲୀରେ ରହିବାଲାଗି ସ୍ଥିର କଲେ ଏବଂ ୨୫ ତାରିଖରେ ଏକ ସାଧାରଣ ସଭାରେ ଭାଷଣଦେବେ ।

**ଜୁନ୍ ୨୫ :** ଇନ୍ଦିରା ଗାନ୍ଧୀ ଇସ୍ତଫା ନ ଦେବା ହେତୁ ସବୁ ବିରୋଧୀ ଦଳଙ୍କ ଭିତରେ ଏକତା ଦୃଢ଼ୀଭୂତ ହେଲା ଏବଂ ସମସ୍ତେ ମିଶି ଏକ ଲୋକସଂଘର୍ଷ ସମିତି ସ୍ଥାପନ-କଲେ । ତାହାର ଚେୟାରମ୍ୟାନ୍ ହେଲେ ମୋରାରଜୀ ଦେଶାଇ, ସମ୍ପାଦକ ନାନାଜୀ ଦେଶମୁଖ ଏବଂ କୋଷାଧ୍ୟକ୍ଷ ରହିଲେ ଅଶୋକ ମେହେଟା ।

ରାଜନୀତି ଏକପ୍ରକାର ଦୁଇଦଳରେ ବିଭକ୍ତ ହୋଇଗଲା, ଯାହାକୁ କହନ୍ତି Polarisation । ଏହି ସଂଘର୍ଷ ସମିତି ଇନ୍ଦିରା ଗାନ୍ଧୀଙ୍କର ଇସ୍ତଫା ଦାବୀ କରି ତାଙ୍କ ଘର ସମ୍ମୁଖରେ କମ୍ବା ଘର ସମୀପରେ ଧାରଣା ଦେବାର ନିଷ୍ପତ୍ତି ନେଲା ଏବଂ ଦେଶସାରା ୨୯ ଜୁନ୍‌ଠାରୁ ୫ ଜୁଲାଇ ପର୍ଯ୍ୟନ୍ତ ଏକ ଲୋକ ଶିକ୍ଷଣ ସପ୍ତାହ ପାଳନ କରିବାର ନିଷ୍ପତ୍ତି ନେଲା । ଏଥିରେ ସଭା, ଶୋଭାଯାତ୍ରା, ବିକ୍ଷୋଭ ପ୍ରଦର୍ଶନ ଚାରିଆଡ଼େ କରାଯାଇ ଶାନ୍ତିପୂର୍ଣ୍ଣ ଭାବରେ ଗଣତନ୍ତ୍ରର ମର୍ଯ୍ୟାଦା ରକ୍ଷା ନିମନ୍ତେ ଜନମତ ସଂଗଠିତ କରାହେବ ଏବଂ ଇନ୍ଦିରା ଗାନ୍ଧୀଙ୍କର ଇସ୍ତଫା ଦାବି କରାଯିବ ।

ଏକ ଭୁଲ ପନ୍ଥା ଗ୍ରହଣ କରିଥିବାରୁ ଇନ୍ଦିରା ଗାନ୍ଧୀଙ୍କ ମନରେ ପାପ ଛୁଇଁଥିବ ଏବଂ ସେ ଯେ ନିଜ ହାତରେ କୌଣସି ପ୍ରକାର କ୍ଷମତା ରଖିବା ନିମନ୍ତେ ଅଧୀର, ଲୋକେ ଏହା ବୁଝିପାରିବେ, ଏଭଳି ଏକ ଆଶଙ୍କାରେ ଆହୁରି ଭୟ-ଶଙ୍କିତ ହୋଇପଡ଼ିଲେ ।

**ଜୁନ୍ ୨୫ :** ଜୟପ୍ରକାଶଙ୍କର ରାମଲୀଲା ମଇଦାନରେ ଐତିହାସିକ ସଭା ଓ ଘୋଷଣା । ମାତ୍ର ଚବିଶ ଘଣ୍ଟା ନୋଟିସ ପାଇ ଲକ୍ଷ ଲକ୍ଷ ନରନାରୀ ଏକତ୍ରିତ—ରାମଲୀଲା ମଇଦାନ ଇତିହାସରେ ଏଭଳି ଏକ ସାଧାରଣ ସଭା କେବେ ହୋଇନଥିଲା । ଜୟପ୍ରକାଶ ଘୋଷଣା କଲେ—ରାଜଧାନୀ ଓ ଭାରତର ଚାରିଆଡ଼େ ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଚାଲିବ । ଏଭଳି କାର୍ଯ୍ୟକ୍ରମ ଆଗରୁ ଲୋକସଂଘର୍ଷ ସମିତି ବୈଠକରେ ସ୍ଥିର ହୋଇଯାଇଥିଲା ଏବଂ ଜୟପ୍ରକାଶଙ୍କ ଉପସ୍ଥିତିରେ କେଉଁ ଦଳ କେତେ ସ୍ୱେଚ୍ଛାସେବକ ଦେଇ ପାରିବ ତାର ତାଲିକା ହୋଇଯାଇଥିଲା ।

ଜୟପ୍ରକାଶ କହିଲେ :

ଛାତ୍ର, ପାଠପଢ଼ା ଛାଡ଼ି ଜେଲ୍‌କୁ ଚାଲ ।

ପୁଲିସ୍ ଓ ମିଲିଟାରୀ—ବେଆଇନ ହୁକୁମ ଅମାନ୍ୟ କର ।

ଇନ୍ଦିରା ଗାନ୍ଧୀଙ୍କ ଅନୁଗ୍ରହ ବଳରେ ଏ. ଏନ୍. ରାୟ ସୁପ୍ରିମ୍ କୋର୍ଟର ପ୍ରଧାନ ବିଚାରପତି ହୋଇଛନ୍ତି; ତେଣୁ ଇନ୍ଦିରା ଗାନ୍ଧୀଙ୍କ ମକଦ୍ଦମାର ଅପିଲ ଶୁଣାଣିବେଳେ ଆପଣାର ବ୍ୟକ୍ତିଗତ ମର୍ଯ୍ୟାଦା ରକ୍ଷା ଦୃଷ୍ଟିରୁ ସେ ବିଚାର ବେଞ୍ଚରେ ବସନ୍ତୁ ନାହିଁ ।

ଇନ୍ଦିରା ଗାନ୍ଧୀ ଏଲାହାବାଦ ହାଇକୋର୍ଟରେ ସାକ୍ଷ୍ୟ ଦେବାବେଳେ ପ୍ରତି ପନ୍ଦର ମିନଟ୍‌ରେ ଥରେ ମିଥ୍ୟା କହୁଛନ୍ତି, ଅର୍ଥାତ୍ ସାକ୍ଷ୍ୟବେଳେ ଏମିତି ୨୨ଥର ମିଥ୍ୟା କହୁଛନ୍ତି ।

ଇନ୍ଦିରା ଗାନ୍ଧୀ ଯଦି ମନେକରୁଛନ୍ତି ଜୟପ୍ରକାଶ ଦେଶଦ୍ରୋହ କାର୍ଯ୍ୟ କରୁଛନ୍ତି ବୋଲି, ତେବେ ସେ ତାଙ୍କୁ ସେହି ଅପରାଧରେ ଦଣ୍ଡିତ କରି ବିଚାର କରିପାରନ୍ତି ।

ସେ କହିଲେ—"ଏହା ଭାରତବର୍ଷ । ଏଠାରେ କେହି ମୁଜିବ୍ ହୋଇପାରିବ ନାହିଁ । ଏ ଦେଶର ଲୋକେ ସେମିତି ଏକଚ୍ଛତ୍ରବାଦକୁ ଏଠାରେ ସହ୍ୟ କରିବେ ନାହିଁ ।"

**ଜୁନ୍ ୨୫ :** ଏଣେ ଏଭଳି ଭାବରେ ଦେଶବାସୀ ଏକ ନୈତିକ ଦାବି ଲାଗି ଶାନ୍ତିପୂର୍ଣ୍ଣ ସଙ୍ଗଠନ ଓ ସତ୍ୟାଗ୍ରହ ବ୍ୟବସ୍ଥା କରୁଥିବାବେଳେ ତେଣେ ଇନ୍ଦିରା ଗାନ୍ଧୀଙ୍କ ଶିବିରରେ ଏହାର ଭିନ୍ନ ପ୍ରତିକ୍ରିୟା ଦେଖାଦେଇଥିଲା । ସୁପ୍ରିମ କୋର୍ଟ ହାଇକୋର୍ଟଙ୍କ ରାୟକୁ ସ୍ଥଗିତ ରଖିଲେ ସତ୍ୟ; ମାତ୍ର ଜଷ୍ଟିସ୍ ଆୟାରଙ୍କ ମନ୍ତବ୍ୟ—ଜୀବନ ଆଇନଠାରୁ ଆହୁରି ବୃହତ୍ତର ଏବଂ 'ସମାଜକୁ ସାମାଜିକ ଶାନ୍ତି ହିଁ ଗଢ଼ିଥାଏ—ଆଇନ ନୁହେଁ, ଇତ୍ୟାଦି ମନ୍ତବ୍ୟ ନାନାପ୍ରକାର ପ୍ରତିକ୍ରିୟା ସୃଷ୍ଟି କରିଥାଏ । ସୁପ୍ରିମ୍ କୋର୍ଟ ରାୟ ପରେ ମନରେ ଆନନ୍ଦ ନଥିଲା—ଆକସ୍ମିକ ବିପଦରୁ ଟିକିଏ ଫୁରସତ୍ ମିଳିଲା ବୋଲି ଧାରଣା । ୧୯୭୫ ଜାନୁୟାରୀ ମାସରେ ଯେଉଁ କମ୍ୟୁନିଷ୍ଟ ଗୋଷ୍ଠୀର ସମର୍ଥକମାନେ ଏମର୍ଜେନ୍‌ସି ଘୋଷଣା କରିବାଲାଗି ପତ୍ର ଲେଖିଥିଲେ, ସେମାନେ ପୁଣି ତତ୍ପର ହୋଇଉଠିଲେ । ଦେବକାନ୍ତ ବରୁଆ ଓ ସିଦ୍ଧାର୍ଥଶଙ୍କର ରାୟ ଏଭଳି ପ୍ରତିବାଦ ଆଦୌ ସହ୍ୟ କରି ହେବ ନାହିଁ ବୋଲି ୨୪ ତାରିଖରୁ ହିଁ ଇନ୍ଦିରା ଗାନ୍ଧୀଙ୍କ ନିକଟରେ ଦାବି କରୁଥାନ୍ତି । କଣ କରାଯିବ—ଏ ପ୍ରଶ୍ନ ଇନ୍ଦିରା ଗାନ୍ଧୀ ସେମାନଙ୍କୁ ପଚାରୁଥାନ୍ତି । ୨୫ ତାରିଖ ପ୍ରାୟ ୧୧ଟା ବେଳକୁ ଗୁଡ଼ିଏ ରିପୋର୍ଟ ଧରି ସିଦ୍ଧାର୍ଥଶଙ୍କର ରାୟ ଇନ୍ଦିରା ଗାନ୍ଧୀଙ୍କ ପାଖରେ ପହଞ୍ଚି ତାଙ୍କୁ ଦେଶର ପରିସ୍ଥିତି କିପରି ଗୁରୁତର ହେଲାଣି ତାହା ଦେଖାଇଲେ ଏବଂ ପୁଣି ଦିନ ୪ଟାବେଳକୁ ବହିପତ୍ର ଘେନି ଆସି ଇନ୍ଦିରା ଗାନ୍ଧୀଙ୍କୁ ବୁଝାଇ ଦେଲେ ଯେ, ସମ୍ବିଧାନର ବ୍ୟବସ୍ଥା ରହିଛି—ଆନ୍ତର୍ଜାତିକ ପରିସ୍ଥିତି ଲାଗି ୧୯୭୧ ଠାରୁ ଏମର୍ଜେନ୍‌ସି ଜାରି ହୋଇଥିଲେ ସୁଦ୍ଧା ଦେଶର ଆଭ୍ୟନ୍ତରୀଣ ପରିସ୍ଥିତି ଲାଗି ପୁଣି ଜାରି କରାଯାଇପାରେ ଏବଂ ଏହା ସମ୍ବିଧାନସମ୍ମତ । ଉମା ବାସୁଦେବଙ୍କ ବର୍ଣ୍ଣନାନୁସାରେ, ଇନ୍ଦିରା ଗାନ୍ଧୀ ଓ ସିଦ୍ଧାର୍ଥ ରାୟ ଦୁହେଁ ପ୍ରେସିଡେଣ୍ଟ ଫକରୁଦ୍ଦିନଙ୍କ ପାଖକୁ ଗଲେ । ସେ ୧୫ ମିନଟ୍ ଭିତରେ ଏମର୍ଜେନ୍‌ସି ଜାରି କରିବା ପ୍ରସ୍ତାବରେ ସମ୍ମତ ହୋଇଗଲେ । ସେମାନେ ପ୍ରଧାନମନ୍ତ୍ରୀଙ୍କ ବାସଭବନକୁ ଫେରିଲାବେଳକୁ କେବଳ ଶ୍ରୀମତୀ ଗାନ୍ଧୀଙ୍କ ସେକ୍ରେଟାରୀ ପି. ଏନ୍. ଧର ଓ ହୋମ୍ ସେକ୍ରେଟାରୀ ଉପସ୍ଥିତ ଥାଆନ୍ତି । ଦୁଇଧାଡ଼ି ଲେଖାହୋଇ ପ୍ରେସିଡେଣ୍ଟଙ୍କ ପାଖକୁ ଦସ୍ତଖତ ପାଇଁ ଯିବାର କଥା—ସେତିକ ହୋଇ ପାରୁ ନଥାଏ; କାରଣ ପ୍ରତି ପାଞ୍ଚ ମିନଟରେ ସଞ୍ଜୟ ବାରମ୍ବାର ଆସି ଡାକ ପକାଉଥାଏ—ମମି, ଟିକିଏ ବାହାରକୁ ଆସ । ସେ ଉଠି ଚାଲିଯାଉଥାନ୍ତି । ସେତିକିବେଳେ ପ୍ରତି ରାଜ୍ୟ ରାଜଧାନୀକି ମୁଖ୍ୟମନ୍ତ୍ରୀମାନଙ୍କୁ ସଞ୍ଜୟ ଟେଲିଫୋନ୍ କରୁଥାନ୍ତି ଏବଂ ଶ୍ରୀମତୀ ଗାନ୍ଧୀ ଯାଇ ସେମାନଙ୍କ ସହିତ କଥାବାର୍ତ୍ତା କରନ୍ତି ।

ପ୍ରାୟ ସନ୍ଧ୍ୟା ସାଢ଼େ ୭ଟା ସୁଦ୍ଧା ପ୍ରତ୍ୟେକ ରାଜ୍ୟ ରାଜଧାନୀରେ ଉପରସ୍ଥ କର୍ତ୍ତାମାନେ ଗୁପ୍ତ ବୈଠକ କରି ଏମର୍ଜେନ୍‌ସି ହେଲେ କଣ କରାଯିବ ତାହା ସ୍ଥିର କରୁଥାଆନ୍ତି । କ୍ରମେ ଏହା ଜିଲ୍ଲା ମାଜିଷ୍ଟ୍ରେଟ୍ ଓ ଜିଲ୍ଲା ପୁଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ପାଖରେ ପହଞ୍ଚିଗଲା —ସେ ରାତିଟି ସାରା କଣ ଆସୁଛି ଠିକ୍ ଖବରେ ନ ଜାଣି ସୁଦ୍ଧା ସମସ୍ତେ ଉଜାଗର । ଓଡ଼ିଶାର ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ କିନ୍ତୁ ଦିଲ୍ଲୀରେ ଥାଆନ୍ତି—ସେ ଓ ସିଦ୍ଧାର୍ଥ ରାୟ ଦୁହେଁ ମିଶି ଜୁନ୍ ୨୧ ତାରିଖରେ ଥରେ ଯାଇ କିଛି ଗୁରୁତର ପଦକ୍ଷେପ ନ ନେଲେ ଅବସ୍ଥା ଆୟତ୍ତ କରାଯାଇ ପାରିବ ନାହିଁ ବୋଲି କହି ଆସିଥିଲେ । ଏହା ଜୁନ୍ ୨୦ ତାରିଖରେ ହୋଇଥିବା ବିରାଟ ଜନସମାଗମ ପରେ ।

ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ଶେଷକୁ ଏମର୍ଜେନ୍‌ସି ଘୋଷଣାପତ୍ର ପ୍ରସ୍ତୁତ ହୋଇଗଲା । ହୋମ୍ ମିନିଷ୍ଟର ବ୍ରହ୍ମାନନ୍ଦ ରେଡ୍ଡି ଦସ୍ତଖତ କରିଦେଲେ ଏବଂ ରାତି ୧୧ଟା ୨୦ ମିନିଟ୍‌ରେ ରାଷ୍ଟ୍ରପତି ମଂଜୁରି ଦସ୍ତଖତ ଦେବାରୁ ଏମର୍ଜେନ୍‌ସି ଘୋଷଣା ହୋଇଗଲା ।

ଯେଉଁମାନେ ଏକଚ୍ଛତ୍ରବାଦ ପ୍ରତିଷ୍ଠା ନିମନ୍ତେ ଉସୁକ ଥିଲେ, ସେହି ସିଦ୍ଧାର୍ଥ ରାୟ-ବରୁଆ-ରଜନୀ ପଟେଲ ଗୋଷ୍ଠୀ ଏଥିରେ ନିଜର କର୍ତ୍ତୃତ୍ୱ ଜାରିକରିପାରିଲେ ଓ ଇନ୍ଦିରା ଗାନ୍ଧୀଙ୍କ ଉପରେ ସେମାନଙ୍କର ପ୍ରଭାବ ଅକ୍ଷୁଣ୍ଣ ରହିଲା ବୋଲି ବିଚାରିଲେ । ମାତ୍ର ବାସ୍ତବିକ ସେତେବେଳେ ଇନ୍ଦିରା ଗାନ୍ଧୀଙ୍କର ପ୍ରକୃତ ପରାମର୍ଶଦାତା ଓ ପ୍ରଧାନ ସହାୟକ ରୂପେ ବାହାରିଲେ ସଞ୍ଜୟ ଗାନ୍ଧୀ । ସେହିଦିନ ସେହି ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ସଞ୍ଜୟ ଗାନ୍ଧୀ ମୁଖ୍ୟମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଉଥାଆନ୍ତି—ହାଇକୋର୍ଟ ବନ୍ଦ କର, ବିଜୁଳିଶକ୍ତି କାଟିଦିଅ ଯେମିତି କୌଣସି ସମ୍ବାଦପତ୍ର ସକାଳକୁ ପ୍ରକାଶିତ ହୋଇପାରିବନାହିଁ ଇତ୍ୟାଦି । କିନ୍ତୁ ସିଦ୍ଧାର୍ଥ ରାୟଙ୍କ କହିବାନୁସାରେ, ସେ ଯେତେବେଳେ ପ୍ରତିବାଦ କରି କହିଲେ ଯେ ଦେଶରେ ତ କିଛି କେଉଁଠି ଦଙ୍ଗା ଫିସାଦ, ହିଂସା ହୋଇନାହିଁ—ଏମିତି କରିବା ଠିକ୍ ହେବନାହିଁ, ସେତେବେଳେ ସଞ୍ଜୟ ତାଙ୍କ ଉପରେ ବିରକ୍ତ ହୋଇ ଭର୍ତ୍ସନା କରି କହିଲେ—"ଦେଶ କିଭଳି ଶାସନ କରିବାକୁ ହୁଏ ତୁମେ ଜାଣନା । ନୀରବ ହୁଅ ।" ବାସ୍ତବିକ୍ ଯେଉଁମାନେ ଅନ୍ୟ ରାଜନୀତିକ କାରଣରୁ ଏଥିରେ ଆଗ୍ରହୀ ହୋଇପଡ଼ିଥିଲେ, ତାଙ୍କର ଆଉ ସେତେ ପ୍ରଭାବ ଇନ୍ଦିରା ଗାନ୍ଧୀଙ୍କ ଉପରେ ରହିଲା ନାହିଁ । ଇନ୍ଦିରା ଗାନ୍ଧୀ ମଧ୍ୟ ଜାଣିଥିଲେ ଦେଶରେ ସେଭଳି କିଛି ହିଂସାତ୍ମକ ଅସମ୍ଭାଳ ପରିସ୍ଥିତି ଉପୁଜି ନାହିଁ; ଯେଉଁଥିରେ କିଛି ଅତି ଗୁରୁତର ଶାସ୍ତିମୂଳକ କାର୍ଯ୍ୟ କରିବାକୁ ପଡ଼ିବ । ବିରୋଧୀପକ୍ଷ ତ ମୂଳରୁ ଆନ୍ଦୋଳନ ବିଷୟରେ ଶେଷ ନିଷ୍ପତ୍ତି କରିନଥିଲେ । ଜୟପ୍ରକାଶ ପ୍ରାଥମିକ ଆଲୋଚନା ସାରି ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନରେ ରାତିରେ ଯାଇ ଶୋଇଥିଲେ, ତତ୍ପର ଦିନ ଅର୍ଥାତ୍ ୨୬ ତାରିଖ ସକାଳୁ, ପାଟନା ଯିବାଲାଗି । ୨୬ ତାରିଖ ସକାଳେ ଲୋକସଂଘର୍ଷ ସମିତି ପୁଣି ବସି କିଭଳି କି ପ୍ରକାର ବିସ୍ତୃତ କାର୍ଯ୍ୟକ୍ରମ କରାଯିବାର ଆବଶ୍ୟକତା ଅଛି, ତାହା ବିଚାର କରିବାର ଥିଲା । ଏପରି ଏକ ପରିସ୍ଥିତି ହେବ ବୋଲି ସେମାନେ ଅନୁମାନ ସୁଦ୍ଧା କରି ନ ଥିଲେ । ଯେଉଁମାନେ ଏଭଳି ଏକ

ପଦକ୍ଷେପ ନେବାଲାଗି ଇନ୍ଦିରା ଗାନ୍ଧୀଙ୍କୁ ପ୍ରବର୍ତ୍ତାଇଲେ ଏବଂ ଯେଉଁମାନେ ଏହାର ବିରୋଧ କରୁଥିଲେ ସେମାନଙ୍କ ଭିତରେ ଥିଲା ରାଜନୀତିକ ଉଦ୍ଦେଶ୍ୟ—ଯାହାକୁ ଜୟପ୍ରକାଶ ନାରାୟଣ ୧୯୭୭ ନିର୍ବାଚନ ବେଳେ ଧ୍ୱନି ଆକାରରେ ଦେଲେ ଯେ ଏକ ପକ୍ଷରେ ଏକଛତ୍ରବାଦ ଓ ଅନ୍ୟ ପକ୍ଷରେ ଗଣତନ୍ତ୍ର । କିନ୍ତୁ ଇନ୍ଦିରା ଗାନ୍ଧୀଙ୍କର ଉଦ୍ଦେଶ୍ୟ ଥିଲା ନିଜର ବ୍ୟକ୍ତିଗତ ନେତୃତ୍ୱ ରକ୍ଷା ଏବଂ ସେଥିସଙ୍ଗେ ନିଜ ପୁଅର ପାପକାର୍ଯ୍ୟକୁ ଘୋଡ଼ାଇବା ଏବଂ ତାକୁ ରକ୍ଷାକରିବା । ସଞ୍ଜୟ ମଧ୍ୟ ସେହି କାରଣରୁ ହିଁ କୌଣସି ପ୍ରକାରେ ଇସ୍ତଫା ନଦେବା ନିମନ୍ତେ ଏବଂ ଏମର୍ଜେନ୍ସି ଘୋଷଣା କରିବାର ପକ୍ଷପାତୀ ଥିଲେ । ସଞ୍ଜୟ ଗାନ୍ଧୀ ମାରୁତି କାରଖାନା ସମ୍ବନ୍ଧରେ ଯାହାସବୁ ଅନୀତି ଦୁର୍ନୀତି କରିଛନ୍ତି, ତାହା ଶ୍ରୀମତୀ ଗାନ୍ଧୀଙ୍କର ସାହାଯ୍ୟ, ସମର୍ଥନ ଓ ପୃଷ୍ଠପୋଷକତାରେ ।

ଏହା ଏବେ ହୁଏତ କେହି ପ୍ରମାଣ ଖୋଜି ବାହାରକରି କହୁଛନ୍ତି । ଉମା ବାସୁଦେବ ତାଙ୍କ ପୁସ୍ତକରେ ମଧ୍ୟ ପ୍ରମାଣ କରି ଦେଖାଇଛନ୍ତି, କିଭଳି ସଞ୍ଜୟ ତାଙ୍କର ରାଜନୀତିକ, ବ୍ୟକ୍ତିଗତ ଓ ବ୍ୟବସାୟଗତ ପ୍ରତ୍ୟେକ କାର୍ଯ୍ୟ ମାଆଙ୍କ ପରାମର୍ଶ ଅନୁସାରେ କରୁଥାନ୍ତି ।

୧୯୭୦ ଅଗଷ୍ଟ ୩୧ ତାରିଖ । ନୂତନ ମାରୁତି କାରଖାନା ଆରମ୍ଭ ହୋଇଥାଏ । ନାନା ବେଆଇନ ପନ୍ଥାରେ ସେଥିଲାଗି ହରିଆନାରେ ଜମି ନିଆଯାଇଥାଏ । ଆଇନ ଅନୁସାରେ ସବୁ ତଥ୍ୟ ପୂରଣ ନକରୁଥିଲେ ମଧ୍ୟ କାରଖାନା କରିବାର ଅନୁମତିପତ୍ର— Letter of intent—କିଭଳି ଦିଆଯାଇଛି ବୋଲି ଲୋକସଭାର ବିରୋଧୀଦଳ ସଭ୍ୟମାନେ ଗୁଡ଼ାଇଗୁଡ଼ାଇ ପ୍ରଶ୍ନ କରୁଥାଆନ୍ତି । ଦିନେଶ ସିଂ ଥାଆନ୍ତି ଶିଳ୍ପ ବିକାଶ ମନ୍ତ୍ରଣାଳୟ ମନ୍ତ୍ରୀ । ମେମ୍ବରମାନଙ୍କର ଚେଷ୍ଟା ରହିଥାଏ ଇନ୍ଦିରା ଗାନ୍ଧୀ ଏଥିରେ କୌଣସିପ୍ରକାର ସମ୍ମତି ଦେଇଛନ୍ତି କି ଏବଂ ସମ୍ପୃକ୍ତ ରହିଛନ୍ତି କି ନାହିଁ ଜାଣିବା ନିମନ୍ତେ । ମାତ୍ର ଦିନେଶ ସିଂ ଏଭଳି ଜବାବ ଦେଉଥାଆନ୍ତି ଯେ କୌଣସି ଉତ୍ତର ତାଙ୍କଠୁଁ ମିଳିବା ମୁସ୍କିଲ ହେଉଥାଏ । ଲେଖକ ସେତେବେଳେ ଲୋକସଭାର ସଦସ୍ୟ ଥାଏ । ସରକାରୀ କାଇଦା ଅନୁସାରେ ଏଭଳି ଲାଇସେନ୍ସ ଦେବାବେଳେ କ୍ୟାବିନେଟ ସବ୍‌କମିଟିର ବୈଠକ ହୋଇ ନିଷ୍ପତ୍ତି ନିଆଯାଏ ଏବଂ ସେଥିରେ ପ୍ରଧାନ ମନ୍ତ୍ରୀ ସଭାପତିତ୍ୱ କରନ୍ତି । କିନ୍ତୁ ପରମ୍ପରା ଅନୁସାରେ କୌଣସି ମନ୍ତ୍ରୀଙ୍କର ଯଦି ପରୋକ୍ଷ ବା ପ୍ରତ୍ୟକ୍ଷଭାବରେ କିଛି ସମ୍ପର୍କ ରହିଥାଏ, ସେମାନେ ସ୍ୱେଚ୍ଛାରେ ସେହି ବୈଠକରେ ଅନୁପସ୍ଥିତ ରହିଥାଆନ୍ତି । ଲେଖକ ତେଣୁ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରିଥିଲା ଯେ କ୍ୟାବିନେଟ୍ ସବ୍‌କମିଟି ଲାଇସେନ୍ସ ମଞ୍ଜୁର କରିଥିଲା କି ନାହିଁ ଏବଂ ସେଥିରେ ପ୍ରଧାନମନ୍ତ୍ରୀ ସଭାପତିତ୍ୱ କରିଥିଲେ କି ନାହିଁ ? ଦିନେଶ ସିଂ ରେକର୍ଡ଼ ଲାଗିନ୍ତେ କିପରି ? କହିଲେ—ପ୍ରଧାନମନ୍ତ୍ରୀ ସଭାପତି ଥାଇ ଏଭଳି ନିଷ୍ପତ୍ତି ନିଆଯାଇଛି ।

ଏପରି ଏକ ଗୁମର କଥା ଲେଖକ ପଦାକୁ ବାହାର କଲା ବୋଲି ସାରା ଲୋକସଭା ଅସି ସାଧୁବାଦ ଜଣାଇଲେ । ତେଣୁ ମାତା ଓ ପୁତ୍ରଙ୍କ ପକ୍ଷରେ ଏମର୍ଜେନ୍ସିର ଆବଶ୍ୟକତା ହେଲା ଅନୀତି ଓ ଦୁର୍ନୀତି ଘୋଡ଼ାଇବାଲାଗି । ଏହା ବାସ୍ତବିକ ଏମର୍ଜେନ୍ସି ନୁହେଁ—ଅନୀତି, ଦୁର୍ନୀତି ଓ ବ୍ୟକ୍ତିଗତ କର୍ତ୍ତୃତ୍ୱ ରକ୍ଷାଲାଗି ସାଂବିଧାନିକ ଏକଛତ୍ରବାଦ ।

## ଏକ ନୂତନ ଏକଚ୍ଛତ୍ରବାଦ

ଇଂରେଜୀ ପରମ୍ପରା ଅନୁସାରେ ରାତି ୧୨ଟା ପରଠାରୁ ନୂଆ ଦିବସ ଆରମ୍ଭ ହୋଇଥାଏ; ସେହି ହିସାବରେ ଦେଖିଲେ ଯଦିଓ ୨୫ ତାରିଖ ରାତି ୧୧।୨୦ ରେ ରାଷ୍ଟ୍ରପତି ଏମର୍ଜେନ୍‌ସି ଘୋଷଣାରେ ଦସ୍ତଖତ କଲେ—ଧାବନ, ଓମ୍ ମେହେଟା ଓ ସଞ୍ଜୟ ଗାନ୍ଧୀ ବସି କେଉଁମାନଙ୍କୁ ଗିରଫ କରିବାକୁ ହେବ, ତାର ତାଲିକା ରାତି ସାଢ଼େ ଦଶଟା ସୁଦ୍ଧା ପ୍ରସ୍ତୁତ କରିସାରିଥିଲେ । ଅସଲ ଏମର୍ଜେନ୍‌ସି କାର୍ଯ୍ୟ ଅର୍ଥାତ୍ ଅନ୍ଧକାର-ଯୁଗର ଆରମ୍ଭ ହେଲା ୨୬ ତାରିଖରୁ । ରାତି ୩ଟା ପରେ ହିଁ ଦିଲ୍ଲୀର ଗୃହଆଡ଼େ ଗିରଫଦାରି ଗୃହିଲା । ସମ୍ବାଦପତ୍ରମାନେ ଯେଭଳି କିଛି ପ୍ରକାଶ ନ କରିପାରିବେ, ସେଥିଲାଗି ବିଦ୍ୟୁତ୍‌ଶକ୍ତି କାଟିଦିଆଗଲା । ଗୋଟାଏ ଅଞ୍ଚଳରେ କରିଦେଲେ ସବୁ ସମ୍ବାଦପତ୍ର ଆପଣାଛାଏଁ ବନ୍ଦ ହୋଇଯିବ ବୋଲି ବିଚାରି ଏହା କରାଗଲା; କିନ୍ତୁ ଅନ୍ୟ ଏକ ସ୍ଥାନରୁ "ମଦରଲାଣ୍ଡ" ଛପା ହେଉଥିବାରୁ ତାହା ସକାଳୁ ବାହାରିଯାଇଥିଲା । ସମ୍ବାଦପତ୍ରଗୁଡ଼ିକ ଉପରେ ଯାଞ୍ଚ କଟକଣା ଜାରିହେଲା ସେଦିନ ପ୍ରାୟ ଦିନ ୧୦ଟା ବେଳକୁ—ଏହି ହୁକୁମ ସମସ୍ତଙ୍କ ପାଖରେ ପହଞ୍ଚିଲାବେଳକୁ ଆହୁରି ବିଳମ୍ବ ହେଲା । ତେଣୁ କେତେକ ସମ୍ବାଦପତ୍ର ଏମର୍ଜେନ୍‌ସି ଓ ଗିରଫ ସମ୍ବାଦ ଦେଇପାରିଥିଲେ ।

ଦିଲ୍ଲୀ ଭୁବନେଶ୍ୱରରୁ ବହୁଦୂର । ଏତେ ତ୍ୱରିତ ଗତିରେ ଘଟଣାବଳୀ ଘଟିଗଲା । ଆମମାନଙ୍କ ପାଖରେ ଖବରକାଗଜ ଓ ରେଡ଼ିଓ ଛଡ଼ା ଅନ୍ୟ କିଛି ଉପାୟ ନଥିଲା ଜାଣିବାର— ସମ୍ବାଦପତ୍ର ପୁଣି ସାଧାରଣତଃ ବିଳମ୍ବରେ ମିଳେ । ଘଡ଼ିକ ଘୋଡ଼ା ଛୁଟୁଛି । ଦ୍ରୁତ ବେଗରେ ଯେତେବେଳେ ସବୁ ଘଟିଯାଉଛି, ଯାହା ସମ୍ବାଦ ମିଳୁଥିଲା ତାକୁ ତାଟକା ବୋଲି କୁହା-ଯାଇପାରିବ ନାହିଁ । ସେଥିରେ ପୁଣି ଓଡ଼ିଶାର ମୁଖ୍ୟମନ୍ତ୍ରୀ ୨୧ ତାରିଖରୁ ଦିଲ୍ଲୀରେ ରୁହାରିଜଣାଇ ଫେରିଆସି ପୁଣି ତରବର ହୋଇ ପଚରରେ ପହଞ୍ଚିଲାବେଳକୁ ସବୁ ପ୍ରାୟ ନିଷ୍ପତ୍ତି ହୋଇଥିଲା । ଏବେ ନନ୍ଦିନୀ ଶତପଥୀଙ୍କର ଅଳି ହେଲା ଅନ୍ୟ ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ତାଙ୍କ ନାମ ବି ଯୋଡ଼ିଦିଆଯାଉ ସେ ଏମର୍ଜେନ୍‌ସିକୁ ପୂର୍ଣ୍ଣ ସମର୍ଥନ ଜଣାଉଛନ୍ତି ବୋଲି । ତେଣୁ ଓଡ଼ିଶାରେ ଗିରଫ ଆଦି ଆରମ୍ଭ ହେଲାବେଳକୁ ୨।୩ ଦିନ ବିଳମ୍ବ ହୋଇଗଲା ।

ଲେଖକ ପୂର୍ବରୁ ଅସୁସ୍ଥ ଥିଲି । ୨୬ ତାରିଖ ସକାଳ ଆଠଟାରେ ରେଡ଼ିଓ ଖୋଲିଲାବେଳକୁ ସମ୍ବାଦ ଶୁଣିବି କଅଣ, ଇନ୍ଦିରାଗାନ୍ଧୀଙ୍କର ଜରୁରୀକାଳୀନ ପରିସ୍ଥିତି ଘୋଷଣା ସଂକ୍ରାନ୍ତୀୟ ରେଡ଼ିଓ ଭାଷଣର ଶେଷ ଅଂଶ ଶୁଣିବାକୁ ପାଇଲି—ସ୍ତମ୍ଭୀଭୂତ ହୋଇଗଲି । ସେମିତି ଆମ ଦେଶର ଲକ୍ଷ ଲକ୍ଷ ଦେଶବାସୀ ଚକିତ ବିସ୍ମିତ ହେଲେ । ରେଡ଼ିଓରେ

କାହାର ଗିରଫ ସମ୍ବାଦ ନ ଥିଲା; ଖବର ମିଳିଥିଲା, କେବଳ ସେହିଦିନ ପ୍ରାୟ ୫୦୦ ମୁଖିଆ ମୁଖିଆ କର୍ମକର୍ତ୍ତା ତାଙ୍କ ନିଦ ଭାଙ୍ଗିବା ପୂର୍ବରୁ ଗିରଫ ହୋଇସାରିଥିଲେ । ସମ୍ବାଦ ଶୁଣିବାର ପ୍ରାୟ ଅଧଘଣ୍ଟାକପରେ, ପି. ଟି. ଆଇ., ଯାହା ଏବେ ସମାଗ୍ଚରରେ ପରିଣତ ହୋଇଛି, ତାର ସମ୍ବାଦଦାତା ଲେଖକଙ୍କୁ ଟେଲିଫୋନ୍ କରି ଜଣାଇଲେ—ଏମର୍ଜେନସି ଘୋଷଣା ହୋଇଯାଇଛି—ଜୟପ୍ରକାଶ ନାରାୟଣ, ମୋରାରଜୀ ଦେଶାଇ, ଚନ୍ଦ୍ରଶେଖର ଆଦି ଗିରଫ ହୋଇଯାଇଛନ୍ତି । ଲେଖକ ଆହୁରି ବିସ୍ମିତ ହେଲେ—ଜୟପ୍ରକାଶ ଓ ମୋରାରଜୀ ଭାଇ ସରକାରର ବିରୋଧୀଙ୍କ ସାଙ୍ଗରେ ଥିଲେ—ମାତ୍ର ଚନ୍ଦ୍ରଶେଖର କି ଦୋଷ କଲେ ! ସେ ତ କୌଣସି ଆଇନ ଅମାନ୍ୟ ବା କଂଗ୍ରେସ-ବିରୋଧୀ କାର୍ଯ୍ୟରେ ପ୍ରତ୍ୟକ୍ଷ ଭାବରେ ଲିପ୍ତ ହୋଇନାହାନ୍ତି ! କଂଗ୍ରେସ ଲୋକଙ୍କୁ ଗିରଫ କରିବାର ତାତ୍ପର୍ଯ୍ୟ କଣ ? ଯଦି ଦେଶରେ ହିଂସା, ଅରାଜକତା ଓ ଅସମ୍ଭାଳ ପରିସ୍ଥିତି ଯୋଗୁଁ ଏମର୍ଜେନ୍ସି ଘୋଷଣା ହେଲା; ତେବେ ସେଥିରେ ତ ଚନ୍ଦ୍ରଶେଖର ପଡ଼ୁନାହାନ୍ତି ! ଲେଖକ ପ୍ରାୟ ସକାଳ ସାଢ଼େ ୧୦ଟାରେ 'ସମାଗ୍ଚର' ଜରିଆରେ ନିମ୍ନଲିଖିତ ବିବୃତିଟି ଦେଇଥିଲେ :

"କ୍ଷମତା ହାତରେ ରଖିବାଲାଗି ଏଭଳି ଉଦ୍ୟମ । ଲୋକସଭାରେ ଭୋଟାଧିକାରରୁ ବଞ୍ଚିତ ହୋଇ ମୁଦ୍ଧା ପ୍ରଧାନମନ୍ତ୍ରୀ ପଦକୁ ଜାବୁଡ଼ି ଧରିବା, ଏମର୍ଜେନସି ଘୋଷଣା କରିବା ଓ ନାଗରିକର ସାଧାରଣ ଅଧିକାର ଖର୍ବକରିବା ଏବଂ ଜୟପ୍ରକାଶ ନାରାୟଣଙ୍କ ସମେତ, ଏପରିକି କଂଗ୍ରେସ କାର୍ଯ୍ୟକାରୀ ସମିତିର ଜଣେ ସଭ୍ୟଙ୍କୁ ଗିରଫ କରିବା ଅର୍ଥ ହେଉଛି ଦେଶରେ ଅରାଜକତାକୁ ଆହ୍ୱାନ । ବହୁ ଘାତ-ପ୍ରତିଘାତ ଭିତରେ ଭାରତୀୟ ଜନତା ଏତେ କାଳ ଧରି ଯେଉଁ ଗଣତନ୍ତ୍ରର ବିକାଶ କରିଆସିଥିଲେ, ତାହା ଏତଦ୍ଦ୍ୱାରା ଏକ ଶକ୍ତ ଆଘାତ ପାଇଲା । ଇନ୍ଦିରା ଗାନ୍ଧୀ କଣ ଭାବୁଛନ୍ତି—ଏଭଳି କାର୍ଯ୍ୟରେ ସେ ଭାରତବାସୀଙ୍କର ସମର୍ଥନ ପାଇପାରିବେ !" ସରକାରୀ ଯାଞ୍ଚ ଜାରିହୋଇଯିବାରୁ ଏହି ପ୍ରତିବାଦ 'ସମାଗ୍ଚର' ଜରିଆରେ ସର୍ବତ୍ର ପହଞ୍ଚିଯାଇଥିଲେ ମୁଦ୍ଧା କେବଳ ବାରାଣସୀର 'ଆଜ' ଦୈନିକ ସମ୍ବାଦପତ୍ର ବ୍ୟତୀତ ଅନ୍ୟ କେଉଁଠି ପ୍ରକାଶ ପାଇପାରିନଥିଲା । ସରକାରୀ କର୍ତ୍ତାମାନଙ୍କର ଓ ସମ୍ବାଦପତ୍ର ଅଫିସଗୁଡ଼ିକର ହସ୍ତଗତ ହୋଇଯାଇଥିଲା । ସ୍ଥାନୀୟ ସରକାରୀ ମହଲରେ କି ପ୍ରତିକ୍ରିୟା ହେଲା ଏବଂ ଏହା ପରେ ଲେଖକ ପଛରେ ପୁଲିସ ଜଗୁଆଳ ଖଞ୍ଜି ତାଙ୍କୁ କିପରି ହଇରାଣ କରାଗଲା, ତାହା ଦେଶର ଶହ ଶହ ରାଜନୀତିକ କର୍ମୀ, ଯୁବକ ଓ ଛାତ୍ରଙ୍କ ଉପରେ ହୋଇଥିବା ନିର୍ଯାତନା ତୁଳନାରେ ଏପରି ନଗଣ୍ୟ ଯେ, ଏଠାରେ ଉଲ୍ଲେଖ କରିବାର ଆବଶ୍ୟକତା ପଡ଼ୁନାହିଁ ।

ଏମର୍ଜେନ୍ସି ଜାରି ହୁଏ ଯୁଦ୍ଧବେଳେ—ଆମ ଦେଶରେ ଦୁଇଥର ଏମିତି ହୋଇଛି ପାକିସ୍ତାନ ସାଙ୍ଗରେ ଯୁଦ୍ଧ ଲାଗିଲାବେଳେ । ୧୯୭୧ରେ ଲାଗିଥିବା ଏମର୍ଜେନ୍ସି ଦେଶରେ ସେମିତି ଜାରିଥିଲା । ଯେଉଁ ଦେଶର ସମ୍ବିଧାନରେ କୌଣସି ରାଜ୍ୟର ଶାସନ ଅଚଳ ଅବସ୍ଥାକୁ ନଆସିଥିଲେ କିମ୍ବା ଏକଦମ୍ ଆଇନର ଶାସନ ଭାଙ୍ଗିନପଡ଼ିଲେ ରାଷ୍ଟ୍ରପତି-ଶାସନ ଜାରି

କରିବା ଲାଗି ବିଧାନ ନାହିଁ, ସେ ଦେଶର ସମ୍ବିଧାନରେ ଯେଉଁ ଅନ୍ତଃସ୍ଥିତ ଏମର୍ଜେନ୍ସି ଜାରିର ବ୍ୟବସ୍ଥା ଖଞ୍ଜାଯାଇଥିଲା, ତାହା ଏମିତ ରାଜନୀତିକ ମତଲବ ରକ୍ଷାକରିବା ଉଦ୍ଦେଶ୍ୟରେ କେବେ ନୁହେଁ । କୌଣସି ହିଂସା ଉପଦ୍ରବ ପୂର୍ବରୁ ଘଟିନଥିଲା କି ଏମର୍ଜେନ୍ସି ପରେ ଥରେହେଲେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ କହିବାନୁସାରେ ଲାଠି ବା ଗୁଳି କରିବାର ପ୍ରୟୋଜନ ହୋଇନାହିଁ । ଏହି ନଜିର ଦେଖାଇ ସେ ବୈଦେଶିକ ସମ୍ବାଦପତ୍ର ଓ ପାର୍ଲିମେଣ୍ଟର ସଦସ୍ୟମାନଙ୍କୁ ଗର୍ବସହକାରେ କହୁଥିଲେ ଯେ, ଯାଆନ୍ତୁ—ବୁଲି ଦେଖନ୍ତୁ, ଲୋକେ ସ୍ୱଚ୍ଛନ୍ଦରେ ବିଚରଣ କରୁଛନ୍ତି । କେଉଁଠି ରାସ୍ତାରେ ପୁଲିସ ବା ମିଲିଟାରି ମୁତୟନ କରାଯାଇନାହିଁ । ବିଦେଶୀ ଲୋକ ଏମର୍ଜେନ୍ସି ବୋଇଲେ ଯାହା ବୁଝାଏ କମ୍ବା ଯେମିତି ଫିଲିପାଇନ୍ ଦେଶରେ ସାମରିକ ଶାସନ ଚାଲିଛି, ତାର କୌଣସି ନାମଗନ୍ଧ ନଦେଖି ବିସ୍ମିତ ହୋଇ ଫେରନ୍ତି । ବୁଝନ୍ତି, ଇନ୍ଦିରା ଗାନ୍ଧୀଙ୍କର ଅଲୌକିକ ପ୍ରଭାବ ରହିଛି; ଯେଉଁମାନେ ତାଙ୍କୁ ବିରୋଧ କରୁଥିଲେ, ସେମାନଙ୍କ ପଛରେ ଲୋକସମର୍ଥନ ନାହିଁ । ଲେଖକ ସହ, ୧୯୭୫ ନଭେମ୍ବର ୧୬ ତାରିଖରେ ଲଣ୍ଡନର Sunday Timesର ବିଶେଷ ପ୍ରତିନିଧି ସାକ୍ଷାତ୍ କରି ଅନୁରୂପ ପ୍ରଶ୍ନ ପଚାରିଥିଲେ । ଲେଖକ ତାଙ୍କୁ କହିଥିଲି— ହିଂସାକାଣ୍ଡ ହୋଇଯିବ ବୋଲି ସରକାରୀ ପକ୍ଷ ଭୟଙ୍କର ଏମର୍ଜେନ୍ସି ଜାରିକଲେ । ପ୍ରଧାନମନ୍ତ୍ରୀଙ୍କ ଘର ଘେରାଉ ହୋଇଥିଲେ, ଏଭଳି ଏକ ଅସମ୍ଭାଳ ଅବସ୍ଥା ହୋଇଥାଆନ୍ତା ବୋଲି ସରକାରୀ ପକ୍ଷର ଯୁକ୍ତି ।

ବାସ୍ତବିକ ଏମର୍ଜେନ୍ସି ଘୋଷଣାକରି ଦେଶରେ ଗଣତନ୍ତ୍ରକୁ ହତ୍ୟା କରାଗଲା ସିନା, କୌଣସି ସ୍ଥାନରେ ସୈନ୍ୟଚାଳନାର ସମ୍ବାଦ ମିଳିନାହିଁ । କେବଳ ୧୦ ଜୁଲାଇରେ ଇଂଲଣ୍ଡର 'ଗାର୍ଡ଼ିଆନ' ସମ୍ବାଦପତ୍ର ଏକ ବିଶ୍ୱସ୍ତ ସୂତ୍ରରୁ ଅବଗତ ହୋଇଥିଲା ଯେ, ଜୁନ୍ ୩୦ ତାରିଖରେ ସଶସ୍ତ୍ର ସେନାବାହିନୀ ବିଭିନ୍ନ ସ୍ଥାନକୁ ପ୍ରେରଣ କରାଯାଇଥିଲେ । ବୋଧହୁଏ ସୀମାନ୍ତରକ୍ଷୀ ବାହିନୀ ଏବଂ ସେଣ୍ଟ୍ରାଲ ରିଜର୍ଭ ଫୋର୍ସ ଯେଭଳି ଆଗରୁ ଯା'ଆସ କରୁଥିଲେ, ସେଇଆକୁ ଭିତ୍ତିକରି ଏଭଳି ସମ୍ବାଦ ପ୍ରକାଶପାଇଥିଲା ।

ସୁପ୍ରିମ କୋର୍ଟର ଅସ୍ଥାୟୀ ରହିତ ଆଦେଶ ପରେ ଇନ୍ଦିରା ଗାନ୍ଧୀ ବିଚାରିଲେ ଯେ, ସେ ପୂର୍ବଭଳି ଗଣତାନ୍ତ୍ରିକ ରୀତିରେ କାର୍ଯ୍ୟଭାର ସମ୍ଭାଳିବା ଲାଗି ଚେଷ୍ଟା କରିବେ, ନଚେତ୍ ଦେଶର ପ୍ରବଳ ଜନମତ ଚାପରେ ତାଙ୍କ ପକ୍ଷରେ ତିଷ୍ଠି ରହିବା ସମ୍ଭବ ହେବ ନାହିଁ; ଏବଂ ଦ୍ୱିତୀୟରେ କଂଗ୍ରେସ ଦଳରେ ପ୍ରଧାନମନ୍ତ୍ରୀ ହେବାକୁ ଆଶାୟୀଥିବା ବ୍ୟକ୍ତିମାନେ ଏଭଳି ଏକ ସୁଯୋଗ ମୁହୂର୍ତ୍ତରେ ନୀରବ ହୋଇ ରହିବେ ନାହିଁ । ତେଣୁ ଆଇନକାନୁନକୁ ବେଖାତିର କରି, ଏପରକି ମନ୍ତ୍ରୀମଣ୍ଡଳର ସମ୍ମତି ନ ନେଇ, ରାଷ୍ଟ୍ରପତିଙ୍କଠାରୁ ଏମର୍ଜେନ୍ସି ଘୋଷଣା କରାଇଆଣିଲେ । ତପୂର ଦିନ ସକାଳୁ ମନ୍ତ୍ରୀମଣ୍ଡଳ ବୈଠକ ଡକାଇ ସେମାନଙ୍କୁ ସମ୍ବାଦ ଦେଲେ—କନ୍ଦରୁ ଉଠିଲା ଭଳି ଜଗଜ୍ଜୀବନ ରାମ ଓ ଚହ୍ୱାନ୍ ପ୍ରଭୃତି ଆସି ପହଞ୍ଚିଲେ । ସେତେବେଳକୁ ଭିତିର ଏଭଳି ସଞ୍ଚାର ହୋଇସାରିଥିଲା ଯେ, ସେମାନେ କେହି

ଏହା ବିରୋଧରେ କିଛି କହିବାକୁ ସାହସ କଲେନାହିଁ । ଅନ୍ୟମାନେ ଗିରଫ ହୋଇସାରିଥିଲେ; ତାଙ୍କର ବି ସେହି ଦଶା ଯେ ନ ହେବ କିଏ କହିବ ? ଏ କଥା ମଧ୍ୟ ପ୍ରବଳ ଜନରବ ହେଲା— ଜେନେରାଲ ମାନକଶା, ଜଗଜ୍ଜୀବନ ରାମ ଓ ଚବ୍ୱାନଙ୍କୁ ତାଙ୍କ ଘରେ ଗିରଫ ହେବା ଭଳି ଅବସ୍ଥାରେ ରଖାଯାଇଛି । ଯେଉଁମାନେ ସେତେବେଳେ ସେମାନଙ୍କ ବାସଭବନକୁ ଯାଇଛନ୍ତି, ତାଙ୍କଠାରୁ ପ୍ରକାଶ, ଏଭଳି ଭାବରେ ଗୁଇନ୍ଦା ଓ ଅନ୍ୟ ପୁଲିସ କର୍ମଚାରୀ ଏବଂ ମିଲିଟାରୀ ଗାର୍ଡ ସେମାନଙ୍କୁ ଜଗିରହିଥିଲେ ଯେ ସେମାନେ ବାହାର ଲୋକ ସହିତ କଥାବାର୍ତ୍ତା କରିବାକୁ ଭୟ କରୁଥିଲେ । ଏମର୍ଜେନ୍‌ସି ମୁଖ୍ୟତଃ ଜାରି ହେଲା ବାହାରେ ଓ ଭିତରେ ହେଉଥିବା ବିରୋଧର ଆବାଜକୁ ବନ୍ଦ କରିବା ନିମନ୍ତେ । ବିରୋଧ କରୁଥିବା ବ୍ୟକ୍ତିମାନେ ପୁଣି ଗୁପ୍ତ ସଂଗଠନ ଗଢ଼ି କାର୍ଯ୍ୟ କରିବା ଲାଗି କିଛି ସମୟ ଲାଗିଲା । ପ୍ରାଥମିକ ଅବସ୍ଥାରେ ସାଧାରଣ ଶାନ୍ତି ଲକ୍ଷ୍ୟ କରାଗଲା ଏବଂ କଂଗ୍ରେସ ଦଳର ଲୋକମାନେ ଚନ୍ଦ୍ରଶେଖରଙ୍କ ଗିରଫ ପରେ ଭୀତତ୍ରସ୍ତ ହୋଇ ଶରଣ ପଶିଗଲେ । ଶାସକଦଳ ଓ ପାର୍ଲିମେଣ୍ଟ ପୂରାପୂରି ଆୟତ୍ତକୁ ଆସିଗଲା । ପାର୍ଲିମେଣ୍ଟର ୩୪ ଜଣ ସଭ୍ୟଙ୍କୁ ଜେଲରେ ଭର୍ତ୍ତି କରିଦିଆଗଲା । ତେଣିକି ବାଧ୍ୟବାଧକ ଭାବରେ ସମସ୍ତ କ୍ଷମତା ହାତକୁ ନେଇ ସଂବିଧାନ ସଂଶୋଧନ ଓ ଅନ୍ୟାନ୍ୟ ଆଇନ୍ ପାଶ୍ କରି ପ୍ରଧାନମନ୍ତ୍ରୀଙ୍କୁ ଅଖଣ୍ଡ କ୍ଷମତାର ଅଧିକାରିଣୀ କରାଗଲା ।

ଏମର୍ଜେନ୍‌ସି ଜାରିହେବାର ଦ୍ୱିତୀୟ ଦିବସରେ, ଅର୍ଥାତ୍ ଜୁନ୍ ୨୭ ରେ, ଏକ ସରକାରୀ ହୁକୁମନାମା ସଂବିଧାନର ଦଫା ୩୫୯ (୧) ରେ ଜାରିକରି ୧୪, ୨୧ ଓ ୨୨ ଦଫା ଅନୁସାରେ ଯେଉଁ ବ୍ୟକ୍ତିଗତ ଅଧିକାରର ସ୍ୱାଧୀନତା ଥିଲା ତାହା କାଢ଼ିନିଆଗଲା । ବିଭିନ୍ନ ବ୍ୟକ୍ତିଙ୍କୁ ଗିରଫ କରିବା ବ୍ୟତୀତ ପରେ ୨୭ଟି ସଂଗଠନକୁ ବେଆଇନ୍ ଘୋଷଣା କରାଯାଇଥିଲା ।

ରାଜନୀତିକ ପରିସ୍ଥିତି ଏମର୍ଜେନ୍‌ସି ଘୋଷଣା ଯୋଗୁଁ ଉପରକୁ ଶାନ୍ତ ବୋଲି ଜଣାପଡ଼ିଲେ ସୁଦ୍ଧା ଆର୍ଥିକ ପରିସ୍ଥିତିରେ କୌଣସି ପରିବର୍ତ୍ତନ ଘଟିନଥାଏ । ୧୯୩୦-୩୪ରେ ଯେମିତି ଅର୍ଥନୀତିକ ଦୁର୍ଦ୍ଦଶା ପୃଥିବୀକୁ ଘୋଟିଥିଲା, ଭାରତରେ ଢ଼େର ଅଧିକ ସେହିଭଳି କିମ୍ବା ତା'ଠାରୁ ଅତି ମନ୍ଦ ଅବସ୍ଥା ହୋଇଯାଇଥିଲା । ବେକାରି ବୃଦ୍ଧି ପାଇଥିଲା, ବହୁ କଳକାରଖାନା ବନ୍ଦହୋଇଗଲା; କୃଷିର ଉତ୍ପନ୍ନ ପଦାର୍ଥର ମୂଲ୍ୟ ହ୍ରାସ ହୋଇଗଲା, ଇସ୍ପାତ୍ ପ୍ରଭୃତି କେତେକ ଶିଳ୍ପରେ ଉତ୍ପାଦନ ବୃଦ୍ଧି ପାଇ ତାହା ଜମା ହୋଇ ପଡ଼ିରହିଲା— କେହି ମାଲ ଉଠାଉ ନଥାନ୍ତି, ତେଣୁ ମୁଦ୍ରାସ୍ଫୀତି ଅତିମାତ୍ରାରେ ଘଟିଲା । ଲୋକମନର ଏ ଅସନ୍ତୋଷ ଦୂର କରିବା ନିମନ୍ତେ କୋଡ଼ିଏ ଦଫା ଅର୍ଥନୀତିକ କାର୍ଯ୍ୟକ୍ରମର ଘୋଷଣା କରାଗଲା । ଏଥିରେ କିଛି ନୂତନ କଥା ନଥିଲା । ବହୁପୂର୍ବରୁ ପଞ୍ଚବାର୍ଷିକ ଯୋଜନା ଏବଂ ପୂର୍ବଘୋଷିତ ୧୦ ଦଫା, ୧୩ ଦଫା ଏବଂ ନାଗପୁର କାର୍ଯ୍ୟକ୍ରମ ଏହାର ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ଲୋକମନକୁ, ବିଶେଷତଃ ଗ୍ରାମାଞ୍ଚଳର ଦରିଦ୍ରଶ୍ରେଣୀ ଓ ସହରର ଯୁବଗୋଷ୍ଠୀ ମନର କ୍ରୋଧ ସମ୍ଭାଳିବା ଲାଗି, ତୁରନ୍ତ ମନକୁ ଖୁସି କଲାଭଳି କେତେକ କାର୍ଯ୍ୟକ୍ରମ ଘୋଷଣା

କରାଗଲା ଏବଂ ସାରା ସରକାରୀ ଯନ୍ତ୍ର ସତେ କି ସେହି କାର୍ଯ୍ୟଲାଗି ତତ୍ପର ରହିଲା—ଏଭଳି ଏକ ବାୟୁମଣ୍ଡଳ ସୃଷ୍ଟି କରାଗଲା । ସେଥିରେ ଯେଉଁସବୁ କାର୍ଯ୍ୟକ୍ରମ ରହିଥିଲା, ସେଥିରେ ବିରୋଧ କରିବାର କିଛି ନାହିଁ; ବରଂ ନିଷ୍ଠାପୂର୍ବକ କାର୍ଯ୍ୟକାରୀ ହୋଇଥିଲେ ଦେଶର ଦୁର୍ବଳ ଶ୍ରେଣୀ ଯେ ଉପକୃତ ହୋଇ ନ ଥାନ୍ତେ ଏପରି ନୁହେଁ । ଲୋକସଭାରେ ଏମର୍ଜେନ୍‌ସି ଘୋଷଣାର ବିରୋଧ କରି ମୋହନ ଧାରିଆ ଭାଷଣ ଦେବା ପ୍ରସଙ୍ଗରେ ଏହି ଅର୍ଥନୀତିକ କାର୍ଯ୍ୟକ୍ରମକୁ ଉଲ୍ଲେଖ କରି କହିଥିଲେ—"ମୁଁ ଅର୍ଥନୀତିକ କାର୍ଯ୍ୟକ୍ରମର ପକ୍ଷପାତୀ, ତେଣୁ ଏହି କାର୍ଯ୍ୟକ୍ରମକୁ ସ୍ୱାଗତ କରୁଛି । ମୋର ସରକାର ସହ ଯେତେ ମତଭେଦ ଥାଉ ପଛକେ, ମୁଁ ପରିଷ୍କାର କହିଦେବାକୁ ଚାହେଁ ଯେ, ଏହି କାର୍ଯ୍ୟକ୍ରମର ସଫଳତା ନିମନ୍ତେ ମୁଁ ସବୁମନ୍ତେ ଯତ୍ନ କରିବି ଏବଂ ଏଥିଲାଗି ସବୁପ୍ରକାର ସହଯୋଗ ଦିଆଯିବ । ମୁଁ ଏହାକୁ ଏକ ରଚନାତ୍ମକ ଦୃଷ୍ଟିକୋଣରୁ ଦେଖୁଛି । କିନ୍ତୁ ୨୦ ଦଫା କାର୍ଯ୍ୟକ୍ରମରେ ମୌଳିକ ବିଷୟଗୁଡ଼ିକୁ ସ୍ପର୍ଶ କରାଯାଇନାହିଁ । ଏମର୍ଜେନ୍‌ସି ଘୋଷଣା ନକରାଯାଇ ମଧ୍ୟ ଏଗୁଡ଼ିକ କାର୍ଯ୍ୟକାରୀ କରାଯାଇ ପାରନ୍ତା । ଏଇଥି ପାଇଁ ଏମର୍ଜେନ୍‌ସି ଘୋଷଣା କରାଯାଇଛି ବୋଲି କହିବା ତାହା ମିଛ କଥା; ଏହା ବ୍ୟତୀତ ଆଉ କୌଣସି ଶବ୍ଦ ମୋ ତୁଣ୍ଡକୁ ପଶୁନାହିଁ ।"

ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ପରବର୍ତ୍ତୀ କାଳରେ ଏନ୍. ଜି. ଗୋରେ ସମସ୍ତ ବିରୋଧୀ ଦଳ ତରଫରୁ ଇନ୍ଦିରା ଗାନ୍ଧୀଙ୍କ ସହ ଯେଉଁ ପତ୍ରାଳାପ କରିଥିଲେ, ସେଥିରେ ଏହି କୋଡ଼ିଏ ଦଫା କାର୍ଯ୍ୟକ୍ରମକୁ ଭିତ୍ତିକରି ମିଳାମିଶା କରାଯାଇପାରେ ବୋଲି ଉଲ୍ଲେଖ ରହିଥିଲା । ମାତ୍ର ଇନ୍ଦିରା ଗାନ୍ଧୀ ଏଥିରେ କର୍ଣ୍ଣପାତ କଲେନାହିଁ । ଏହି ଅର୍ଥନୀତିକ କାର୍ଯ୍ୟ-କ୍ରମକୁ ରୂପାୟିତ କରିବା ନିମନ୍ତେ କିଞ୍ଚିତ୍ ପରିମାଣରେ କେନ୍ଦ୍ରରୁ ଉଦ୍ୟମ ହୋଇଥିଲା । ରାଜ୍ୟମାନଙ୍କରେ ନ୍ୟସ୍ତସ୍ୱାର୍ଥ ଶକ୍ତିଙ୍କର ଏଭଳି ପ୍ରଭାବ ରହିଥିଲା ଯେ ଏହା ବେଶି ଦୂର ଆଗେଇପାରିଲା ନାହିଁ ଏବଂ କେନ୍ଦ୍ର ସରକାର ତାଙ୍କ ଉପରେ ରାଜନୀତିକ ଦୃଷ୍ଟିକୋଣରୁ ଚାପ ଦେଲେନାହିଁ । ଲେଖକ ନିଜେ ଏକବର୍ଷ କାଳ ଭୂବଣ୍ଟନ କାର୍ଯ୍ୟ ସାରା ଭାରତରେ ବୁଲି ଲକ୍ଷ୍ୟ କରୁଥିଲି । ଅନେକ କ୍ଷେତ୍ରରେ ଭୂମିମାଲିକଙ୍କ ସପକ୍ଷରେ ନିର୍ଦ୍ଦିଷ୍ଟ ଭାବରେ କାର୍ଯ୍ୟ ହେଉଥିଲା ଏବଂ ସେମାନଙ୍କ ସ୍ୱାର୍ଥ ରକ୍ଷା ଲାଗି ପ୍ରଚଳିତ ପଦ୍ଧତିକୁ ମଧ୍ୟ କୋହଳ କରାଯାଉଥିଲା । ପ୍ରଧାନମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କଲେ ମଧ୍ୟ ସେ ଶୁଣୁନଥିଲେ । ବିଶେଷଭାବରେ ଉତ୍ତର ପ୍ରଦେଶର ତରାଇ ଅଞ୍ଚଳରେ ଜମିମାଲିକଙ୍କୁ ବେଶି ସୁବିଧା ଦେବା ସହିତ ଇନ୍ଦିରା ଗାନ୍ଧୀ ସ୍ୱୟଂ ନାନାଭାବରେ ଜଡ଼ିତ ଥିଲେ । ସେ ଯାହାହେଉ, ୨୦+୫ ଦଫା କାର୍ଯ୍ୟକ୍ରମ ଲୋକଙ୍କ ଉପରେ ସେଭଳି ପ୍ରଭାବ ପକାଇଲା ନାହିଁ ।

ଜୁନ୍ ୨୬ ତାରିଖ ଦିନ ହିଁ ସମ୍ବାଦ ପ୍ରକାଶ ଉପରେ କଟକଣା ଜାରିହୋଇଗଲା । କୌଣସି ସମ୍ବାଦପତ୍ର ଯାଞ୍ଚ ଅଫିସରଙ୍କଠାରୁ ମଞ୍ଜୁର ନନେବାପର୍ଯ୍ୟନ୍ତ କିଛି ପ୍ରକାଶ କରିପାରିଲେ ନାହିଁ । ଗିରଫ ସମ୍ବାଦ, ସେମାନଙ୍କ ଅଟକ ସ୍ଥାନ କିମ୍ବା ଆନ୍ଦୋଳନ ସଙ୍କାନ୍ତୀୟ କୌଣସି ସମ୍ବାଦ ପ୍ରକାଶ ନିଷେଧ କରିଦିଆଗଲା । ବିଦେଶୀ ସମ୍ବାଦ ପ୍ରେରଣ

ଉପରେ କଟକଣା ଜାରିହେଲା ଏବଂ କେତେକ ଖ୍ୟାତନାମା ବିଦେଶୀ ସାମ୍ବାଦିକଙ୍କୁ ଦେଶରୁ ବହିଷ୍କାର କରାଗଲା । ୧୯୪୨ ମସିହା ଆନ୍ଦୋଳନ କିମ୍ବା ବ୍ରିଟିଶ ଅମଳରେ ଯୁଦ୍ଧବେଳର କଟକଣାଠାରୁ ଏହା ବଳିପଡ଼ିଲା । ସେତେବେଳେ ଅନ୍ତତଃ ଗିରଫ ସମ୍ବାଦ ଲୋକେ ପାଇ-ପାରୁଥିଲେ ।

କେନ୍ଦ୍ର ସରକାର ସମ୍ବିଧାନର କୌଣସି କୌଣସି ବାଧାକୁ ପରୁଆ ନ କରି, ରାଜ୍ୟ ହାତରୁ କ୍ଷମତା ନେବା କିମ୍ବା କୌଣସି ଆଇନ ପ୍ରଣୟନ କରିବାର ପୂର୍ଣ୍ଣ ଅଧିକାର ହାତକୁ ନେଇଗଲା ।

ଜୁନ୍ ୩୦ ତାରିଖରେ 'ମିସା' ଆଇନର ସଂଶୋଧନ କରାଯାଇ ସେଥିରେ ପ୍ରଥମେ ଏକବର୍ଷ ଲାଗି ଅଟକ ରଖିବାର କ୍ଷମତା ଦିଆଗଲା ଏବଂ ପରେ ଅକ୍ଟୋବର ମାସରେ ପୁଣି ଏକ ଅର୍ଡିନାନ୍ସ ଦ୍ୱାରା ଅଟକ ରଖିବାର କାରଣ ମଧ୍ୟ ବନ୍ଦୀଙ୍କି ଜଣାଇ ନ ଦେବା ନିମନ୍ତେ ସ୍ଥିରହେଲା । ଆଗ ମିସା ଆଇନରେ ଥିଲା ଯେ ପାଞ୍ଚଦିନ ଭିତରେ ତାଙ୍କୁ ବନ୍ଦୀ ହେବାର କାରଣ ଲିଖିତ ଭାବରେ ଜଣାଇଦିଆଯିବ । ସେମିତି ପୂର୍ବରୁ ଥିବା ଡିଫେନ୍ସ ଅଫ୍ ଇଣ୍ଡିଆ ଆକ୍ଟର ମଧ୍ୟ ସଂଶୋଧନ କରାଗଲା ।

ଭାରତବର୍ଷର ବିଚାରବିଭାଗ, ବିଶେଷତଃ କେତେକ ହାଇକୋର୍ଟ, ଏଥିରେ ଖୁବ୍ ଉଚ୍ଚକୋଟୀର ସ୍ୱାଧୀନତା ଭାବ ଦେଖାଇଥିଲେ । ଦିଲ୍ଲୀ ହାଇକୋର୍ଟ ଏକ ରାୟରେ ଲେଖିଲେ : ସମ୍ବାଦପତ୍ର ଲାଗି ମୁଖ୍ୟ ଯାଞ୍ଚ ଅଫିସର୍ ଯେଉଁ ନିର୍ଦ୍ଦେଶନାମା ଜାରି କରିଛନ୍ତି, ତାହା ଅପେକ୍ଷା ଗଣତାନ୍ତ୍ରିକ ଅଧିକାର ଖର୍ବ କରିବାଲାଗି ଆଉ ଅଧିକ କଣ ହୋଇପାରେ ! ଷ୍ଟେଟସ୍‌ମାନ ଓ ଇଣ୍ଡିଆନ୍ ଏକ୍ସପ୍ରେସ୍ କାଗଜର ଛାପାଖାନାଗୁଡ଼ିକୁ ଜବତ କରିବା ନିମନ୍ତେ ଯେଉଁ ଚେଷ୍ଟା ହୋଇଥିଲା, ହାଇକୋର୍ଟଙ୍କ ରାୟ ଯୋଗୁ ହିଁ ତାହା ଅଟକିରହିଲା ।

ଦେଶର ବିଭିନ୍ନ ସ୍ଥାନରେ ଯେ ସରକାରୀ ଦମନ, ଗିରଫ ଓ ଅନ୍ୟାନ୍ୟ ଅନ୍ୟାୟମୂଳକ କାର୍ଯ୍ୟ ଆରମ୍ଭ ହୋଇଗଲା; ତାହାର ବିବରଣ ବାହାରକୁ ଜଣାପଡ଼ିଲାନାହିଁ । ପାର୍ଲିମେଣ୍ଟରେ ବିବରଣ ପ୍ରକାଶରେ ମଧ୍ୟ କଟକଣା ପ୍ରୟୋଗ କରାଗଲା ଏବଂ ୩୪ ଜଣ ପାର୍ଲିମେଣ୍ଟ ସଭ୍ୟଙ୍କୁ ଅଟକ ରଖାଗଲା ।

ଏସବୁ କରିସାରିବା ପରେ ଜୁଲାଇ ୯ ତାରିଖରେ ପାର୍ଲିମେଣ୍ଟ ଅଧିବେଶନ ନିମନ୍ତେ ମେମ୍ବରମାନଙ୍କୁ ସମନ ଗଲା, ଜୁଲାଇ ୨୧ ତାରିଖରେ ଅଧିବେଶନ ବସିବା ନିମନ୍ତେ । ଏହା ପୂର୍ବରୁ ଜୁନ ୨୧ ତାରିଖରେ ୮ ଜଣ ଲୋକସଭା ସଦସ୍ୟ ଲୋକସଭା ଅଧ୍ୟକ୍ଷଙ୍କୁ ପତ୍ର ଲେଖି ଇନ୍ଦିରା ଗାନ୍ଧୀଙ୍କ ନିର୍ବାଚନ ଅସିଦ୍ଧ ଘୋଷଣା ପରେ ଯେଉଁଭଳି ନୂତନ ବୈଧାନିକ ପରିସ୍ଥିତି ସୃଷ୍ଟି ହୋଇଛି ତା'ର ବିଚାରଲାଗି ଅତି ଶୀଘ୍ର ଅଧିବେଶନ ଡାକିବା ନିମନ୍ତେ ଅନୁରୋଧ କରିଥିଲେ; ମାତ୍ର ଅଧିବେଶନ ଡକରା ହେଲାବେଳକୁ ସେମାନଙ୍କ ଭିତରୁ ୭ ଜଣଙ୍କୁ ଜେଲ୍‌ରେ ଭର୍ତ୍ତିକରିଦିଆଗଲା । ପାର୍ଲିମେଣ୍ଟରେ ବିବୃତ ଦେଇ ବିରୋଧୀଦଳ ସଭ୍ୟମାନେ ଜୁଲାଇ ୨୩

ତାରିଖରୁ ପାର୍ଲିମେଣ୍ଟ ବର୍ଜ୍ଜନ କଲେ । ଏନ୍. ଜି. ଗୋରେ ସଦନ ବର୍ଜନ କରି ଆସିବାବେଳେ କହିଥିଲେ :

"ତୁମେ ଯାହା ସବୁ କରୁଛ, ତାର କୌଣସି ଯଥାର୍ଥତା ଲୋକଙ୍କ ଆଗରେ ଦେଖାଇ-ପାରିବ ନାହିଁ । ତେଣୁ ଆଉ କିଛି ନ ପାଇ ସମସ୍ତଙ୍କୁ ଜେଲରେ ପୂରାଉଛ । ଆମେ ଏଠି ଯାହା କହୁଛୁ, ତାହା ବାହାରେ ପ୍ରକାଶ ପାଇପାରୁନାହିଁ । ଆମେ ନିମନ୍ତ୍ରଣ ପାଇ ପାର୍ଲିମେଣ୍ଟକୁ ଆସିବା ବେଳକୁ ଗିରଫ କରାଯାଉଛୁ । ଭାବ ନାହିଁ ଯେ, ଇନ୍ଦିରା ଗାନ୍ଧୀ ଓ କଂଗ୍ରେସ ଦଳ ଏମିତିଭାବରେ ଏ ଦେଶକୁ ସମ୍ଭାଳିପାରିବେ । ଏହା ଏକ ବିଶାଳ ଦେଶ, ବହୁଲୋକ ବାସ କରୁଛନ୍ତି; ବିଭିନ୍ନ ମତ ଓ ଧର୍ମ ରହିଛି—ଏହା କିଛି ସାମାନ୍ୟ ନୁହେଁ ।

ମୁଁ ତୁମକୁ ସତର୍କବାଣୀ ଶୁଣାଇ ଦେଉଛି—ତୁମେ ଖାଲି ବିରୋଧିରେ କ୍ଷତି କରୁନାହଁ, ତୁମେ ଏତଦ୍ଦ୍ୱାରା ଗଣତନ୍ତ୍ରର କ୍ଷତି କରୁଛ, ନିଜର କ୍ଷତି କରୁଛ ଏବଂ ଦେଶର ସର୍ବନାଶ କରୁଛ ।"

ଏହା ପରେ ପାର୍ଲିମେଣ୍ଟରେ କେବଳ କଂଗ୍ରେସ ସମର୍ଥକମାନେ ହିଁ ରହିଲେ ଏବଂ ଏହା ପରେ ଗୋଟିକ ପରେ ଗୋଟିଏ ସମ୍ବିଧାନ ସଂଶୋଧନ ଆଇନ୍ ପାସ୍ ହୋଇଗଲା । ଏଲାହାବାଦ ହାଇକୋର୍ଟ ଯେଉଁସବୁ ଅପରାଧରେ ଇନ୍ଦିରା ଗାନ୍ଧୀଙ୍କୁ ଦୋଷୀ ବୋଲି ସାବ୍ୟସ୍ତ କରିଥିଲା, ଅଗଷ୍ଟ ୬।୭ ତାରିଖରେ ନିର୍ବାଚନ ଆଇନ ସଂଶୋଧନ କରାଯାଇ ସେଗୁଡ଼ିକ ପିଛିଲି ତାରିଖରୁ ଆଉ ଦୋଷ ବୋଲି ଧର୍ତ୍ତବ୍ୟ ନୁହେଁ ବୋଲି ଆଇନ ଧାର୍ଯ୍ୟ ହୋଇଗଲା । ଯାହା ଯୋଗୁଁ ଇନ୍ଦିରା ଗାନ୍ଧୀ ସୁପ୍ରିମ୍ କୋର୍ଟରେ ଯେଉଁ ଅପିଲ ଦାଏର କରିଥିଲେ, ତାର ରାୟ ଯେତେବେଳେ ନଭେମ୍ବର ୭ ତାରିଖରେ ପ୍ରକାଶ ପାଇଲା, ସେଥିରେ ପ୍ରଧାନ ବିଚାରପତି ଓ ଅନ୍ୟମାନେ ପରିଷ୍କାର ଲେଖିଲେ ଯେ, ସଂଶୋଧିତ ଆଇନ ପରେ ଆମ ପକ୍ଷରେ ଅପିଲ ମଞ୍ଜୁର୍ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ଏହା କରାଗଲା କେବଳ ଇନ୍ଦିରା ଗାନ୍ଧୀଙ୍କର ବ୍ୟକ୍ତିଗତ ଅସୁବିଧା ଦୂର କରିବା ନିମନ୍ତେ ଏବଂ ତାଙ୍କୁ ରକ୍ଷା କରିବା ନିମନ୍ତେ ।

ସେତିକରେ ସନ୍ତୁଷ୍ଟ ନ ହୋଇ, ବିଚାର ବିଭାଗ ପ୍ରତି ମନରେ ଏତିକି ଭୟ ଯେ, କେବଳ ପ୍ରଧାନମନ୍ତ୍ରୀଙ୍କୁ ନିଜପଦ ରଖିବା ନିମନ୍ତେ ଅଗଷ୍ଟ ପହିଲାରେ ୩୮ତମ, ଅଗଷ୍ଟ ୭ ଓ ୮ରେ ୩୯ତମ ଏବଂ ଅଗଷ୍ଟ ୯ରେ ୪୦ତମ ସଂବିଧାନ ସଂଶୋଧନ ଆଇନ ଧାର୍ଯ୍ୟ ହୋଇଗଲା । ସବୁଠାରୁ ନିର୍ଲଜ୍ଜ କଥା ହେଉଛି ଏହି ସଂଶୋଧନ ଆଇନ ଯେମିତି ଆଉ ସୁପ୍ରିମ କୋର୍ଟରେ ଚ୍ୟାଲେଞ୍ଜ ନହେବ, ସେଥିଲାଗି ଏଗୁଡ଼ିକୁ ସଂବିଧାନର ୯ ସିଡ୍ୟୁଲ୍‌ଭୁକ୍ତ କରିଦିଆଗଲା ।

ଅଗଷ୍ଟ ତୃତୀୟ ସପ୍ତାହରେ ପୁଣି ୪୧ତମ ସମ୍ବିଧାନ ସଂଶୋଧନ ଆଇନ୍ ପାସ୍ କରାଯାଇ ସେଥିରେ କୌଣସି ଫୌଜଦାରୀ ମକଦ୍ଦମା ପ୍ରଧାନମନ୍ତ୍ରୀ, ରାଷ୍ଟ୍ରପତି ଓ ଗଭର୍ଣ୍ଣରଙ୍କ ବିରୁଦ୍ଧରେ କରାଯାଇପାରିବ ନାହିଁ ବୋଲି ଧାର୍ଯ୍ୟ ହୋଇଗଲା । ଏଥିରେ ଲିପିବଦ୍ଧ ହେଲା ଯେ, ସେ ପ୍ରଧାନମନ୍ତ୍ରୀ ଥିବାବେଳେ କିମ୍ବା ତା' ପୂର୍ବରୁ ଯଦି କୌଣସି ଆଇନଲଙ୍ଘନ କାର୍ଯ୍ୟ କରିଥିଲେ,

ସେଥିଲାଗି ତାଙ୍କୁ ଗିରଫ କରାଯାଇ ପାରିବ ନାହିଁ କିମ୍ବା ଦଣ୍ଡ ଦିଆଯାଇ ପାରିବ ନାହିଁ । ଏହି ଆଇନ ରହିଥିବାରୁ ଇନ୍ଦିରା ଗାନ୍ଧୀ ଏବେ ଜନତା ସରକାରକୁ ତାଙ୍କୁ ଫୌଜଦାରୀ ଆଇନରେ ଗିରଫ କରାଯାଉ ବୋଲି ଧମକ ଦେଇ ବୁଲୁଛନ୍ତି । ସେ ଭାବୁଛନ୍ତି ଯାହା ମାତ୍ରାଧିକ୍ୟ ହୋଇଛି, ତାହା ପ୍ରଧାନମନ୍ତ୍ରୀ ଥିବାବେଳର । ମାତ୍ର ଏବେ ଯେଉଁ ସବୁ ଅନୁସନ୍ଧାନ ଚାଲିଛି, ସେଥିରୁ ଯାହା ଜଣାପଡ଼ୁଛି, ତାଙ୍କ ବିରୁଦ୍ଧରେ କ୍ଷମତାର ଅପପ୍ରୟୋଗ କରିଥିବାର ପ୍ରମାଣ ମିଳିଯିବ ଏବଂ ତାହା ହୋଇଗଲେ ଏପରି ସଂବିଧାନଗତ ଅସୁବିଧା ସତ୍ତ୍ୱେ ତାଙ୍କୁ ଗିରଫ କରିବାରେ କିଛି ଅସୁବିଧା ହେବ ନାହିଁ ବୋଲି କେତେକ ବିଶେଷ ଆଇନଜ୍ଞ ମତ ଦେଉଛନ୍ତି । ସେଥିଲାଗି ଇନ୍ଦିରା ଗାନ୍ଧୀ ବିବୃତି ଏବଂ ସଭା-ସମିତି ଦ୍ୱାରା ରାଜନୈତିକ ଚାପ ସରକାର ଉପରେ ପକାଇବାର ଉଦ୍ୟମ କରୁଛନ୍ତି । ସେ ତାଙ୍କ ଅପକର୍ମରୁ ଉଦ୍ଧାର ପାଇଯିବାର ସମ୍ଭାବନା ଖୁବ୍ କମ୍ । ପ୍ରଧାନମନ୍ତ୍ରୀଙ୍କୁ ଏଭଳି ଯେ ବ୍ୟକ୍ତିଗତ ଅପରାଧରୁ ଚିରଦିନ ଲାଗି ମୁକ୍ତି ଦିଆଯାଇ ବିଧାନ ଖଞ୍ଜାଗଲା, ସେଥିରେ ମନ୍ତବ୍ୟ କରି ଜଣେ ଇଂରେଜ ଲେଖକ ଡେଭିଡ୍ ସେଲବୋର୍ଣ୍ଣ ଲେଖିଛନ୍ତି :

"ଆମେରିକାରେ ଫୋର୍ଡ ପୂର୍ବ ରାଷ୍ଟ୍ରପତି ନିକସନଙ୍କୁ ଯେଉଁ କ୍ଷମା ଦେଇଥିଲେ, ଏହା ତା'ଠାରୁ ଯଥେଷ୍ଟ ପରିମାଣରେ ଅଧିକ । ଏ ଆଇନର ଶାସନ ଇତିହାସରେ ଅପୂର୍ବ । ଏମିତି କେଉଁଠି ଶୁଣାଯାଇନାହିଁ, ଏପରିକି ଏକଚ୍ଛତ୍ରବାଦୀ ଦେଶରେ ବି ଯେ ଆଇନକାନୁନ୍ ରହିଛି ସେଥିରେ ବି ଉଲ୍ଲେଖ ନାହିଁ, ପ୍ରଧାନମନ୍ତ୍ରୀ ବା ଶାସନର ସର୍ବୋଚ୍ଚ କର୍ମକର୍ତ୍ତା ନିଜ କାର୍ଯ୍ୟ ବେଳରେ କେବଳ ନୁହେଁ, ଅଫିସ ତ୍ୟାଗ କଲା ପରେ ବି ଯେକୌଣସି ଫୌଜଦାରୀ ବା ଅନ୍ୟ ଦଫାରେ ଦଣ୍ଡିତ ହୋଇପାରିବେ ନାହିଁ, ଏହା କେଉଁଠି ହେଲେ ଶୁଣାଯାଇନାହିଁ ।"

ଏତିକିରେ ଇନ୍ଦିରା ଗାନ୍ଧୀ ସନ୍ତୁଷ୍ଟ ରହିଲେ ନାହିଁ । ସେ ଯାହା ବିଚାରୁଥିଲେ ଆନ୍ଦୋଳନ ଅତି ଅଳ୍ପ ଦିନ ପରେ ଲୋପପାଇଯିବ, ତାହା ବି ବାହାରକୁ ଶାନ୍ତ ବୋଲି ଜଣାପଡ଼ୁଥିଲେ ସୁଦ୍ଧା ଦେଶର ବିଭିନ୍ନ ଅଞ୍ଚଳରେ ଗୁପ୍ତଭାବରେ ବେଆଇନ ପ୍ରଚାର ପତ୍ରିକା ଓ ଅନ୍ୟାନ୍ୟ ପ୍ରତିରୋଧମୂଳକ କାର୍ଯ୍ୟ ଅବ୍ୟାହତ ଭାବରେ ଚାଲୁଥିଲା । ବିଦେଶୀ ରାଷ୍ଟ୍ରଗୁଡ଼ିକୁ ମଧ୍ୟ ଏ ବାର୍ତ୍ତା ଚାଲିଯାଉଥିଲା ଏବଂ ଆନ୍ତର୍ଜାତିକ କ୍ଷେତ୍ରରେ ଏହା ବିରୁଦ୍ଧରେ ପ୍ରବଳ ଜନମତ ସୃଷ୍ଟି ହେବାକୁ ଲାଗିଲା । ସେଥିରେ ବିଚଳିତ ହୋଇ ପୁଣି ୧୯୭୫ ନଭେମ୍ବର-ଡିସେମ୍ବର ମାସ ବେଳକୁ ରାଷ୍ଟ୍ରପତିଙ୍କ ଦ୍ୱାରା ୩ଟି ଅର୍ଡିନାନ୍ସ ଜାରିକରାଗଲା । ସେଥିରେ ପ୍ରେସ୍ କାଉନ୍ସିଲ୍ ଭାଙ୍ଗି ଦିଆଗଲା ଏବଂ ଛାପାଖାନାରେ ବା ଲିଥୋ ଜରିଆରେ ଆନ୍ଦୋଳନ ସମ୍ବନ୍ଧୀୟ କୌଣସି ସମ୍ବାଦ ପ୍ରକାଶ ପୂର୍ଣ୍ଣ ନିଷିଦ୍ଧ ହୋଇଗଲା ।

ଯଦି କୌଣସି ସାମରିକ ବା ଏକଦଳୀୟ ଏକଚ୍ଛତ୍ରପତି ହୋଇଥାଆନ୍ତା ସେ ବୋଧହୁଏ ଏଭଳି ଗଣତନ୍ତ୍ରବିରୋଧୀ ଆଇନକାନୁନ୍ କରିବାର ଆବଶ୍ୟକତା ଅନୁଭବ କରିନଥାଆନ୍ତା । କିନ୍ତୁ ଇନ୍ଦିରା ଗାନ୍ଧୀ ବରାବର କହିବୁଲିଲେ ଯେ, 'ଗଣତନ୍ତ୍ର ଯେ ବିପଥଗାମୀ ହୋଇଛି ତାକୁ ବାଟକୁ ଆଣିବା ନିମନ୍ତେ ଏଭଳି ପନ୍ଥା ଗ୍ରହଣ କରିବାର ଆବଶ୍ୟକତା ରହିଛି ।

ଭାରତ ସରକାର ତରଫରୁ ମଧ୍ୟ ସର୍ବତ୍ର ପ୍ରଚାର ହେଉଥିଲା ଯେ ଜରୁରୀକାଳୀନ ପରିସ୍ଥିତି ଫଳରେ ଏକଚ୍ଛତ୍ରାଧିପତି ପାଳିତ୍ୱ ଥିବା ପ୍ରଚାର ଭ୍ରମାତ୍ମକ; କାରଣ ଭାରତର ସଂବିଧାନରେ ଏମର୍ଜେନ୍ସି ଘୋଷଣା କରାଯିବାର ବିଧାନ ରହିଛି; ଇନ୍ଦିରା ଗାନ୍ଧୀ ଯାହା କରିଛନ୍ତି ତାହା ସଂବିଧାନସମ୍ମତ । ଏହି ବାହାନା ବାହାରକୁ ଦେଖାଇବା ନିମନ୍ତେ ବାରିବାର ପାର୍ଲିମେଣ୍ଟ ଅଧିବେଶନ ଡକାଯାଇ କିମ୍ବା ଅର୍ଡିନାନ୍ସ ଜାରିକରି ଅଧିକରୁ ଅଧିକ କ୍ଷମତା ନିଜ ହାତକୁ ନେବାକୁ ଲାଗିଲେ । ଯଦି ବାସ୍ତବିକ ଦେଶବାସୀ ତାଙ୍କ କାର୍ଯ୍ୟକୁ ପସନ୍ଦ କରୁଛନ୍ତି ଏବଂ ତାଙ୍କ ପ୍ରତି ବିପୁଳ ସମର୍ଥନ ରହିଛି ବୋଲି ଇନ୍ଦିରା ଗାନ୍ଧୀ ବିଶ୍ୱାସ କରୁଥାଆନ୍ତେ, ତେବେ ୧୯୭୬ ମସିହାରେ ସାଧାରଣ ନିର୍ବାଚନ କରାଇଥାଆନ୍ତେ । ଉମା ବାସୁଦେବ ତାଙ୍କ ପୁସ୍ତକରେ ଲେଖିଛନ୍ତି—କେହି କେହି ପାର୍ଲିମେଣ୍ଟ ସଭ୍ୟ ତାଙ୍କୁ ଏଭଳି ପ୍ରସ୍ତାବ ମଧ୍ୟ ଦେଇଥିଲେ । କିନ୍ତୁ ହଠାତ୍ ଜେଲମୁକ୍ତି ଫଳରେ ଲୋକଙ୍କ ଉପରେ କି ଭଳି ପ୍ରତିକ୍ରିୟା ହେବ, ସେଥିରେ ତାଙ୍କ ମନରେ ଆଶଙ୍କା ଉପୁଜିଥିଲା । ସର୍ବାଧିକ ସଂଖ୍ୟା ଲାଭରେ ତାଙ୍କ ମନରେ କୌଣସି ସନ୍ଦେହ ନ ଥିଲେ ସୁଦ୍ଧା ସଂବିଧାନ ସଂଶୋଧନ ନିମନ୍ତେ ଯେଉଁ ଦୁଇ-ତୃତୀୟାଂଶ ବହୁମତ ରହିବାର କଥା, ସେ ବିଷୟରେ ତାଙ୍କ ମନରେ ସନ୍ଦେହ ୧୯୭୫ ଡିସେମ୍ବର ମାସ ବେଳକୁ ଉପୁଜିଥିଲା । ନିର୍ବାଚନ କରିବା ନିମନ୍ତେ ମତଭେଦ ଥିଲା । କେହି କେହି ନିର୍ବାଚନ ଘୁଞ୍ଚାଇ ଦିଆଯାଇ, ଏମର୍ଜେନ୍ସି ଜାରି ରଖି ଏକ ଶାସନବିଧାୟକ ସଭା ଡାକିବାର ବି ପ୍ରସ୍ତାବ କରିଥିଲେ । ଏଥିରେ ବିଶେଷ ଭାବରେ ବଂଶୀଲାଲ ଓ ସଞ୍ଜୟ ଗାନ୍ଧୀ ପ୍ରଭୃତି ଉତ୍ସୁକ ହୋଇ-ଥିଲେ । ହରିଆନା, ଉତ୍ତରପ୍ରଦେଶ, ପଞ୍ଜାବ ଓ ବିହାର ଆଦି ପ୍ରଦେଶରୁ ଏମିତି ଦାବିମାନ ମଧ୍ୟ ଉଠିଥିଲା । ଏହା ହୋଇଥିଲେ ଅନିର୍ଦ୍ଦିଷ୍ଟ କାଳ ଲାଗି ଏମର୍ଜେନ୍ସି ଓ ଲୋକସଭା ରହିଥାଆନ୍ତା; ନୂତନ ସଂବିଧାନ ତିଆରି ହୋଇ ସେଥିରେ ପୁଣି ନିର୍ବାଚନ କରାଯାଇଥାଆନ୍ତା । ତାହା କେତେ କାଳ ଲାଗିଥାଆନ୍ତା କିଏ କହିବ ମାତ୍ର ବିଭିନ୍ନ ମହଲରୁ ଏଭଳି ପ୍ରସ୍ତାବର ପ୍ରତିବାଦ ହେବାରୁ ଏହା ସ୍ଥଗିତ ରଖାଗଲା । ଉତ୍ତର ପ୍ରଦେଶରେ ଯେଉଁଦିନ ଏ ପ୍ରସ୍ତାବ ଧାର୍ଯ୍ୟ ହୁଏ, ସେଦିନ ଇନ୍ଦିରା ଗାନ୍ଧୀ ସେଠାରେ ଥିଲେ ଏବଂ କଂଗ୍ରେସ କମିଟି ବୈଠକରେ ମଧ୍ୟ ଭାଷଣ ଦେଇଥିଲେ । ତାଙ୍କୁ ସାମ୍ବାଦିକମାନେ ପ୍ରଶ୍ନ କରିବାରୁ ସେ କହିଲେ—"ମୋ ଉପସ୍ଥିତିରେ ଏପରି କିଛି କରାଯାଇନଥିଲା ।" ବିରାଡ଼ି ଆଖିବୁଜି ଦୁଧ ପିଇଲା ଭଳି ଏ କଥା । କିନ୍ତୁ ବିଭିନ୍ନ ମହଲରୁ ଏ ପ୍ରସ୍ତାବର ବିରୋଧ ହେବାରୁ ଇନ୍ଦିରା ଗାନ୍ଧୀ ତହିଁରେ ଆଗଭର ହେଲେନାହିଁ ।

ଏଥି ସଙ୍ଗେ ସଙ୍ଗେ ଆଉ ଏକ ବିଚାର ଚାଲିଲା ଯେ, ବର୍ତ୍ତମାନ ଯେଉଁ ପାର୍ଲିମେଣ୍ଟାରୀ ଗଣତନ୍ତ୍ର ଚାଲିଛି, ତାହା ବଦଳରେ ଯାହାକୁ କହନ୍ତି ପ୍ରେସିଡେନ୍ସିଆଲ ପ୍ରଥାର ସଂବିଧାନ ଜାରି କରିଦେଲେ ବି ଇନ୍ଦିରା ଗାନ୍ଧୀଙ୍କର ଆସନ ଦୃଢ଼ ହୋଇ ରହିବ । ସେହିଭଳି ପ୍ରଥା ବାଂଲାଦେଶରେ ମୁଜିବ ପ୍ରଚଳନ କରିଥିଲେ । କୁହାଯାଉଛି, ମୁଜିବ ଏହା କରିବା ପୂର୍ବରୁ ଇନ୍ଦିରା ଗାନ୍ଧୀଙ୍କ ସହ ପରାମର୍ଶ କରିଥିଲେ । ସେଥିରେ ଆଉ ପାର୍ଲିମେଣ୍ଟରେ ମନ୍ତ୍ରିମଣ୍ଡଳ

ଉପରେ ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ଉଠନ୍ତାନାହିଁ, ପ୍ରେସିଡେଣ୍ଟ ହିଁ ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତି ଉଭୟ କାର୍ଯ୍ୟ କରନ୍ତେ । ସାଧାରଣ ଭୋଟରେ ସେ ୬ ବର୍ଷଲାଗି ନିର୍ବାଚିତ ହୋଇଯାଆନ୍ତେ । ଏକପ୍ରକାର ଫ୍ରାନ୍ସ ଦେଶରେ ଯେମିତି ଡିଗଲଙ୍କ ସମୟରୁ ହୋଇଛି, ତାର ଓ ଆମେରିକାରେ ଚାଲୁଥିବା ପ୍ରଥାର କିଞ୍ଚିତ୍ ସଂଶୋଧନ କରାଯାଇ ଏକ ସଂବିଧାନ ପାସ୍ କରାଇନେବାଲାଗି କିଛି ପ୍ରସ୍ତୁତି ଚାଲିଲା । ଏକ ପୁସ୍ତିକା ଏ ସଂକାନ୍ତରେ ଲେଖାଯାଇ ବିତରଣ ମଧ୍ୟ ହୋଇଥିଲା । ଏଥିର ଘୋର ବିରୋଧ ଦେଖାଯିବାରୁ ସରକାରୀଭାବରେ ଏଭଳି କୌଣସି ପ୍ରସ୍ତାବ ବିଚାରରେ ନାହିଁ କିମ୍ବା ଏ ପୁସ୍ତିକା ସେମାନଙ୍କ ତରଫରୁ ପ୍ରକାଶ କରାଯାଇନାହିଁ ବୋଲି କୁହାଗଲା ।

ଏହି ଦୁଇଟି ଘଟଣା ଦ୍ୱାରା ଜଣାପଡ଼ୁଛି ଯେ, ଏକଚ୍ଛତ୍ର ଅଧିକାର ଯେ ଭୋଗ କରାଯାଉଥିଲା, ତାହା ପୁଣି ଲୋକମତର ସମର୍ଥନରେ ତିଷ୍ଠିବା ସମ୍ବନ୍ଧରେ ମନରେ ସନ୍ଦେହ ଓ ଆଶଙ୍କା ଜାତ ହୋଇ ସାରିଥିଲା । ବାଘ ଉପରେ ବସି ଯିବା ହୁଏତ ସହଜ, ମାତ୍ର ତାର କବଳଗ୍ରାସରୁ ମୁକ୍ତ ହୋଇ ପିଠିରୁ ତଳକୁ ଖସିବା ଅତିବ ଦୁଷ୍କର । ଇନ୍ଦିରା ଗାନ୍ଧୀ ସେହି ପରିସ୍ଥିତି ଭିତରେ ନିଜକୁ ପହଞ୍ଚାଇ ସାରିଥିଲେ । ତେଣୁ ୧୯୭୭ ନିର୍ବାଚନ ଘୁଞ୍ଚାଇବାକୁ ପଡ଼ିଲା ଏବଂ ପୁଣି ସଂବିଧାନକୁ ସଂଶୋଧନ କରାଯାଇ ରାଷ୍ଟ୍ରପତି, ପାର୍ଲିମେଣ୍ଟ ଓ ବିଚାର ବିଭାଗଠାରୁ ଶାସନ କର୍ତ୍ତୃପକ୍ଷଙ୍କୁ ହିଁ ୪୨ତମ ସଂବିଧାନ ସଂଶୋଧନରେ ଖୁବ୍ ବଳଶାଳୀ କରାଗଲା ।

ଜୟପ୍ରକାଶ ନାରାୟଣ ଅସୁସ୍ଥ ହୋଇ ଜେଲରୁ ଖଲାସ ହେବା ପରେ ତାଙ୍କୁ ବି. ବି. ସି.ର ପ୍ରତିନିଧି ୧୯୭୬ ଫେବୃୟାରୀ ୧୨ ତାରିଖରେ ଏମର୍ଜେନସି କାହିଁକି ହେଲା ଏବଂ ଏହାର ପରିଣତି କଣ ହେବ ବୋଲି ପ୍ରଶ୍ନ କରିବାରୁ ସେ କହିଥିଲେ :

"ଏମର୍ଜେନ୍ସି ଜାରି ହେଲାବେଳେ ମୋ ମନରେ ପ୍ରବଳ କ୍ରୋଧ ଜାତ ହୋଇଥିଲା । ମୁଁ ଏବେ ବି ସେମିତି ଅନୁଭବ କରୁଛି । ତାର କାରଣ ହେଉଛି, ଅତି ମିଥ୍ୟା କାରଣ ଦର୍ଶାଇ ଏମର୍ଜେନସି ଘୋଷଣା କରାଗଲା । ଦେଶରେ ସେଭଳି କିଛି ସଙ୍କଟ ନଥିଲା; କିଛି ବିପଦ ନଥିଲା, କୌଣସି ବହିର୍ଦେଶର ବିପଦ ବି ନଥିଲା । ଆଭ୍ୟନ୍ତରୀଣ ପରିସ୍ଥିତି କିଛି ଏଭଳି ଗତି କରୁନଥିଲା ଯେ ବିଦ୍ରୋହର ସମ୍ଭାବନା ରହିଥିଲା । ଲୋକେ ତାଙ୍କର ଗଣତାନ୍ତ୍ରିକ ଅଧିକାର ପ୍ରୟୋଗ କରୁଥିଲେ, ସାଧାରଣ ସଭାମାନ ହେଉଥିଲା ଏବଂ ସେମିତି ଏବେ ବି ହେଉଥାଆନ୍ତା, ବିକ୍ଷୋଭପ୍ରଦର୍ଶନ କରାଯାଉଥିଲା, ନାନାପ୍ରକାର ଧ୍ୱନି ଉଠୁଥିଲା, ପ୍ରତିବାଦ ସଙ୍ଗୀତ ଗାନ କରାଯାଉଥିଲା, ହରତାଳ ହେଲା—ଯେଉଁଠି କିଛି ବିଶେଷ ପରିସ୍ଥିତି ଘଟିଯାଏ ସେଥିରେ ଏମିତିକା ଘଟଣା ବରାବର ହେଉଥିଲା । କିନ୍ତୁ ଏଥିଲାଗି ଏମର୍ଜେନ୍ସି ଘୋଷଣା କରିବାର ଆବଶ୍ୟକତା ଥିଲା ବୋଲି ମୁଁ କେବେହେଲେ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେଁ । ସେଇଥିଲାଗି ମୋ ମନରେ ଭୀଷଣ କ୍ରୋଧ ଯେ, ନିଜ ହାତରେ କ୍ଷମତା ରଖିବାଲାଗି, ନିଜେ ପଦବୀରେ ରହିବାଲାଗି ଦେଶ ଉପରେ ଏମର୍ଜେନସି ଲଦିଦିଆଗଲା । ମୋର ଧାରଣା—ଏକଥା ମୁଁ ବହୁବର୍ଷ ହେଲା କହିଆସିଛି ଯେ, ଇନ୍ଦିରାଙ୍କର ଏକଚ୍ଛତ୍ର ମନୋବୃତ୍ତି ରହିଛି । ମତେ ଲୋକେ

ପଚାରନ୍ତି—ଆପଣ କାହିଁକି ଏଭଳି କହୁଛନ୍ତି ? ଏବେ ତ ଏହା ପ୍ରମାଣିତ ହୋଇଗଲା ! ସେ ସୁଯୋଗ ପାଇଲେ, ଡିକ୍ଟେଟର ହେଲେ ।"

ଏତେ ସୁନ୍ଦର ଭାବରେ, ଏତେ ସଂକ୍ଷିପ୍ତ ଭାବରେ, କେହି ସେ କାଳର ପରିସ୍ଥିତିକୁ ବର୍ଣ୍ଣନା କରିନାହାନ୍ତି । ଇନ୍ଦିରା ଖାଲି ଏମର୍ଜେନ୍‌ସିର ସୁଯୋଗ ନେଇ ଦେଶରେ ଅତ୍ୟାଚାରର ତାଣ୍ଡବଲୀଳା ଲଗାଇଲେ ନାହିଁ, ପାର୍ଲିମେଣ୍ଟ ପଦ୍ଧତି ଭିତରେ ଯେଭଳି ପ୍ରଧାନମନ୍ତ୍ରୀ ସର୍ବଶକ୍ତିମାନ ଡିକ୍ଟେଟର ଭାବରେ କାର୍ଯ୍ୟ କରିପାରିବେ, ସେଥି ଢାଞ୍ଚାରେ ଦେଶର ଆଇନ-କାନୁନ, ସଂବିଧାନ ଇତ୍ୟାଦିର ସଂଶୋଧନ କରିନେଲେ ।

ବିଶିଷ୍ଟ ଆଇନଜ୍ଞ ଓ ପୂର୍ବତନ କେନ୍ଦ୍ରମନ୍ତ୍ରୀ ଏମ୍. ସି. ଚଗଲା ଅହମଦାବାଦରେ ୧୯୭୫ ଅକ୍ଟୋବର ୧୨ ତାରିଖରେ ଯେଉଁ ଭାଷଣ ଦେଇଥିଲେ, ତାହାର ଉଲ୍ଲେଖ କରୁଛି । ଏହି ଭାଷଣ ସେତେବେଳେ କୌଣସିଠାରେ ପ୍ରକାଶିତ ହୋଇ ନଥିଲା । ଏହା ଲିଖିତ ଭାଷଣ ବି ନଥିଲା—ଟେପ୍‌ରେକର୍ଡ କରି ଏହା ରଖାଯାଇଥିଲା । ଏ ସଭାରେ ସଭାପତି ହୋଇଥିଲେ ସୁପ୍ରିମକୋର୍ଟର ଅବସରପ୍ରାପ୍ତ ପ୍ରଧାନ ବିଚାରପତି ଜେ. ସି. ଶାହା । ସେ ଏବେ ଜନତା ସରକାର ଦ୍ୱାରା ଏମର୍ଜେନ୍‌ସି ବେଳର ସରକାରୀ କର୍ମର ମାତ୍ରାଧିକ୍ୟ ତଦନ୍ତ କମିସନ ରୂପେ ନିଯୁକ୍ତ ହୋଇଛନ୍ତି; ପ୍ରକାଶ୍ୟରେ ତଦନ୍ତ କାର୍ଯ୍ୟ ଆରମ୍ଭ କରିଛନ୍ତି । ପ୍ରଥମ ଦିନର ରିପୋର୍ଟ ଯେତିକି ପ୍ରକାଶପାଇଲାଣି ତାହା ଯେପରି କୌତୂହଳଜନକ ସେହିପରି ଚମକପ୍ରଦ । ଶ୍ରୀ ଚଗଲା କୌଣସି ରାଜନୀତିକ ଦଳର ସଭ୍ୟ ନୁହନ୍ତି । ସେ କହିଥିଲେ :

"ମୁଁ ବର୍ତ୍ତମାନ ପରିସ୍ଥିତି ବିଷୟରେ ଯେତେ ଭାବୁଛି, ମତେ ଲାଗୁଛି ଯେ ମୁଁ କଣ ସ୍ୱପ୍ନ ଦେଖୁଛି କି ? ନା, ଆହୁରି ଠିକିଏ ବିଶଦଭାବରେ କହିଲେ, ମତେ କାଳସୀ ଲାଗିଥିଲାପରି ବୋଧହେଉଛି । ମୁଁ ଆଖି ମଳି ଦେଖୁଛି ମୁଁ ଜାଗ୍ରତ ନା ସୁପ୍ତ । ଏବଂ ମୁଁ ଦେଖୁଛି—ନାଁ ନାଁ, ଏହା ସ୍ୱପ୍ନ ନୁହେଁ କି କାଳସୀ ନୁହେଁ—ଏହା ଏକ ନଗ୍ନ ଭୟଙ୍କର ବାସ୍ତବତା । ତୁମପରି ଓ ମୋପରି ଯେ କୌଣସି ବ୍ୟକ୍ତିଙ୍କୁ ଜେଲ୍ ଭିତରେ ବନ୍ଦ କରି ଦିଆଯାଇପାରେ । ମୁଁ ଜାଣେନାହିଁ ଏଠାରୁ ବମ୍ବେ ଫେରିପାଇ ପାରିବି କି ନାହିଁ—କାରଣ ସେମାନେ ମତେ ନେଇ ବନ୍ଦ କରି ଦେଇପାରନ୍ତି । ମୁଁ ଜାଣିପାରିବି ନାହିଁ କେଉଁ କାରଣରୁ ମୁଁ ବନ୍ଦୀ ହେଲି କିମ୍ବା କହିବେ ଯେ ମୁଁ ଆଜି ଏକ ଭାଷଣ ଦେଉଥିବାରୁ ଏହା କରାଗଲା । ଏବେ ଜେଲ୍‌ରେ ଯେତେ ଲୋକ ରହିଛନ୍ତି ସେଥିରୁ ଅଧିକାଂଶଙ୍କୁ ଜଣାନାହିଁ କାହିଁକି ତାଙ୍କୁ ରଖାଯାଇଛି । ସେମାନେ ଓକିଲ ଦେଇ ଲଢ଼ିପାରିବେ ନାହିଁ, କାରଣ ଅଭିଯୋଗ ଜଣାଥିଲେ ସିନା ଲୋକ ନିଜ ପକ୍ଷ ସମର୍ଥନ କରି କିଛି କହିବ !

ଆଜିର ଅବସ୍ଥା କଅଣ ? ଦେଶରେ ନାଗରିକ ସ୍ୱାଧୀନତାର କିଛି ଲେଶ ହେଲେ ରହିଛି କି ? ପ୍ରଧାନମନ୍ତ୍ରୀ ଯଦି କହିବେ ଏ ଏକଚ୍ଛତ୍ରବାଦ ହିଁ ଗଣତନ୍ତ୍ର, ତେବେ ଆମକୁ ତାଙ୍କ କଥାକୁ ଗ୍ରହଣ କରିବାକୁ ପଡ଼ିବ । କିନ୍ତୁ ଆମେ କେତେଜଣଙ୍କୁ ସେ ନିର୍ବୋଧ ଭାବନ୍ତୁ ନାହିଁ ।

ଆମେ ଆଜ ଏଠାରେ ଯେ ଏକଜୁଟ ହୋଇଛୁ ଆମେ ଜାଣୁ ଗଣତନ୍ତ୍ର ଓ ଏକଚ୍ଛତ୍ରବାଦ କାହାକୁ କୁହାଯାଏ । ଆଜ ଯାହା ଚାଲିଛି ତାହା ମୋ ମତରେ ଏକଚ୍ଛତ୍ରବାଦ ବ୍ୟତୀତ ଆଉ କିଛି ନୁହେଁ; କେବଳ ପ୍ରଧାନମନ୍ତ୍ରୀ କହିଦେଲେ କିଛି ଏ ଦେଶ ଗଣତନ୍ତ୍ର ହୋଇଗଲା ନାହିଁ ।

ଆମ ନାଗରିକ ସ୍ୱାଧୀନତାର ସବୁଠାରୁ ଗୁରୁତର ଅଙ୍ଗ ହେଉଛି ସମ୍ବାଦପତ୍ରର ସ୍ୱାଧୀନତା; ତାହା ଅପହରଣ କରାଯାଇଛି । ମୁକ୍ତ ସ୍ୱାଧୀନ ସମ୍ବାଦପତ୍ର ବ୍ୟତୀତ ଗଣତନ୍ତ୍ର ଚାଲିପାରେନା । ବାହାରର କୌଣସି ସମ୍ବାଦପତ୍ରରେ ପ୍ରଧାନମନ୍ତ୍ରୀ କିମ୍ବା ସରକାର ବିଷୟରେ କିଛି ଉଲ୍ଲେଖ ହୋଇଥିଲେ ତାହା ଆମ ଦେଶ ଭିତରେ ପ୍ରବେଶ କରିପାରୁନାହିଁ । କୌଣସି ଅଦାଲତର ବିଚାର ବିବରଣ କିମ୍ବା ପାର୍ଲିମେଣ୍ଟର କାର୍ଯ୍ୟ ବିବରଣୀ ପ୍ରକାଶ ନିମନ୍ତେ ଯାଞ୍ଚ କର୍ତ୍ତୃପକ୍ଷ ଅନୁମତି ଦେଉନାହାନ୍ତି; କିନ୍ତୁ ତୁମେ ପ୍ରଧାନମନ୍ତ୍ରୀଙ୍କ ଗୁଣ କୀର୍ତ୍ତନ କରିପାରିବ— ତାହାହିଁ ଦିବାରାତ୍ର ଚାରିଆଡ଼େ ଚାଲିଛି—ତାହା ସଂପୂର୍ଣ୍ଣରୂପେ ପ୍ରକାଶ ପାଇବ । ଆଜିକାଲିକା ସମ୍ବାଦପତ୍ର ପଢ଼ିଲେ ମୋ ମନରେ ବ୍ୟଥା ହେଉଛି ।

କିନ୍ତୁ ସବୁଠାରୁ କୌତୁହଳପ୍ରଦ ବିଷୟ ହେଉଛି—ଆମ ବିରୁଦ୍ଧରେ ଅଭିଯୋଗ କରାଯାଉଛି ଯେ ଆମେ ହେଉଛୁ ଫାସିଷ୍ଟ ଏବଂ ଦକ୍ଷିଣପନ୍ଥୀ ପ୍ରତିକ୍ରିୟାବାଦୀ, ସେମାନେ ହେଉଛନ୍ତି ଗଣତନ୍ତ୍ରବାଦୀ । ମୁଁ ମନେକରେ ଆମକୁ ଫାସିଷ୍ଟ ଓ ସେମାନଙ୍କୁ ଗଣତନ୍ତ୍ରବାଦୀ ବୋଲି କହିବା ଅପେକ୍ଷା ଭାଷାର ଆଉ କିଛି ଅପବ୍ୟବହାର ହୋଇ ପାରି ନଥାନ୍ତା । ମୁଁ ବେଳେ ବେଳେ ନିଜକୁ ପଚାରୁଛି—ମୁଁ କ'ଣ ଏକ ପୁଲିସ-ରାଷ୍ଟ୍ରରେ ରହିବାକୁ ଚାହେଁ କି ? ଏଇଟା ହେଉଛି ଏକ ପୁଲିସ ରାଷ୍ଟ୍ର—ଲୋକ ଯେତେବେଳେ ତାର ମନମୁତାବକ ଲେଖିପାରୁନାହିଁ କି ତାହା ଛପା ହୋଇପାରୁନାହିଁ, କୌଣସି କାରଣ ନ ଦର୍ଶାଇ ଲୋକଙ୍କୁ ଯେତେବେଳେ ଜେଲରେ ଆବଦ୍ଧ କରିଦିଆଯାଉଛି, ସେତେବେଳେ ଅନ୍ୟ ସ୍ଥାନରେ ଥିବା ପୁଲିସ-ରାଷ୍ଟ୍ର ଓ ଆମର ଏଠିକା ଅବସ୍ଥା ଭିତରେ କୌଣସି ପ୍ରଭେଦ ନାହିଁ ।

ମନେରଖ—

ସାଂବିଧାନିକ ଏକଚ୍ଛତ୍ରବାଦ ବୋଲି ଯାହା କୁହାଯାଉଛି, ତାହା ଅପେକ୍ଷା ଅଧିକ ଖରାପ ଡିକ୍‌ଟେଟରଶିପ କିଛି ହୋଇପାରେନା । ସମ୍ବିଧାନର ଛଳନା କରି ସଂବିଧାନର ନିୟମ କାଇଦାକୁ ମାମୁଲି ଢଙ୍ଗରେ ପାଳନ କରୁଥିବ ଅଥଚ ତାର ଅସଲ ଭାବର ବିରୋଧ କରୁଥିବ—ଏଭଳି ଅବସ୍ଥାରେ ଯେଉଁ ଏକଚ୍ଛତ୍ରବାଦ ଗଢ଼ିଉଠିବ, ତାର ନାମ ହେଉଛି ସାଂବିଧାନିକ ଏକଚ୍ଛତ୍ରବାଦ । ଏ ସଂବିଧାନ ପଛକେ ଲୋପକରିଦିଆଯାଉ, ମାତ୍ର ଏହି ସଂବିଧାନ ନାମରେ ଇନ୍ଦିରା ଗଣତନ୍ତ୍ରବାଦୀ ଏବଂ ସେ ଯାହା କରୁଛନ୍ତି ତାହା ସଂବିଧାନ ଅନୁମୋଦିତ ବୋଲି ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ନୁହେଁ । ଏହା ସ୍ୱଚ୍ଛ ନିର୍ମଳ ସାଂବିଧାନିକ ଏକଚ୍ଛତ୍ରବାଦ ।

ଆଜ ଆମ ହାତରେ ଶିକୁଳି; ଆମ ମୁହଁରେ ତୁଣ୍ଡି; ଆମେ କଲମରେ କିଛି ଲେଖି-ପାରୁନାହୁଁ; କାରଣ ତାହା ପ୍ରକାଶିତ ହେବନାହିଁ । କିନ୍ତୁ ତଥାପି ସାଧାରଣ ଜନମତ ଦିନେ

ଜାଗ୍ରତ ହେବ । ଏଠି ଆପଣମାନେ ପ୍ରାୟ ଏକହଜାର ବ୍ୟକ୍ତି ଅଛନ୍ତି । ମୁଁ ଯାହା କହିଲି, ସମସ୍ତେ ଶୁଣିଲେ । ସମସ୍ତେ ମୁହଁରେ ଏ କଥା ବାହାରକୁ ନେଇଯାନ୍ତୁ । ଯଦି ସାଧାରଣ ସଭା କରିବାକୁ ଅନୁମତି ମିଳୁନାହିଁ, ତେବେ ନିମନ୍ତ୍ରଣ ଦେଇ କୌଣସି ଘରୋଇ ଜାଗାକୁ ୨୦୦, ୩୦୦ ଲୋକଙ୍କୁ ନିମନ୍ତ୍ରଣ କରି କଥାବାର୍ତ୍ତା କରନ୍ତୁ, ସମସ୍ୟା ଆଲୋଚନା କରାଯାଉ । ଏଥିରେ କ୍ରମେ ସାଧାରଣ ଜନମତ ଗଢ଼ିଉଠିବ ।

ମୋ ଦେଶର ସଭ୍ୟତା ଶତଶହସ୍ର ବର୍ଷର । ମୋ ଦେଶରେ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ପ୍ରତିଷ୍ଠା ଲାଗି ସଂବିଧାନ ପ୍ରଣୟନ କରାଯାଇଛି । ଏ ଦେଶ କେବେହେଁ ସବୁଦିନ ଲାଗି ଏକଚ୍ଛତ୍ରବାଦର କରାଳ ଗ୍ରାସରେ ରହିପାରେନା । ଇଂରେଜୀରେ ଗୋଟିଏ କଥା ଅଛି— 'ରାତି ଯେତେ ଘନଅନ୍ଧକାର ହୋଇଯାଏ, ପ୍ରଭାତ ସେତେ ନିକଟ ହୋଇଆସେ ।' ମୁଁ ଦେଖୁଛି ବର୍ତ୍ତମାନ ରାତି ଘୋର ଘନଅନ୍ଧକାର । ମୁଁ ଜଣେ ବୃଦ୍ଧ ବ୍ୟକ୍ତି—ଦୀର୍ଘଦିନ କାଳ ଜୀବିତ ରହିବି ନାହିଁ । କିନ୍ତୁ ତୁମେ ଯୁବକ, ଆଲୋକ ପ୍ରଭାତ ଦେଖିବ । ନିଶ୍ଚୟ ଆଲୋକ ଆସିବ । ଏ ଦେଶ ପଦାନତ ହୋଇ ରହିବ ନାହିଁ । ସହସ୍ର ସହସ୍ର ବର୍ଷଧରି ଆମେ ବହୁ ଦୁର୍ବିପାକର ସମ୍ମୁଖୀନ ହୋଇ ବଞ୍ଚିରହିଛେ ଏବଂ ମୁଁ ମନେକରେ ଆମେ ଇନ୍ଦିରା ଗାନ୍ଧୀ ଓ ତାଙ୍କ ଏକଚ୍ଛତ୍ରବାଦକୁ ଲୋପକରି ପୁଣି ପୂର୍ବପରି ଜୀବନ ଫେରପାଇବା ।"

ଏହି ନୂତନ ଅଧିନାୟକବାଦ ବିରୁଦ୍ଧରେ ଦେଶରେ ସ୍ୱତଃସ୍ଫୂର୍ତ୍ତ ବିଦ୍ରୋହ ଚାଲିଲା ଏବଂ ଦେଶ-ବିଦେଶରେ ପ୍ରତିକ୍ରିୟା ଜାତହେଲା ।

# ଦେଶ-ବିଦେଶରେ ପ୍ରତିକ୍ରିୟା ଓ ଆନ୍ଦୋଳନ

ଶ୍ରୀମତୀ ଗାନ୍ଧୀ ଏମର୍ଜେନ୍‌ସି ଜାରିକରି ଏବଂ ନାନା ଦମନମୂଳକ ଆଇନ ଅର୍ଡିନାନ୍‌ସ ଜରିଆରେ ଭାରତବାସୀଙ୍କର ଯେ କଣ୍ଠରୁଦ୍ଧ କରି ଶାସନ ଚଳାଇବାର ପ୍ରଚେଷ୍ଟା କରିଥିଲେ, ସେଥିରେ ସଫଳତା ମିଳିଲାନାହିଁ । ସମ୍ବାଦପତ୍ର ଓ ଅନ୍ୟ ସବୁ ପ୍ରଚାର ମାଧ୍ୟମ ଉପରେ କଟକଣା ଜାରିକରିବା ସଙ୍ଗେ ଏମର୍ଜେନ୍‌ସି ଘୋଷଣା ହିଁ ଭାରତର ଜନତା ଉପରେ ଆକ୍ରମଣ ବୋଲି ଧରାଗଲା ଏବଂ ଏକାଦିନକେ ଭାରତର ବିଭିନ୍ନ ସ୍ଥାନରୁ ଯେ ୭୦୦ ମୁଖ୍ୟ ବ୍ୟକ୍ତିଙ୍କୁ ଗିରଫ କରାଗଲା ତାହା ଚତୁର୍ଦ୍ଦିଗରେ ସମ୍ବାଦ ପହଞ୍ଚାଇଦେଲା । ବିଭିନ୍ନ ବିରୋଧୀ ଦଳର ନେତୃବୃନ୍ଦ ଓ ଜୟପ୍ରକାଶ ନାରାୟଣ ଦିଲ୍ଲୀରେ ଉପସ୍ଥିତ ଥିଲେ । ତତ୍‌ପର ଦିନ ସକାଳେ ଲୋକ ସଂଘର୍ଷ ସମିତିର ବୈଠକ ବସି ଜୁନ୍ ୨୯ରୁ ଜୁଲାଇ ୫ ପର୍ଯ୍ୟନ୍ତ ଯେ ସପ୍ତାହ ପାଳିତ ହେବାର ନିଷ୍ପତ୍ତି ହୋଇଥିଲା, ସେଥିଲାଗି ବିସ୍ତୃତ କାର୍ଯ୍ୟକ୍ରମ ସ୍ଥିର କରିଥାନ୍ତା ଏବଂ ଜୟପ୍ରକାଶ ନାରାୟଣ ପାଟନା ଫେରି ଯାଇଥାଆନ୍ତେ । ତେଣୁ ମୁଖ୍ୟ ନେତାମାନଙ୍କୁ ଦିଲ୍ଲୀରେ ପାଇବାର ସୁଯୋଗ ସରକାରଙ୍କୁ ମିଳିଗଲା । ସେହି ଉଦ୍ଦେଶ୍ୟରେ ରାତିଅଧରେ ଗିରଫଦାରୀ ଚାଲିଲା, ଯେମିତି ୧୯୪୨ ମସିହାରେ ବ୍ରିଟିଶ୍ ସରକାର ମହାତ୍ମା ଗାନ୍ଧୀ ଇତ୍ୟାଦିଙ୍କୁ ଗିରଫ କରି ଅଜଣା ସ୍ଥାନକୁ ନେଇଯାଇଥିଲା । ଜୟପ୍ରକାଶ ନାରାୟଣ ଓ ମୋରାରଜୀ ଦେଶାଇଙ୍କୁ ହରିଆନାର ଏକ ବଙ୍ଗଳାରେ ନେଇ ରଖାଯାଇଥିଲେ ମଧ୍ୟ ପରସ୍ପର ଭିତରେ ଆଉ କୌଣସି ସମ୍ପର୍କ ସ୍ଥାପନ କରିବାର ସୁଯୋଗ ନଥିଲା । କେବଳ ଗଲାବେଳେ ମୋରାରଜୀ କହିବାର ଶୁଣାଗଲା "ଜୋ ଭଗବାନ୍‌କୀ ମର୍ଜି" । ଅନ୍ୟାନ୍ୟ ନେତାମାନଙ୍କୁ ବିଭିନ୍ନ ଜେଲକୁ ପଠାଇ ଦିଆଗଲା ଏବଂ କିଏ କେଉଁଠି ରହିଲେ ଜାଣିବାର ଉପାୟ ନଥିଲା । ସରକାରୀ ସୂତ୍ରରୁ ସମ୍ବାଦ ମିଳେ ଯେ, କେତେକ ମୁଖ୍ୟ ନେତାଙ୍କର ଗିରଫ ତାଲିକା ଦିଲ୍ଲୀରେ କରାଗଲା ଏବଂ ବାକୀ ସାଧାରଣ ଭାବରେ ଜନ ସଙ୍ଘର୍ଷ ସମିତିର ସଦସ୍ୟମାନଙ୍କୁ ଗିରଫ କରିବାର ନିର୍ଦ୍ଦେଶ ଦିଆଯାଇଥିଲା । ସେହି ଭାବରେ ପ୍ରଦେଶମାନଙ୍କରେ ପ୍ରଥମ ଦୁଇଦିନ ଗିରଫଦାରୀ ହେଲା । ପରେ ରାଷ୍ଟ୍ରୀୟ ସ୍ୱୟଂସେବକ ସଙ୍ଘ, ଆନନ୍ଦମାର୍ଗ ଇତ୍ୟାଦି ସଙ୍ଗଠନକୁ ବେଆଇନ ଘୋଷଣା କଲା ପରେ ସେମାନଙ୍କୁ ମଧ୍ୟ ବହୁସଂଖ୍ୟାରେ ଗିରଫ କରାଯାଇଥିଲା ।

ଏ ଆନ୍ଦୋଳନରେ ମୋଟ କେତେ ଗିରଫ ହୋଇଥିଲେ ଏପର୍ଯ୍ୟନ୍ତ ସଠିକ ସମ୍ବାଦ କେଉଁଠି ପ୍ରକାଶିତ ହୋଇନାହିଁ; ମାତ୍ର ୧୯୪୨ ଆନ୍ଦୋଳନ ଅପେକ୍ଷା ଯେ ଅଧିକ ବ୍ୟକ୍ତି ଗିରଫ ହୋଇଥିଲେ ଏଥିରେ ସନ୍ଦେହ ନାହିଁ । ଏ ଗିରଫଦାରୀର ଆଉ ଏକ ବିଶେଷତ୍ୱ ହେଉଛି ଗିରଫ ହୋଇଥିବା ବ୍ୟକ୍ତିଙ୍କ ଭିତରୁ ଅଧିକାଂଶ ଯୁବକ, ଛାତ୍ର ଓ ଶିକ୍ଷିତ । କୌଣସି ଗଣ-

ଆନ୍ଦୋଳନର କାର୍ଯ୍ୟକ୍ରମ ନ ଥିଲା କିମ୍ବା କୌଣସି ରାଜନୀତିକ ଦଳ ଦୀର୍ଘ ସଂଗ୍ରାମ ଲାଗି ପ୍ରସ୍ତୁତ ବି ନଥିଲେ । ବିହାରରେ ଯେଉଁଠି ବହୁ ଆଗରୁ ପ୍ରସ୍ତୁତି ହୋଇଥିଲା, ସେଠାରେ କେତେକ ସ୍ଥଳରେ ଟିକସ ବନ୍ଦ ଆଦି ଆନ୍ଦୋଳନ ହେତୁ କିଛି ପରିମାଣରେ ସାଧାରଣ ଲୋକ ଏଥିସହ ସଂପୃକ୍ତ ହୋଇଥିଲେ । ଗୁଜରାଟରେ ମଧ୍ୟ ଗାନ୍ଧିଜୀଙ୍କ ପନ୍ଥା ଅନୁସାରେ ରୀତିମତ ସତ୍ୟାଗ୍ରହ ଓ ଆଇନଭଙ୍ଗ କରି ଦଳକୁ ଦଳ ଗିରଫ ହୋଇଥିଲେ । ନଚେତ୍ ସରକାର ସହ ପ୍ରତ୍ୟକ୍ଷ ସଙ୍ଘର୍ଷ ଲାଗିଥିବାର ସେପରି ରିପୋର୍ଟ ମିଳେନାହିଁ ।

ମାଙ୍କେକର ତାଙ୍କ ପୁସ୍ତକରେ ଯେଉଁ ହିସାବ ଦେଇଛନ୍ତି ସେଥିରେ ଅଛି—ଦିଲ୍ଲୀରେ ଜୁନ୍ ୨୫-୨୬ରେ ପ୍ରଥମ ଦଫାରେ ୮୩ ଜଣ ଏବଂ ୨୬-୨୭ରେ ଦ୍ୱିତୀୟ ଦଫାରେ ଗିରଫ ହେଲେ ୨୫୩ । ସାରା ଦେଶରେ ୧୯୭୫ ଜୁନ୍ ୨୫ରୁ ୧୯୭୭ ମାର୍ଚ୍ଚ ୮ରେ ଏମର୍ଜେନସି ଉଠିବା ପର୍ଯ୍ୟନ୍ତ 'ମିସା'ରେ ହୋଇଥିବା ଅଟକବନ୍ଦୀଙ୍କ ସଂଖ୍ୟା ହେଲା ୩୪,୬୩୦ । ଏଥିରୁ ୬୨୪୪ ଜଣ ସାଧାରଣ ମିସା ଦଫାରେ ଗିରଫ ହୋଇଥିଲେ; ବାକି ୨୫,୩୮୬ ଜଣ ମିସାର ଏମର୍ଜେନସି ଦଫା ୧୬ରେ ଅଟକ ହୋଇ ରହିଥିଲେ ।

ମାର୍ଚ୍ଚ ୧୯୭୭ ନିର୍ବାଚନ ବେଳକୁ ମଧ୍ୟ ପ୍ରାୟ ୩୪ ହଜାର ବନ୍ଦୀ ଜେଲ ଭିତରେ ଥିଲେ । ବିହାରରେ ରହିଥିଲେ ୨୧୧୬, ଗୁଜରାଟରେ ୮୦୫ ଏବଂ ଆନ୍ଧ୍ର ଓ ଦିଲ୍ଲୀରେ ଯଥାକ୍ରମେ ୧୦୨୮ ଏବଂ ୧୦୧୧ । କେହି କେହି ଦେଢ଼ଲକ୍ଷ ବୋଲି ଲେଖିଛନ୍ତି । 'An eye to India' ବହିରେ ଡେଭିଡ଼ ସେଲବୋର୍ଣ୍ଣ ଏ ବିଷୟରେ କହିଛନ୍ତି—ଓ୍ୱାଶିଂଟନ୍‌ରେ ଆଇନମନ୍ତ୍ରୀ ଗୋଖଲେ କହିଛନ୍ତି, ମାତ୍ର କେତେ ଶହ ଲୋକ ରାଜନୀତିକ ଅପରାଧରେ ବନ୍ଦୀ ଅଛନ୍ତି । ଗୃହ-ସଚିବ ସେମିତି ହିଂସା ପ୍ରଚାର କରୁଥିବାରୁ ୬୦୦୦ ବ୍ୟକ୍ତି ଗିରଫ ହୋଇଛନ୍ତି ବୋଲି ପ୍ରକାଶ କରିଛନ୍ତି । କିନ୍ତୁ ଏସବୁ ଶହ ହଜାର ସାଙ୍ଗରେ ଆହୁରି କେତେ ଶହ ହଜାର ମିଶାଇ ବୁଝିବାକୁ ପଡ଼ିବ । ଆମ୍ନେଷ୍ଟି ଇଣ୍ଟରନେସନାଲ ଦେଶରେ ଗିରଫ ହୋଇଥିବା ସବୁ ବ୍ୟବସ୍ଥାପକଙ୍କ (ପାର୍ଲିମେଣ୍ଟ ମେମ୍ବର ସହ) ତାଲିକା ବାହାର କରିଛନ୍ତି । ମଧ୍ୟପ୍ରଦେଶରେ କେବଳ ମିସାରେ ୧୩୦୦୦ ଜୁନ ୭୫ ଏବଂ ଫେବୃୟାରୀ ୧୯୭୬ ଭିତରେ ଗିରଫ ହୋଇଛନ୍ତି । କର୍ଣ୍ଣାଟକର ସିଆରି ଜିଲାରେ ନଭେମ୍ବର ଡିସେମ୍ବର ଭିତରେ ୧୦,୦୦୦; ଦିଲ୍ଲୀରେ ଗୋଟିଏ ଦିନରେ ୬୦୦ ଶିକ୍ଷକଙ୍କ ଗିରଫଦାରି —ଏମିତି ଯାହା ସବୁ ବିବରଣୀ ମିଳିଛି, ସେଥିରେ ଗିରଫଦାରି ସଂଖ୍ୟା ଯେ ଖୁବ୍ ବେଶି ଏଥିରେ କୌଣସି ସନ୍ଦେହ ନାହିଁ । ବିରିବିରି ବିରୋଧୀ ନେତା ଓ ବ୍ୟକ୍ତିମାନଙ୍କୁ ଗିରଫ କରାଯାଉଥାଏ, କେତେକ ଛାଡ଼ପାଇଯାଆନ୍ତି, ପୁଣି ଗିରଫ ହେଉଥାଆନ୍ତି ଏବଂ କେତେକ କ୍ଷମା ମାଗି ଆସିଗଲେ ବୋଲି ତାଙ୍କୁ ସେ ତାଲିକାରେ ରଖାଯାଏ ନାହିଁ । କିଷନ୍‌କାନ୍ତଙ୍କ କହିବାନୁସାରେ, ନଭେମ୍ବର ୧୯୭୫ ସୁଦ୍ଧା ଏକ ଲକ୍ଷରୁ ବେଶି ଲୋକ ଜେଲରେ ରହିସାରିଥିଲେ । ତାଙ୍କ କହିବାନୁସାରେ, ୧୯୭୬ ଜାନୁୟାରୀ ମାସରେ ସୁପ୍ରିମ କୋର୍ଟରେ ଭାରତର ସହକାରୀ ସଲିସିଟର ଜେନେରାଲ କହିଲେ ଯେ—ଅଦାଲତ ଜରିଆରେ ନିଜର ବ୍ୟକ୍ତିଗତ

ସ୍ୱାଧୀନତା ଅଧିକାର ରକ୍ଷା ନିମନ୍ତେ କୌଣସି ପ୍ରତିକାର ପାଇବାର ବାଟ ନ ଥିଲା । ସେ ଏକଦମ୍ ନିରପରାଧ ହୋଇଥାଉ, କିମ୍ବା ବେଆଇନ ଓ ମିଥ୍ୟା ସମ୍ବାଦରେ ତାକୁ ପଛକେ ଗିରଫ କରାଯାଇଥାଉ, କିମ୍ବା କୌଣସି କାରଣ ନ ଥାଇ ପଛକେ ଧରାହୋଇ-ଯାଇଥାଆନ୍ତୁ, ଅଦାଲତ ଜରିଆରେ ପ୍ରତିକାର ମିଳିବ ନାହିଁ । ଏଭଳିକି, ତଳିଆ ପୁଲିସ କର୍ମଚାରୀ ବି ଗିରଫ କରିନେଲେ କିମ୍ବା କାହାକୁ ହତ୍ୟା କରିଦେଲେ ଲୋକ ମୁଣ୍ଡରେ ହାତ ଦେଇ ବସିବ ସିନା—କୋର୍ଟ କଚେରିରେ ପ୍ରତିକାର ପାଇପାରିବ ନାହିଁ । ଏଭଳି ଯେଉଁଠି ପରିସ୍ଥିତି ସେଥିରେ ସଂଖ୍ୟା ଖୋଜି ବୁଲିବା ବିଡ଼ମ୍ବନା । ଲୋକଙ୍କ ଜୀବନ ସତେ କି ପିଲାଖେଳ !

ଏ ଅତ୍ୟାଚାର ଓ ଆତଙ୍କ ଏତେ ବେଶି ହେଲା ଯେ, ଏମର୍ଜେନ୍ସି ଜାରି ହେବାର ପ୍ରାୟ ମାସକ ପରେ ୯୦ ବର୍ଷ ବୟସ୍କ ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଓ ପଞ୍ଜାବର ପୂର୍ବତନ ମୁଖ୍ୟମନ୍ତ୍ରୀ ଭୀମସେନ ସାଚ୍ଚାର ପ୍ରମୁଖ ଏ ଉତ୍ପୀଡ଼ନ ଦେଖି ଧୈର୍ଯ୍ୟ ଧରି ରହିପାରିଲେ ନାହିଁ ଓ ଇନ୍ଦିରା ଗାନ୍ଧୀଙ୍କୁ ଏକ ପତ୍ରରେ ସେମାନେ ଲେଖିଲେ

"ଆମର କୌଣସି ରାଜନୀତିକ ଉଦ୍ଦେଶ୍ୟ ନାହିଁ । ମଣିଷର ସ୍ୱାଧୀନତା ଓ ମର୍ଯ୍ୟାଦା ରକ୍ଷା କରିବା ଆମର ଧର୍ମ । ଜରୁରୀକାଳୀନ ବ୍ୟବସ୍ଥା ଜାରି କରିବାର କ୍ଷମତା କେନ୍ଦ୍ର ସରକାରର ରହିଛି; ତାର ଆମେ ବିରୋଧ କରୁନାହୁଁ । କିନ୍ତୁ ଆମେ ଯେଉଁ ସ୍ୱାଧୀନତା ଲାଗି ଲଢ଼ାଇ କରିଥିଲୁ, ସେଥିରେ କିଣ ଏଭଳି ଦୃଶ୍ୟ ଦେଖି ସ୍ଥିର ହୋଇ ରହିପାରିବୁ ? କେହି ମନଖୋଲି କଥାବାର୍ତ୍ତା କରୁନାହାନ୍ତି । କାଲି ସକାଳେ ଯେଉଁମାନେ ଆପଣଙ୍କ ମନ୍ତ୍ରିମଣ୍ଡଳରେ ଥିଲେ କିମ୍ବା ରାଜ୍ୟମାନଙ୍କର ମୁଖ୍ୟମନ୍ତ୍ରୀ ବା ମନ୍ତ୍ରୀ ହୋଇଥିଲେ, ସେମାନେ ସମସ୍ତେ ଦେଶଦ୍ରୋହୀ—ଏହା କେହି ବିଶ୍ୱାସ କରିବ ? ଭୟ ଚାରିଆଡ଼େ ବିରାଜୁଛି; ଏପରିକି କଫି ଦୋକାନରେ କଥାବାର୍ତ୍ତା ହେବାବେଳକୁ ଲୋକ ଚାରିଆଡ଼କୁ ଆଗ ଚାହୁଁଛି । ଗାନ୍ଧିଜୀ ଓ ଜବାହାରଲାଲ ନେହେରୁଙ୍କ ସହିତ ଆମେ ସମସ୍ତେ ଭୟର ଦାନବକୁ ବଧ କରିବା ନିମନ୍ତେ ସର୍ବସ୍ୱ ତ୍ୟାଗ କରିଥିଲୁ । ସେହି ରାକ୍ଷସ ପୁଣି ଆସି ଆମକୁ ଗ୍ରାସ କରିବ ଏବଂ ଆମେ ଆଖିବୁଜି ବସିଥିବା—ଏହା ଅସମ୍ଭବ—ଆମେ ଏହାର ଜବାବ ଦେବୁ । ଆମପ୍ରତି ଆପଣ ଯେମିତି ବ୍ୟବହାର କରନ୍ତୁ ପଛକେ, ୧୯୭୫ ଅଗଷ୍ଟ ୯ ତାରିଖରୁ ଆମେ ଆମର କଥା କହିବାର, ସଭା-ସମିତି କରିବାର ଏବଂ ସମ୍ବାଦପତ୍ରର ପ୍ରକାଶ୍ୟ ସ୍ୱାଧୀନତା ଘୋଷଣା କରିବୁ ।

ସରକାରକୁ ଅଡୁଆରେ ପକାଇବା କିମ୍ବା ଅଯଥା ଆଲୋଡ଼ନ ସୃଷ୍ଟି କରିବା ଆମର ଉଦ୍ଦେଶ୍ୟ ନୁହେଁ । ଜାତିପିତାଙ୍କ ମହାନ୍ ନେତୃତ୍ୱର ଆହ୍ୱାନରେ ପ୍ରେରିତ ହୋଇ ଯେଉଁ ଦେଶମାତୃକାର ବନ୍ଧନ ମୋଚନରେ ଆମେ ଯତ୍‌କିଞ୍ଚିତ ଅଂଶ ଗ୍ରହଣ କରିଥିଲୁ, ସେହି ଜନ୍ମଭୂମିର ପାଦତଳେ ଆମର ଆତ୍ମକ୍ଳେଶ ଏକ ନଗଣ୍ୟ ନୈବେଦ୍ୟ ହେବ ।"

୧୨-୮-୭୫ ରେ ଏହି ବିବୃତିର ଓଡ଼ିଆ ଅନୁବାଦ କରାଯାଇ ଶ୍ରୀମତୀ ରମା ଦେବୀଙ୍କ ଦସ୍ତଖତ୍‌ରେ ବହୁ ସଂଖ୍ୟାରେ ଓଡ଼ିଶାର ଗ୍ରାମାଞ୍ଚଳେ ବଣ୍ଟନ ହୋଇଥିଲା । ତହିଁରେ ରମା ଦେବୀ ଲେଖିଥିଲେ—"ପାର୍ଲିମେଣ୍ଟରେ ତରବର ହୋଇ ସଂବିଧାନ ସଂଶୋଧନ କରି ନିଜେ କରିଥିବା ଦୁର୍ନୀତିରୁ ଉଦ୍ଧାରପିବା ପାଇଁ ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟର ପ୍ରତିବାଦ ସାହସର ସହିତ କରିବାପାଇଁ ଆପଣ ଆଗଭର ହେଲେ ଦେଶ କ୍ରମେ ଯେଉଁ ବିପଦ ଆଡ଼କୁ ଗତି କରୁଛି, ସେଥିରୁ ରକ୍ଷାପାଇବ ।"

ରମାଦେବୀର ନମସ୍କାର ।

ଭୀମସେନ ସାଚ୍ଚରଙ୍କ ବ୍ୟତୀତ ଲୋକସେବକମଣ୍ଡଳର ସାଧାରଣ ସମ୍ପାଦକ ସେବକ ରାମ ପ୍ରଭୃତି ଆଠଜଣ ଏହି ପତ୍ର ଲେଖିଥିଲେ । ଏପରି ବୟସ୍କ ରଚନାତ୍ମକ କର୍ମୀଙ୍କ ସହିତ କଥାବାର୍ତ୍ତା ହେବା ଦୂରେ ଥାଉ, ଇନ୍ଦିରା ସରକାର ଏମାନଙ୍କୁ ଜେଲରେ ଭର୍ତ୍ତି କରିବା ନିମନ୍ତେ ତିଳେ ହେଲେ କୁଣ୍ଠା ବୋଧ କଲେନାହିଁ । ଏହିପରି କେତେ ଯୁବକ, ବୃଦ୍ଧ ଲୋକଙ୍କୁ ଯେ ଅନ୍ୟାୟରେ ଖାମଖିଆଲ ଭାବରେ ଦେଶରେ ଗିରଫ କରାଯାଇଥିଲା, ତାର ହିସାବ ପ୍ରକୃତରେ କେହି ରଖିପାରିବନାହିଁ ।

ଏ ଅତ୍ୟାଚାରର କାହାଣୀ ବିଭିନ୍ନ ଭାବରେ ବର୍ଣ୍ଣନା କରାଯାଇପାରେ । ମାତ୍ର ମୋଟାମୋଟି କହିଲେ ଇଂରେଜ ଶାସନ ଅମଳରେ ଯେଉଁ ରାଉଲାଟ୍ ଆଇନ ଜାରି ହୋଇଥିଲା ଏବଂ ଯାହାର ପ୍ରତିବାଦ ସ୍ୱରୂପ ମହାତ୍ମା ଗାନ୍ଧୀ ଏ ଦେଶରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଥିଲେ, ଏହା ପୁଣି ସେହି ଯୁଗକୁ ଫେରିଯିବା ସାଙ୍ଗେ ସମାନ; ଅର୍ଥାତ୍ ସରକାର ବିରୁଦ୍ଧରେ ଅପିଲ ନାହିଁ, ଦଲିଲ ନାହିଁ କି ଓକିଲ ନାହିଁ; ଆଇନ ନାମରେ ମନଇଚ୍ଛା ଶାସନ । ଏହି କାଳ ଭିତରେ ଦେଶରେ ସର୍ବତ୍ର ପୁଲିସ ଓ ରାଜସ୍ୱ ବିଭାଗ କର୍ମଚାରୀଙ୍କ ଦ୍ୱାରା ଅଧିକ ପରିମାଣରେ ଲାଞ୍ଚ ଘୁସ୍ ବ୍ୟାପିଗଲା । ସୁଖ ସ୍ୱଚ୍ଛନ୍ଦ ସିଂହାସନରେ ବସି ଇନ୍ଦିରା ଗାନ୍ଧୀ କିଛି ଜାଣିପାରୁନଥିଲେ ଏବଂ ଦେଶଲୋକଙ୍କର ଅକୁଣ୍ଠ ସମର୍ଥନ ତାଙ୍କ ପ୍ରତି ଦିନକୁଦିନ ବୃଦ୍ଧିପାଉଛି ଭାବି ନିଜର ପାରିବାରିକ ଶାସନକୁ ଆହୁରି ସୁଦୃଢ଼ କରିବାର କଳ୍ପନା-ରାଜ୍ୟରେ ଡୁବି ରହିଗଲେ; ବାସ୍ତବତାର ବହୁ ଉପରେ ରହିଲେ; କ୍ରମେ ସମ୍ପୂର୍ଣ୍ଣ ବିଚ୍ଛିନ୍ନହୋଇ ନିଜର କ୍ଷୁଦ୍ର ଗୋଷ୍ଠୀ ଭିତରେ ଆବଦ୍ଧ ହୋଇ-ଗଲେ । ଭାରତବର୍ଷକୁ ସେ ଏକ ବିରାଟ ଜେଲଖାନାରେ ପରିଣତ କରିଦେଲେ ଏବଂ ସ୍ୱୟଂ ମଧ୍ୟ ଜେଲ ଅପେକ୍ଷା ଆହୁରି ଏକ ସଂକୀର୍ଣ୍ଣ ଗଣ୍ଡି ଭିତରେ ଆବଦ୍ଧ ହୋଇ ରହିଲେ । ଦେଶ କ୍ରମେ ଅଧୋଗତି ଆଡ଼କୁ ଆସିଲା ଏବଂ ସେହି ଅଧୋଗତିରେ ଶେଷକୁ ଇନ୍ଦିରାଙ୍କ ସୁଖସ୍ୱପ୍ନ ଭାଙ୍ଗିପଡ଼ିଲା ।

ଉପରେ ସବୁ ଶାନ୍ତ ରହିଛି ବୋଲି ମନେକରାଯାଉଥିଲେ ସୁଦ୍ଧା, ଦିଲ୍ଲୀରେ ସେହି ଦିନହିଁ ନାନାଜୀ ଦେଶମୁଖ ପ୍ରଭୃତି କେତେକ ନେତା ପୁଲିସ ହାବୁଡ଼ରୁ ବାହାରିଯାଇ ଗୁପ୍ତ ସଙ୍ଗଠନ ଆରମ୍ଭ କରିଦେଇଥିଲେ । ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ଶହ ଶହ ଶୃଙ୍ଖଳିତ

ଶାଖା ଓ ସୈନିକମାନେ ଦେଶସାରା ଖେଳିଗଲେ । ଜୁନ ୨୯ରୁ ଜୁଲାଇ ୫ ପର୍ଯ୍ୟନ୍ତ ଯେ ସତ୍ୟାଗ୍ରହ ଆନ୍ଦୋଳନ ହେବାର ଥିଲା, ତାହା ସେତେ ବୃହତ୍ ଆକାରରେ ନ ହୋଇଥିଲେ ବି, ଦିଲ୍ଲୀରେ ପ୍ରଧାନମନ୍ତ୍ରୀଙ୍କ ବାସଭବନରେ, ବିଶ୍ୱବିଦ୍ୟାଳୟରେ ଏବଂ ବିଭିନ୍ନ ସ୍ଥାନରେ ବିକ୍ଷୋଭ ପ୍ରଦର୍ଶନ ହୋଇଥିଲା । ଏପରି ଭାବେ ଏକ ଜବରଦସ୍ତ ଗୋପନୀୟ ସଂଗଠନ ଛିଡ଼ାହୋଇଗଲା । ବହୁସଂଖ୍ୟାରେ ଲିଫ୍‌ଲେଟ୍ ପ୍ରକାଶକରାଯାଇ ଛପାଇ ବଣ୍ଟାଗଲା ।

ଏମର୍ଜେନ୍‌ସି ଘୋଷଣା ବେଳକୁ ଜର୍ଜ ଫର୍ଣ୍ଣାଣ୍ଡିସ ଓଡ଼ିଶାରେ ଥାଆନ୍ତି । ସେ ଏହି ଓଡ଼ିଶାରୁ ହିଁ ଲୁଚି ପଳାଇଗଲେ ଓ ସାରା ଭାରତବ୍ୟାପୀ ଗୁପ୍ତ ସଂଗଠନ ଗଢ଼ି ଚାରିଆଡ଼େ ସମ୍ପର୍କ ସ୍ଥାପନା କଲେ । ବିଦେଶରେ ପ୍ରଚାର ଓ ଦେଶ ଭିତରେ ନାନାପ୍ରକାର ବେଆଇନ କାର୍ଯ୍ୟ ଖୁବ୍ ବେଗରେ ଆରମ୍ଭ ହୋଇଗଲା । ଗୁଜରାଟ ଓ ତାମିଲନାଡ଼ୁରେ ପ୍ରକାଶ୍ୟଭାବରେ ଏକଚ୍ଛତ୍ର ଶାସନ ବିରୁଦ୍ଧରେ ଜନବିଦ୍ରୋହ ଦେଖାଦେଲା । ଏହା ବିଦେଶର ସମ୍ବାଦପତ୍ରମାନଙ୍କରେ ମଧ୍ୟ ପ୍ରକାଶିତ ହେଉଥିଲା ।

ଲଣ୍ଡନର 'ଟାଇମ୍‌ସ' ପତ୍ରିକା ୧୯ ଜୁଲାଇରେ ଲେଖିଲେ—ଏହି ସପ୍ତାହରେ ଇନ୍ଦିରା ଗାନ୍ଧୀଙ୍କ ବିରୋଧୀମାନେ ଏକ ଗୋପନୀୟ ସଂଗଠନ ଭାରତରେ ଆରମ୍ଭ କରି ଦେଇଛନ୍ତି । ସେମାନେ "ଭାରତୀୟ ଫାସିଷ୍ଟ-ରୁଷୀୟ ମେଣ୍ଟ" ବିରୁଦ୍ଧରେ ଜାତୀୟ ସଂଗ୍ରାମ ଘୋଷଣା କରିଛନ୍ତି । ଏହି ଗୁପ୍ତ ସଂଗଠନ ତରଫରୁ ଆଇନ ଅମାନ୍ୟ ଆନ୍ଦୋଳନ ଲାଗି ବିଶେଷ ନିର୍ଦ୍ଦେଶନାମା ପ୍ରକାଶ ପାଉଛି ଏବଂ ଗୁପ୍ତ ରେଡ଼ିଓରେ ମଧ୍ୟ ପ୍ରଚାର କରାଯାଉଛି ।

ସ୍ୱାଧୀନ ଭାରତରେ ଏକଚ୍ଛତ୍ର ଶାସନ ବିରୁଦ୍ଧରେ ଏହା ହେଉଛି ସଂଗଠିତ ଆନ୍ଦୋଳନ । ଲୁକ୍‌କାୟିତ ସଂଗଠନ ତରଫରୁ ବେଶ୍ ଗୋଟିଏ ସୁନ୍ଦର ଛାପା ପତ୍ରିକା ପ୍ରକାଶପାଉଛି । ଏହା ଦିଲ୍ଲୀ ଓ ବମ୍ବେରେ ବଣ୍ଟାଯାଉଛି । ସେଥିରେ ସବୁ ରାଜନୀତିକ ଦଳ ଓ ବ୍ୟକ୍ତିମାନଙ୍କୁ ପରସ୍ପରର ମତଭେଦ ଭୁଲି ଏକତ୍ର ହୋଇ "ଭାରତରେ ଗଣତନ୍ତ୍ର ଫେରାଇ ଆଣିବା ନିମନ୍ତେ" ସଂଗ୍ରାମ କରିବା ଲାଗି ଆହ୍ୱାନ କରାଯାଇଛି ।

ସେଥିରେ ଲେଖାଅଛି—ଆଦର୍ଶଗତ ବିବାଦ କିମ୍ବା ବ୍ୟକ୍ତିବିଶେଷର ପରସ୍ପର ସହି ସଂଘର୍ଷର ଏହା ମୁହୂର୍ତ୍ତ ନୁହେଁ । ଆମ ସମସ୍ତଙ୍କର ଲକ୍ଷ୍ୟ ହେଉଛି ଏକ—ଆମେ ଫାସିଜିମ୍‌କୁ ପରାସ୍ତ କରିବା, ଭାରତରେ ମୌଳିକ ସ୍ୱାଧୀନତା ଏବଂ ପୁନର୍ବାର ରାଜନୀତିକ ସଂଗଠନ-ଗୁଡ଼ିକର କାର୍ଯ୍ୟ କରିବାର ପୂର୍ଣ୍ଣ ଶକ୍ତି ଫେରାଇ ଆଣି ଗଣତନ୍ତ୍ରର ପୁନରୁଦ୍ଧାର କରିବା । ଶ୍ରୀମତୀ ଗାନ୍ଧୀଙ୍କ ଏକଚ୍ଛତ୍ରବାଦକୁ ଧ୍ୱଂସ କର, ବୁଲେଟିନ ଓ ସାହିତ୍ୟ ବଣ୍ଟନ କର, କାନ୍ଥ-ବାଡ଼ରେ ପ୍ଲାକାର୍ଡ଼ମାନ ଲଗାଅ, ଧର୍ମଘଟ କର, ରେଡ଼ିଓ ଟ୍ରାଞ୍ଜିଷ୍ଟରର ବ୍ୟବହାର କର ଏବଂ ସକଳ ନ୍ୟାୟସଙ୍ଗତ ପନ୍ଥା ଅବଲମ୍ବନ କରି ସରକାରକୁ ଅଚଳ କରିଦିଅ—ଘରେ ଘରେ ଗୁଜବ ପ୍ରଚାର ହୋଇଯାଉ ।

ସେହି ପ୍ରଗ୍ରୁପର ପତ୍ରିକାରେ ଲେଖା ହୋଇଛି— ପୁଣି ୧୯୪୨ର 'ଭାରତ ଛାଡ଼' ଆନ୍ଦୋଳନ ପରେ ଏ ସରକାର ବିରୁଦ୍ଧରେ ସଂଗ୍ରାମ କରିବାର ବେଳ ଆସିଗଲା । ଦେଶର ଫାସିଷ୍ଟ ଶାସକଙ୍କୁ ଚେତାଇଦେବାକୁ ହେବ ଯେ, ଏ ଦେଶରେ ତାଙ୍କର ଫାସିଜମ୍ ଏବଂ ତାଙ୍କର ବିଦେଶୀ ପ୍ରଭୁ ସୋଭିଏଟ ରୁଷର ସ୍ୱାର୍ଥରକ୍ଷା କରିବା ଲାଗି ଷଡ଼ଯନ୍ତ୍ର ଆଉ ଚାଲି-ପାରିବ ନାହିଁ ।

ଇଂରେଜଙ୍କ ଅମଳରେ ବି ଏଭଳି ଦମନାସ୍ତ୍ର ପ୍ରୟୋଗ ହୋଇନଥିଲା । ଫାସିଷ୍ଟ ଅତ୍ୟାଚାରୀ ଶାସକ ସମ୍ବାଦପତ୍ର ଉପରେ ଯେଉଁଭଳି କଟକଣା ଜାରିକରିଛନ୍ତି, ତାହା ସ୍ୱାଧୀନତା ସଂଗ୍ରାମବେଳେ ବି ହୋଇନଥିଲା । ଇଂରେଜମାନେ ଆମ ଦେଶରେ ପ୍ରଭୁତ୍ୱ କରୁଥିଲେ; ମାତ୍ର ସେମାନେ ଫାସିଷ୍ଟ ନ ଥିଲେ । ସେଥିଲାଗି ଇଂରେଜ ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମ ଭଦ୍ରଭାବରେ କରିବା ସମ୍ଭବ ହେଲା । ବ୍ୟକ୍ତିଗତ ଭାବରେ ଇଂରେଜମାନଙ୍କର ହେଲେ ବିବେକ ଥିଲା—ଶ୍ରୀମତୀ ଗାନ୍ଧୀଙ୍କର ତାହା ବି ନାହିଁ । ଇଂରେଜ ଶାସକଙ୍କୁ ହେଲେ ତାଙ୍କ ନିଜ ଦେଶରେ ପାର୍ଲିମେଣ୍ଟ ଆଗରେ ସେମାନଙ୍କ କାର୍ଯ୍ୟ ବିଷୟରେ କୈଫିୟତ ଦେବାକୁ ପଡ଼ୁଥିଲା; ମାତ୍ର ଇନ୍ଦିରା ଗାନ୍ଧୀ ତ ନିଜେ ଆଇନ ଏବଂ ଆଉ ସବୁ—ତାଙ୍କ ପାଖରେ କେତେକ ଖୋସାମଦ୍‌କାରୀ ହିଁ କେବଳ ଅଛନ୍ତି । ଏ ଷଡ଼ଯନ୍ତ୍ରର ମୁକାବିଲା କରିବାକୁ ହିଁ ପଡ଼ିବ ।

ଏ ଗୁପ୍ତ ସଂଗଠନର ଚାଳକ ଓ ସ୍ରଷ୍ଟା ଥିଲେ ଜର୍ଜ ଫର୍ଣ୍ଣାଣ୍ଡିସ୍ । ସେ ନିଜ ଦସ୍ତଖତରେ ଏକ ନିବେଦନପତ୍ର ଦେଶସାରା ବଣ୍ଟନ କଲେ । ୧୯୪୩ରେ ସ୍ୱାଧୀନତା ସଂଗ୍ରାମୀଙ୍କ ପାଖକୁ ଜୟପ୍ରକାଶ ନାରାୟଣ ଲେଖିଥିବା ପତ୍ରର ଉଦ୍ଧାର କରି ସେ ଲେଖିଲେ :

"ବୀରର ଅହିଂସା ଯଦି ଠିକ୍ ରୂପେ ପ୍ରୟୋଗ କରାଯାଏ, ତେବେ ହିଂସାର ଆବଶ୍ୟକତା ନାହିଁ; ମାତ୍ର ଯେଉଁଠି ସେଭଳି ଅହିଂସା ନାହିଁ, ସେଠି ଅହିଂସା ବାହାନାରେ କାପୁରୁଷ ପରି ନୀରବ ରହି ଏ ବିପ୍ଳବର ପଥରୋଧ କରିବାଲାଗି ଦିଆଯିବ ନାହିଁ ।"

ଫର୍ଣ୍ଣାଣ୍ଡିସ୍ ତାଙ୍କର ଦୀର୍ଘ ପତ୍ରରେ ଦେଶସାରା ଯାହା ଚାଲିଛି ତାର ବିସ୍ତୃତ ବିବରଣ ଦେଇ ଯାହା ଲେଖିଥିଲେ, ତାର କେତେକାଂଶ ଏଠାରେ ଦିଆଯାଉଛି । ସାରା ଗୋପନ ଆନ୍ଦୋଳନଟି କିଭଳି ଢଙ୍ଗରେ ଚାଲୁଥିଲା, ତାର ଏକ ନମୁନା ପାଠକଙ୍କ ସମ୍ମୁଖରେ ରଖିଦେବା ଉଚିତ ହେବ ।

"ସଂଘର୍ଷବାହିନୀ ଗଠନ କର । ଭୁଲିଯାଅ ନିଜ ନିଜ ଭିତରର ବିବାଦ । ଫାସିଷ୍ଟବିରୋଧୀ ସଂଗଠନ ଏହାର ନାମ ହେଉ । ପ୍ରତି ପଞ୍ଚାୟତ, ଗାଁ, ବ୍ଲକ ଓ ଜିଲ୍ଲା-ସ୍ତରରେ କମିଟି ସ୍ଥାପନା କର । ଦିଲ୍ଲୀ, ବମ୍ବେ ଓ କଲିକତା ପରି ବଡ଼ ବଡ଼ ସହରରେ ପ୍ରତି ମହଲାରେ କମିଟି ସ୍ଥାପିତ ହେଉ ।

ଏଥିରେ କେହି କାହାରିକି ପରାମର୍ଶ ଦେବାକୁ ନାହିଁ; ନିଜେ ନିଜର ନେତା—ସ୍ଥାନୀୟ ପରିସ୍ଥିତି ଦେଖି ଯେମିତି କାର୍ଯ୍ୟକ୍ରମ ଠିକ୍ ମନେକରୁଛ କରିଯାଅ ।

(୧) ବୁଲେଟିନ୍ ସବୁ ଏଭଳି ପ୍ରକାରର ପ୍ରକାଶ କର ଯେଉଁଥିରେ ବିଭିନ୍ନ ସ୍ଥାନରେ ଘଟୁଥିବା ଆନ୍ଦୋଳନର ବିବରଣ କିଛିନ୍ତ ପରିମାଣରେ ରହିଯିବ; ସରକାରର ରେଡ଼ିଓ ଓ ଅନ୍ୟ ମାଧ୍ୟମରେ ଯେ ଏକତରଫା ପ୍ରଚାର ଚାଲିଛି, ତାହାର ଜବାବ ଥିବ ଏବଂ ଆଉ ଆମର ନିର୍ଦ୍ଦେଶ ରହିଥିବ ।

(୨) ଯେଉଁଠି ସମ୍ଭବ ଛାପା ନଚେତ୍ ହାତଲେଖା ପୋଷ୍ଟର ସବୁ କାନ୍ଥବାଡ଼ରେ ଲଗାଅ ।

(୩) ଏକଚ୍ଛତ୍ରବାଦ ବେଶି ଭୟକରେ ଗୁଜବ-ବାଇଦକୁ । ସମ୍ବାଦପତ୍ର ସବୁ ମିଥ୍ୟା ସମ୍ବାଦ ପରିବେଷଣ କରୁଛନ୍ତି । ତେଣୁ ଯେଉଁଠି ଆମେ ସତ୍ୟ କଥା ଜାଣୁ, ସେହି ସତ୍ୟ ଉପରେ ଭିତ୍ତିକରି ବିଷୟଟି ଏଭଳିଭାବରେ ବର୍ଣ୍ଣନା କର, ଯେପରିକି ଶତ୍ରୁପକ୍ଷରେ ଆତଙ୍କ ଖେଳିଯିବ ।

(୪) କିଛି ନା କିଛି ବାହାନାରେ ଧର୍ମଘଟ କର—ପ୍ରତିଦିନ ଏହା ଚାଲିବା ଉଚିତ । ଫାସିଷ୍ଟ ଶାସକଙ୍କୁ ଦେଖାଇଦେବାକୁ ପଡ଼ିବ ଯେ ଦେଶରେ ଶିଳ୍ପ-ଶାନ୍ତି ଅସମ୍ଭବ ଏବଂ ମଜଦୁରମାନେ ତାଙ୍କୁ ସମର୍ଥନ ଦେଉନାହାନ୍ତି ।

(୫) ସରକାରୀ ଯନ୍ତ୍ରକୁ ଅଚଳ କରିଦିଅ । ବିଶେଷ ଭାବରେ ଗମନାଗମନ ଏବଂ ସରକାରୀ ବାର୍ତ୍ତାବହ ସଂଗଠନ—ପୋଷ୍ଟଅଫିସ, ରେଲବାଇ, ଟେଲିଗ୍ରାଫ୍, ରେଡ଼ିଓ ଏସବୁ ଯେମିତି ଚଳି ନ ପାରିବ ତହିଁର ଯୋଗାଡ଼ କର ।

(୬) ଆମର ମିଲିଟାରୀ ଓ ପୁଲିସଙ୍କ ଆଗରେ ଇନ୍ଦିରା ଗାନ୍ଧୀଙ୍କର ଫାସିଷ୍ଟ ଶକ୍ତିଗୁଡ଼ିକ ଜୟପ୍ରକାଶଙ୍କ ବିରୁଦ୍ଧରେ ନାନା ମିଥ୍ୟା ପ୍ରଚାର ଚଳାଇଛନ୍ତି । ଭୟଦେଖାଇ ସେମାନଙ୍କର ଆନୁଗତ୍ୟ ନିଜ ହାତରେ ରଖିବା ଲାଗି ଉଦ୍ୟମ କରୁଛନ୍ତି । ଜୟପ୍ରକାଶ ସୈନ୍ୟ ଓ ଫୌଜଙ୍କୁ କିଛି ବିଦ୍ରୋହର ଆହ୍ୱାନ ଦେଇ ନ ଥିଲେ । ସେ କହିଥିଲେ ଯେ ଆମ ଦେଶର ସମ୍ବିଧାନକୁ ନଷ୍ଟ କରିବା ନିମନ୍ତେ, ଗଣତନ୍ତ୍ରକୁ ଧ୍ୱଂସ କରିବା ପାଇଁ ଏବଂ ଏକ-ଅଧିନାୟକବାଦ ପ୍ରତିଷ୍ଠା ଲାଗି ଇନ୍ଦିରା ଗାନ୍ଧୀ ଯେଉଁ ସବୁ ଅନ୍ୟାୟ ହୁକୁମନାମା ବାହାର କରୁଛନ୍ତି, ଆମ ଦେଶର ଦେଶଭକ୍ତ ସୈନ୍ୟବାହିନୀ ଓ ପୁଲିସ ତାର ପ୍ରତିରୋଧ କରୁ । ନେତାଜୀ ସୁଭାଷ ବୋଷ ଥରେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିବା ନିମନ୍ତେ ବିଦ୍ରୋହ କରିବା ଲାଗି ଆମ ଦେଶର ସୈନ୍ୟବାହିନୀକୁ ଆହ୍ୱାନ ଦେଇଥିଲେ; କିନ୍ତୁ ସେ କେବେ ଆମର ଭାରତୀୟ ଲୋକଙ୍କ ଉପରେ ଗୁଳି ଚଳାଇବାକୁ ପରାମର୍ଶ ଦେଇ ନ ଥିଲେ । ଜୟପ୍ରକାଶ ନାରାୟଣ ସେହିପରି ଫଉଜଶକ୍ତିଙ୍କୁ ଆହ୍ୱାନ ଦେଇଛନ୍ତି ନିରସ୍ତ୍ର ଭାରତୀୟଙ୍କୁ ଗୁଳି ମାରନାହିଁ; ଯୁବକ, ଛାତ୍ର, ନାରୀ, ଶ୍ରମିକ ଓ ଦରିଦ୍ର ବ୍ୟକ୍ତି କାହାରି ଉପରେ ଗୁଳି ଚଳାଅନାହିଁ । ସେମାନେ କିଛି ବିଦେଶୀ ଫଉଜ ନୁହନ୍ତି—ଆମରି ଭାଇପଡ଼ିଶା, ରକ୍ତମାଂସରେ ଗଢ଼ା—ସରକାର ପାଖରେ ଚାକିରି କରିଛନ୍ତି । ସେମାନଙ୍କ ଭିତରେ ଦେଶଲାଗି ପ୍ରୀତି ରହିଛି ।

# ବିଦେଶର ସମ୍ବାଦପତ୍ରମାନଙ୍କରେ ଏମର୍ଜେନ୍ସି ସମୟର ବ୍ୟଙ୍ଗଚିତ୍ର




[ କିଏ ଆସିବ ବୋଲି ଆଶା କରୁଥିଲ ? ସ୍ନୋ ହ୍ୱାଇଟ୍ ? ]




[ ଭାରତ ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ଦେଶ । ]




© Herblock in The Washington Post

**'Who's the fairest one of all?'**

[ ଦର୍ପଣ, କହ ତ କିଏ ସବୁଠାରୁ ବେଶି ସୁନ୍ଦର ! ]




— *Den som rider på en tiger vågar inte stiga av.*

Orientaliskt ordspråk

The rider of a tiger does not dare get off – Oriental proverb

[ ବାଘ ପିଠିରେ ବସିଥିବା ଲୋକ ଓହ୍ଲାଇବାକୁ ସାହସ କରେନା । ]

ଚେଷ୍ଟା ସେମାନଙ୍କ ଭିତରକୁ ପ୍ରବେଶ କର, ତାଙ୍କ ସହ ବନ୍ଧୁତା ସ୍ଥାପନ କର ଏବଂ ତାଙ୍କୁ ବୁଝାଅ ଯେ ଫାସିଷ୍ଟ ଶକ୍ତି ବିରୋଧରେ ଏହା ହେଉଛି ଜନତାର ସଂଗ୍ରାମ ।

(୭) ସବୁ ବୈଦେଶିକ ଦୂତାବାସକୁ ଦେଶରେ ଯେଉଁସବୁ ପାଶବିକ ଅତ୍ୟାଚାର ଚାଲିଛି, ତାର ବିବରଣୀ ପଠାଇଦିଅ; ଏପରିକି, ଶ୍ରୀମତୀ ଗାନ୍ଧୀଙ୍କର ବନ୍ଧୁ ସୋଭିଏଟ ରୁଷ ଦୂତାବାସକୁ ବି ଏଥିରୁ ବାଦ୍ ଦେବନାହିଁ । ସାରା ଦୁନିଆ ଜାଣୁ ଇନ୍ଦିରା ଗାନ୍ଧୀଙ୍କର ଫାସିଷ୍ଟ ଶାସନରେ ଭାରତବର୍ଷରେ କି କାଣ୍ଡ ସବୁ ଘଟୁଛି । ଯେମିତି ଦକ୍ଷିଣ ଆଫ୍ରିକା, ରୋଡେସିଆ ସରକାରକୁ ପୃଥିବୀର ବିଭିନ୍ନ ଦେଶ ଘୃଣାଚକ୍ଷୁରେ ଦେଖୁଛନ୍ତି, ଇନ୍ଦିରାଙ୍କ ଫାସିଷ୍ଟ ରାଜୁତିକୁ ସାରା ଦୁନିଆ ସେହିଭଳି ବିଚାର କରୁ ।

ଶେଷରେ କୁହାଯାଇଥିଲା ଆମର ସଂଗ୍ରାମ ହେଉଛି (୧) ଗଣତନ୍ତ୍ର ପାଇଁ, (୨) ମୌଳିକ ଅଧିକାର ପାଇଁ, (୩) ଆଇନର ଶାସନ ପାଇଁ, (୪) ଫାସିଷ୍ଟ ଏକଛତ୍ରବାଦ ବିରୁଦ୍ଧରେ, (୫) ଭାରତର ଆଭ୍ୟନ୍ତରୀଣ ବ୍ୟାପାରରେ ରୁଷର ହସ୍ତକ୍ଷେପ ବିରୁଦ୍ଧରେ, (୬) ଭ୍ରଷ୍ଟାଚାର ବିରୁଦ୍ଧରେ, (୭) ମୂଲ୍ୟବୃଦ୍ଧି ବିରୁଦ୍ଧରେ ଏବଂ (୮) ବେକାରି ବିରୁଦ୍ଧରେ ।

ମହାତ୍ମା ଗାନ୍ଧୀଙ୍କ ପଥ ଅନୁସରଣ କରି ଆମେ ଆମର ସଂଗ୍ରାମ ଚଳାଇଯିବୁ ଏବଂ ଫାସିଷ୍ଟ ଶକ୍ତି ହାତରୁ ଦେଶକୁ ମୁକ୍ତ କରିବୁ ।

ଗୋପନରେ ଦେଶରେ କିଭଳି ଆନ୍ଦୋଳନ ଚାଲିଥିଲା, ତାର ଧାରଣା ଏଇଥିରୁ କରିଯାଇପାରିବ । ଆଗରୁ କିଛି ଆନ୍ଦୋଳନ ଲାଗି ପ୍ରସ୍ତୁତ ନଥିଲା । ଏମର୍ଜେନ୍ସି ଘୋଷଣା ହେବା ପରେ, ନେତାମାନଙ୍କୁ ଗିରଫ କରିଯିବାରୁ, ଏକପ୍ରକାର ସତ୍ୟାଗ୍ରହ, ଆଇନ ଅମାନ୍ୟ ଓ ଗୋପନୀୟ ଆନ୍ଦୋଳନ ଅତି ପ୍ରତିକୂଳ ଅବସ୍ଥାରେ ତାର ପ୍ରତିରୋଧ କରିବା ନିମନ୍ତେ କରିବାକୁ ପଡ଼ିଥିଲା । ଏହା କିଭଳି କଷ୍ଟସାଧ୍ୟ, ବିଶେଷତଃ ଏକ ସ୍ୱାଧୀନ ଦେଶର ସ୍ୱାଧୀନ ସରକାର ବିରୁଦ୍ଧରେ, ତାହା ଯେକୌଣସି ବ୍ୟକ୍ତି ଅନୁମାନ କରିପାରିବ । ସେଥିରେ ପୁଣି ସରକାର ପ୍ରଚାର ଯନ୍ତ୍ର ଜରିଆରେ ନାନା ମିଥ୍ୟା ଓ ବିକୃତ ବିବରଣୀ ବରାବର ଲୋକଙ୍କ ସମ୍ମୁଖରେ ରଖାଯାଉଥିଲା । ଜର୍ଜ ଫର୍ଣ୍ଣାଣ୍ଡିସ୍ ଓ ତାଙ୍କ ସାଥୀମାନଙ୍କ ନାମରେ ଯେ ବରୋଦା ଷଡ଼ଯନ୍ତ୍ର ମକଦ୍ଦମା ନାମରେ ଏକ ଗୁରୁତର ମକଦ୍ଦମା ସରକାର ଆରମ୍ଭ କରିଥିଲେ, ତାହା ଆଉ ଏକ ଦୃଷ୍ଟାନ୍ତ । ଏ ମକଦ୍ଦମା ଅବଶ୍ୟ ଜନତା ସରକାର ପ୍ରତ୍ୟାହାର କରିନେଇଛନ୍ତି ଏବଂ ଜର୍ଜ ଫର୍ଣ୍ଣାଣ୍ଡିସ୍ ବନ୍ଦୀ ଅବସ୍ଥାରେ ଥାଇ ଲୋକସଭାକୁ ନିର୍ବାଚିତ ହୋଇଛନ୍ତି ଓ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଛନ୍ତି ।

୫ ମାସ କାରାଗାରରେ ରହିବା ପରେ ଜୟପ୍ରକାଶ ନାରାୟଣଙ୍କର ଅସୁସ୍ଥତା ବୃଦ୍ଧି ପାଇ ସେ ପ୍ରାୟ ମୃତ୍ୟୁମୁଖରେ ପହଞ୍ଚିଲାବେଳକୁ ନଭେମ୍ବର ୧୨ ତାରିଖରେ ତାଙ୍କୁ ଖଲାସ କରିଦିଆଗଲା । ସେ ଜେଲ୍‌ରେ କିଭଳି ଅବସ୍ଥାରେ ଥିଲେ ଏବଂ ତାଙ୍କୁ କିଭଳି ଦୁଃଖଭୋଗ କରିବାକୁ ପଡ଼ିଥିଲା, କାରାଗାରରେ ଲିଖିତ ତାଙ୍କର Prison Diary ବହିରୁ ଜଣାଯାଏ । ତାହା ବିଭିନ୍ନ ଭାଷାରେ ଅନୂଦିତ ହୋଇସାରିଛି । ଜୟପ୍ରକାଶ ଏପରି ଅସୁସ୍ଥ ହୋଇଥିଲେ

ଯେ ତାଙ୍କର ମୃତ୍ୟୁ ନିଶ୍ଚିତ ଭାବି ତାଙ୍କ ଶବକୁ ପାଟନା ନେବା ନିମନ୍ତେ ଆଗରୁ ସବୁ ବ୍ୟବସ୍ଥା ହୋଇସାରିଥିଲି ବୋଲି କେତେକ ସମ୍ବାଦପତ୍ର ଏବେ ପ୍ରକାଶ କରିଛନ୍ତି । ଅତୀତରେ ମହାତ୍ମା ଗାନ୍ଧୀ ଆଗା ଖାଁ ପ୍ରାସାଦରେ ୧୯୪୨ରେ ବନ୍ଦୀ ଥାଇ ଥରେ ଅନଶନ କରିଥିବାବେଳେ ତାଙ୍କର ଦାବି ଗ୍ରହଣ ନ କରି, ଅନଶନରେ ତାଙ୍କର ମୃତ୍ୟୁ ସୁନିଶ୍ଚିତ ଜାଣି, ବ୍ରିଟିଶ ସରକାର ତାଙ୍କର ଶବଦାହ ନିମନ୍ତେ ଚନ୍ଦନକାଠ ଆଦି ଆଣି ରଖାଇଥିଲି ।

କୌଣସି ଆନ୍ଦୋଳନ ଦୀର୍ଘ କାଳ ଏକେସାଙ୍ଗରେ ଚାଲିପାରେନା । ଏହା ମଧ୍ୟ ଚାଲିନଥିଲି; ମାତ୍ର ବନ୍ଦ ବି ହୋଇନଥିଲି । ଜୟପ୍ରକାଶ ନାରାୟଣ ଦୁର୍ବଳ ସ୍ୱାସ୍ଥ୍ୟରେ କାରାମୁକ୍ତ ହେବାରୁ ଏକସମୟରେ ଆନ୍ଦୋଳନ ପ୍ରତ୍ୟାହାର କରି ନେବା ନିମନ୍ତେ ତାଙ୍କୁ ପ୍ରବର୍ତ୍ତାଇବାର ଏକ ଉଦ୍ୟମ ହୋଇଥିଲା, ସରକାର ଓ ତାଙ୍କର ସମର୍ଥକଙ୍କ ଦ୍ୱାରା । ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ ପି.ଏନ୍. ଧର୍ ଏ ଦିଗରେ କିଛି ଚେଷ୍ଟା କରିଥିଲେ ଏବଂ ଜୟପ୍ରକାଶଙ୍କ କାରାମୁକ୍ତି ପରେ ଦିଲ୍ଲୀ ହାସପାତାଲରେ ସେ ପଡ଼ିଥିବାବେଳେ ତାଙ୍କ ସହ ସାକ୍ଷାତ୍ ବି କରିଥିଲେ । ସୁଗତ ଦାସଗୁପ୍ତଙ୍କୁ ମଧ୍ୟ ଏହି କାର୍ଯ୍ୟରେ ଲଗାଯାଇଥିଲି ଏବଂ ଜୟପ୍ରକାଶଙ୍କର ଅତି ବିଶ୍ୱସ୍ତ, 'ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ'ର ସମ୍ପାଦକ, ରାଧାକୃଷ୍ଣଙ୍କୁ ବି ଏଥିରେ କାଳେ ସେ କିଛି ସାହାଯ୍ୟ କରିବେ, ଏଥିନିମନ୍ତେ କିଛିଦିନ ଲାଗି ପାରୋଲରେ ମୁକ୍ତ କରାଗଲା । ଇନ୍ଦିରା ଗାନ୍ଧୀ ଦୁଇ ଦିଗରୁ ଆନ୍ଦୋଳନକୁ ଓ ଜୟପ୍ରକାଶଙ୍କ ମର୍ଯ୍ୟାଦା ଓ ପ୍ରତିଷ୍ଠାକୁ ଊଣା କରିବା ଉଦ୍ଦେଶ୍ୟରେ ଏଭଳି ଉଦ୍ୟମ କରିଥିଲେ । ଏଣେ ପାର୍ଲିମେଣ୍ଟରେ ସେ ଘୋଷଣାକଲେ ଯେ ବିରୋଧୀଦଳଗୁଡ଼ିକ ଯଦି ହିଂସା ତ୍ୟାଗ କରନ୍ତି ଏବଂ ଗଣତାନ୍ତ୍ରିକ ପନ୍ଥାରେ ବିଶ୍ୱାସ ଅଛି ବୋଲି ସ୍ୱୀକାର କରନ୍ତି, ତେବେ ତାଙ୍କ ସହିତ ମିଳାମିଶାର ପ୍ରଶ୍ନ ଉଠିପାରେ । ଏପରି ଏକ ବିବୃତି ପରେ ଯେଉଁ ବିରୋଧୀ ନେତାମାନେ ବାହାରେ ଥିଲେ, ସେମାନଙ୍କ ଭିତରେ କିଞ୍ଚିତ୍ ପରିମାଣରେ ଚର୍ଚ୍ଚା ଆରମ୍ଭ ହୋଇଗଲା । ସେମାନେ ଲିଖିତ ଓ ମୌଖିକ ବିବୃତି ଦେଇ ହିଂସା କେବେ ସେମାନଙ୍କର ଲକ୍ଷ୍ୟ ନୁହେଁ ଏବଂ ପାର୍ଲିମେଣ୍ଟାରୀ ପଦ୍ଧତିରେ ବିଶ୍ୱାସୀ ବୋଲି ଘୋଷଣା କଲେ; ଇନ୍ଦିରା ଗାନ୍ଧୀଙ୍କ ସହ ଚିଠିପତ୍ର ବି କାରବାର ହେଉଥିଲି; ମାତ୍ର ଏହା ପଛରେ ଆନ୍ତରିକତା ନଥିଲି । ଦେଶ ଲୋକଙ୍କ ଭିତରେ ଆନ୍ଦୋଳନର ନେତୃବର୍ଗଙ୍କ ଉଦ୍ଦେଶ୍ୟ ସମ୍ବନ୍ଧରେ କେବଳ ଭ୍ରମଧାରଣା ସୃଷ୍ଟି କରିବା ହିଁ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା, କାରଣ ଅନ୍ୟ ବିରୋଧୀ ନେତା ସବୁ ପ୍ରାୟ ଜେଲରେ ଥାଆନ୍ତି—ଅଳ୍ପ କେତେକଙ୍କୁ କିଛି ଦିନ ଲାଗି ଛାଡ଼ିଦିଆଯାଇଥାଏ । ସେମାନଙ୍କ ତରଫରୁ ଇନ୍ଦିରା-ଗାନ୍ଧୀଙ୍କ ସହ ଯେତେବେଳେ ନିର୍ଦ୍ଦିଷ୍ଟ ଭାବରେ କଥାବାର୍ତ୍ତା ଆରମ୍ଭ ହେଲି, କୌଣସି ଜବାବ ତାଙ୍କ ଆଡ଼ୁ ମିଳିଲି ନାହିଁ ।

ଏଣେ ଜୟପ୍ରକାଶଙ୍କ ସହ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରି କୌଣସି ପ୍ରକାରେ ସେ କେବଳ ଆନ୍ଦୋଳନ ପ୍ରତ୍ୟାହାର କରିନେବାର ବିବୃତି ଦେବାର ଉଦ୍ୟମ ହେଲି ।

ସୁଗତ ଦାସଗୁପ୍ତଙ୍କ ପରାମର୍ଶ ଅନୁସାରେ ଇନ୍ଦିରା ଗାନ୍ଧୀଙ୍କ ସେକ୍ରେଟାରୀ ଲେଖକ ସହ କଥାବାର୍ତ୍ତା କରିଥିଲେ । ଜୟପ୍ରକାଶଙ୍କ ଅଗୋଚରରେ ଏହା ଚାଲିଥାଏ । ଏହା ହେଉଛି ୧୯୭୬ ଜାନୁୟାରୀ ପ୍ରଥମ ଦ୍ୱିତୀୟ ସପ୍ତାହର ଘଟଣା । ଜୟପ୍ରକାଶ ବମ୍ବେ ହାସପାତାଳରେ ସାଂଘାତିକ ଅସୁସ୍ଥ ଅବସ୍ଥାରେ ରହିଥାଆନ୍ତି । ଲେଖକ ତାଙ୍କ ଏ କେତେ ଦିନର ଡାଏରୀରୁ ଯାହା ଦେଖୁଛୁ ସେଥିରେ ଅଛି—ଜାନୁୟାରୀ ୭ ତାରିଖରେ ସୁଗତ ଦାସଗୁପ୍ତ ଜଣାଇଲେ ଯେ ଇନ୍ଦିରା ଗାନ୍ଧୀ ଜୟପ୍ରକାଶଙ୍କ ସହ ଗୋଟାଏ ସମାଧାନ କରିବାକୁ ଇଚ୍ଛୁକ ବୋଲି ପି. ଏନ. ଧର ତାଙ୍କୁ କହିଛନ୍ତି । ସେ କେବଳ ଚାହାଁନ୍ତି ଜୟପ୍ରକାଶ କହିଦିଅନ୍ତୁ ଯେ ସେ ଆନ୍ଦୋଳନ ଆରମ୍ଭ କରି ନଥିଲେ, ଆଉ ଆନ୍ଦୋଳନର ଆବଶ୍ୟକତା ନାହିଁ । ଭିତରର ଉଦ୍ଦେଶ୍ୟ ହେଉଛି, ଜନସଙ୍ଘ ଓ ଅନ୍ୟମାନଙ୍କ ସହ ଜୟପ୍ରକାଶଙ୍କର ସଂପର୍କ ନାହିଁ ବୋଲି ଏଥିରେ ପ୍ରମାଣିତ ହେବ । ଲେଖକ ମତଦେଲେ ଯେ ଏଭଳି ପ୍ରସ୍ତାବ କାର୍ଯ୍ୟକାରୀ ନୁହେଁ—ଜୟପ୍ରକାଶ ଏପରି କହନ୍ତୁ ବୋଲି ତାଙ୍କୁ ଅନୁରୋଧ କରିବା ହିଁ ଭୁଲହେବ । ଜୟପ୍ରକାଶ ନିଜ ଉପରୁ ଦାୟିତ୍ୱ ହଟାଇଦେଇ ନ ପାରନ୍ତି; ତାହାଛଡ଼ା ଇନ୍ଦିରା ଗାନ୍ଧୀ ଚଣ୍ଡୀଗଡ଼ କଂଗ୍ରେସ ଅଧିବେଶନରେ ଆତୁର ଦୃଢ଼ ମନୋଭାବ ପୋଷଣ କରିଛନ୍ତି । ସୁଗତ ଦାସଗୁପ୍ତଙ୍କ ଅନୁରୋଧକ୍ରମେ ୧୯୭୬ ଜାନୁୟାରୀ ୧୧ତାରିଖରେ ଲେଖକର ପି. ଏନ୍. ଧରଙ୍କ ସହ ସାକ୍ଷାତ ହେଲା ଏ ଦିଗରେ ଲେଖକ କିଛି ସାହାଯ୍ୟ କରିପାରିବା ସଂକ୍ରାନ୍ତରେ ବିଚାର କରିବା ନିମନ୍ତେ । ଲେଖକ ପରିଷ୍କାର ଜାଣିବାକୁ ଚାହିଁଲେ, ଇନ୍ଦିରା ଗାନ୍ଧୀ ବିରୋଧୀଦଳ ସହ କଥାବାର୍ତ୍ତା କରିବାକୁ ଯେଉଁ ସର୍ତ୍ତସବୁ ଦେଇଛନ୍ତି, ସେଥିରେ ତାଙ୍କର ଆନ୍ତରିକତା କେତେଦୂର । ସେ ପ୍ରକୃତରେ ଏହାର ଏକ ସମାଧାନର ବାଟ ଖୋଜୁଛନ୍ତି ବୋଲି ଯଦି ତାଙ୍କ ସହିତ ଆଲୋଚନାରେ ଲେଖକର ହୃଦ୍‌ବୋଧ ହେବ, ତେବେ ଏ ଦିଗରେ କିଛି ଅଗ୍ରସର ହେବାଲାଗି ଲେଖକ ଇଚ୍ଛୁକ ହୋଇପାରେ । ପି.ଏନ୍. ଧର ହୁଏତ ଲେଖକଠାରୁ ଏଭଳି ଜବାବ ମିଳିବାର ଆଶା କରିନଥିଲେ । ଇନ୍ଦିରା ଗାନ୍ଧୀଙ୍କ ସହ କଥାବାର୍ତ୍ତା କରି ଲେଖକକୁ ଜଣାଇବେ ବୋଲି କହି ଆଉ କେବେ ସେ ବିଷୟ ଉଠାଇ ନାହାନ୍ତି । ଏକ ଚାଲ୍ ଖେଳାଯାଉଥିଲା ଏବଂ ଲେଖକର ଏ ଆନ୍ଦୋଳନ ସହ ଓ ଏହାର ନେତାମାନଙ୍କ ସହ କେତେଦୂର ସଂପର୍କ ରହିଛି ଜାଣିବାଲାଗି ଏହା ଏକ ଫନ୍ଦି ହୋଇ-ଥାଇପାରେ । ଇନ୍ଦିରା ଗାନ୍ଧୀଙ୍କର ସମସ୍ୟାର ସମାଧାନ ଲାଗି ଆଦୌ ଆଗ୍ରହ ନଥିଲା ଏବଂ ଲେଖକ ରାଧାକୃଷ୍ଣଙ୍କ ଜରିଆରେ ଜୟପ୍ରକାଶଙ୍କ ନିକଟକୁ ଏ ସମ୍ବାଦ ପଠାଇଦେଇଥିଲା । କିନ୍ତୁ ଜୟପ୍ରକାଶଙ୍କର ମୁକ୍ତି ଓ ତା' ପରବର୍ତ୍ତୀ ବିଭିନ୍ନ ଘଟଣାରେ ଲୋକ ବା ଆନ୍ଦୋଳନକାରୀଙ୍କ ମନରେ ଯାହା ବି କିଛି ଶିଥିଳତା ଆସିଥାଆନ୍ତା, ଜୟପ୍ରକାଶଙ୍କର ଏକ ବିବୃତି ହିଁ ତାହା ପରିଷ୍କାର କରିଦେଲା । ବମ୍ବେ ଛାଡ଼ି ପାଟନା ଯିବାର ଅବ୍ୟବହିତ ପୂର୍ବରୁ ସେ କହିଥିଲେ :

"ବର୍ତ୍ତମାନ ଡିକ୍ଟେଟରଶିପ୍ ବିରୁଦ୍ଧରେ ଲୋକସଂଘର୍ଷ ସମିତି ଯେ ସଂଗ୍ରାମ ଆରମ୍ଭ କରିଛି ତହିଁରେ ଆତ୍ମସମର୍ପଣ ନାହିଁ କିମ୍ବା ତାହା କମ୍‌ଜୋର୍ ହେବନାହିଁ। ଯଦି କିଛି ଫୁର୍‌ସତ୍ ମିଳେ, ଲୋକଙ୍କ ପାଖରେ ପହଞ୍ଚି ସେମାନଙ୍କୁ ସବୁ ଘଟଣା ଅବଗତ କରାଇବା ଉଚିତ। ଦେଶର ଭବିଷ୍ୟତ ଲୋକେ ହିଁ ସ୍ଥିର କରିବେ।

ଚାଲିଥିବା ସଂଗ୍ରାମରେ ତ୍ୱରିତ କିଛି ବିଜୟର ବାଟ ନାହିଁ—ଧୈର୍ଯ୍ୟସହକାରେ ଅବିରତ ସଂଗ୍ରାମ କରିବା ହିଁ ଏକମାତ୍ର ପନ୍ଥା। ଲୋକେ ଏକ ଦୀର୍ଘ ସଂଗ୍ରାମ ଲାଗି ପ୍ରସ୍ତୁତ ହୁଅନ୍ତୁ। ସେଥିଲାଗି ତାଙ୍କୁ ନିର୍ଭୀକ ହେବାକୁ ପଡ଼ିବ। ନିର୍ଭୀକ ବ୍ୟକ୍ତି ଆସୁରିକ ଶକ୍ତି ଏବଂ ଦମନର ସମ୍ମୁଖୀନ ହେବେ ଏବଂ ପରିଣତି ଭୋଗିବା ନିମନ୍ତେ ପ୍ରସ୍ତୁତ ହୋଇଯିବେ। ଏହି ସଂଗ୍ରାମ ବିଟିଶ ସରକାର ସହ ହୋଇଥିବା ସଂଗ୍ରାମଠାରୁ ଆହୁରି କଷ୍ଟକର। ସେଇଟା ଥିଲା ବିଦେଶୀ ଶକ୍ତି ସହ ଲଢ଼ାଇ; ମାତ୍ର ଏଥିରେ ଆମର ଦେଶୀ ଏକଛତ୍ରବାଦକୁ ଭାଙ୍ଗି ଧ୍ୱଂସ କରିବାକୁ ପଡ଼ିବ।

ଶ୍ରୀମତୀ ଗାନ୍ଧୀ ବର୍ତ୍ତମାନ ଅଚଳ ଅବସ୍ଥାର କିଛି ସମାଧାନ କରିବେ ବୋଲି ମୁଁ ବିଶ୍ୱାସ କରେନା, କାରଣ ଅନ୍ୟ କୌଣସି ପନ୍ଥା ବାହାରିଲେ ତାଙ୍କର କ୍ଷମତା କ୍ଷୁଣ୍ଣ ହେବ। ସେ ତାହା କରିବାକୁ ଦେବେ ନାହିଁ। ସେ ନିଜେ ଡିକ୍ଟେଟର ଭାବରେ ରହିବାର କୁଟଚକ୍ରକୁ ଆହୁରି ମଜବୁତ କରିବା ଉଦ୍ୟମରେ ଅଛନ୍ତି।"

ଏହା ପରେ ସଂଗ୍ରାମ ଶିଥିଳ ହେବା ପରିବର୍ତ୍ତେ ବରଂ ଆହୁରି ବଳ ପାଇଲା ଏବଂ ଜେଲ୍‌ରେ ଥିବା ସାଥୀମାନଙ୍କ ଭିତରେ ଉତ୍ସାହ ଖେଳିଗଲା। ସେମାନଙ୍କ ମନରେ କାଳେ ନୈରାଶ୍ୟ ଜାତହୋଇଥିବ, ସେଥିଲାଗି ବନ୍ଦୀମାନଙ୍କୁ ଏକ ବିଶେଷ ବାର୍ତ୍ତା ଦେଇ ଜୟପ୍ରକାଶ କହିଲେ

"ମୁଁ ବ୍ୟକ୍ତିଗତ ଭାବରେ ଅନୁଭବ କରୁଛି ଯେ ଯେଉଁମାନେ ଜେଲରେ ରହିଛନ୍ତି, ସେମାନେ ଏ ଆନ୍ଦୋଳନରେ ମହତ୍ତ୍ୱ କାର୍ଯ୍ୟ କରୁଛନ୍ତି। ସେମାନେ ବିଚାରିବା ଉଚିତ ନୁହେଁ ଯେ, ତାଙ୍କର ଜୀବନ ନଷ୍ଟ ହୋଇଗଲା। ମୋର ସେମାନଙ୍କୁ ପରାମର୍ଶ ସେମାନେ ଜେଲରେ ବନ୍ଦୀକାଳର ଉତ୍ତମ ଉପଯୋଗ କରନ୍ତୁ। ପଢ଼ା-ଲେଖାରେ ସମୟ ବିତାନ୍ତୁ—ଅତୀତରେ ମନରେ ଥିବା ଚିରାଚରିତ ଚିନ୍ତାଧାରାକୁ ବଦଳାନ୍ତୁ। ଏହି ଆନ୍ଦୋଳନ ଭିତରୁ ଏକ ନୂତନ ଶକ୍ତିର ଆବିର୍ଭାବ ହେବ। ମୁଁ କହିପାରୁନାହିଁ ଏହା କେଉଁ ରୂପ ନେବ, କିନ୍ତୁ ଏହା ଯେ ଉଠୁଛି, ତାହା ମୁଁ ଆଖି ସାମନାରେ ଦେଖିପାରୁଛି।" **(People, 15 Sept, 1976)**

ଏମର୍ଜେନସି ଫଳରେ ଦେଶରେ ଏକ ନୂତନ ଯୁବଶକ୍ତି ଗଣତନ୍ତ୍ରର ପ୍ରତିଷ୍ଠାଲାଗି ପ୍ରତିଜ୍ଞାବଦ୍ଧ ହୋଇ ବଦ୍ଧପରିକର ସଂଗ୍ରାମ ଅଭିମୁଖୀ ହେଲା। ଆନ୍ତର୍ଜାତିକ କ୍ଷେତ୍ରରେ ଏହାର ଯେ ପ୍ରତିକ୍ରିୟା ହେଲା ତହିଁରେ ଶ୍ରୀମତୀ ଗାନ୍ଧୀ ଅଧିକ ବିଚଳିତହେଲେ। ଜୟପ୍ରକାଶଙ୍କ

କାହିବାନୁସାରେ ଏହି ପ୍ରଚାରର ଏପରି ପ୍ରଭାବ ହେଲା ଯେ ଶେଷରେ ହୁଏତ ଏହି କାରଣରୁ ଇନ୍ଦିରାଗାନ୍ଧୀ ନିର୍ବାଚନ କରିବା ନିମନ୍ତେ ସ୍ଥିର କଲେ ।

ଲଣ୍ଡନରେ 'ସ୍ୱରାଜ' ନାମକ ଏକ ପତ୍ରିକା ପ୍ରକାଶିତ ହୋଇ ସେଥିରେ ପୃଥିବୀର ବିଭିନ୍ନ ସମ୍ବାଦପତ୍ରର ମନ୍ତବ୍ୟ ପ୍ରକାଶିତ ହେଲା । ପ୍ରାୟ ୫୪ ଜଣରୁ ଅଧିକ ବ୍ରିଟିଶ ପାର୍ଲିମେଣ୍ଟ ସଭ୍ୟଙ୍କ ଦସ୍ତଖତରେ ଏକ 'ଜୟପ୍ରକାଶ ମୁକ୍ତି କମିଟି' ଗଠିତ ହୋଇ ତାଙ୍କର ମୁକ୍ତିଲାଗି ଆନ୍ଦୋଳନ ଚାଲିଲା ଏବଂ ଲଣ୍ଡନ ସହରରେ ଏଥିଲାଗି ସଭା ଶୋଭାଯାତ୍ରା ମଧ୍ୟ ହେଲା । ଆମେରିକା ଭାରତ ସପକ୍ଷରେ ପ୍ରଚାର ଲାଗି କମିଟି, ବିଭିନ୍ନ ପୁସ୍ତକ, ଆଲୋଚନା ଓ ପ୍ରଚାର ଜରିଆରେ ଭାରତର ମୁକ୍ତି ଆନ୍ଦୋଳନ ଏବଂ ଏମର୍ଜେନ୍‌ସି ସଂକ୍ରାନ୍ତରେ ଲୋକଙ୍କୁ ଅବଗତ କରାଇଲେ । ସୋସଲିଷ୍ଟ ଇଣ୍ଟରନେସନାଲ ଏବଂ ଆମ୍ନେଷ୍ଟି ଇଣ୍ଟରନେସନାଲ ତରଫରୁ ବିନା ବିଚାରରେ ରାଜନୀତିକ ନେତାମାନଙ୍କୁ ବନ୍ଦୀ କରିସିବାର ଦୃଢ଼ ପ୍ରତିବାଦ କରାଗଲା । ପଶ୍ଚିମ-ଜର୍ମାନୀର ପୂର୍ବତନ ଚାନ୍‌ସଲର ଏବଂ ସୋସଲିଷ୍ଟ ଇଣ୍ଟରନେସନାଲର ସଭାପତି ଉଇଲି ବ୍ରାଣ୍ଡଙ୍କୁ ଭାରତ ଆସି ଜୟପ୍ରକାଶଙ୍କୁ ସାକ୍ଷାତ୍ କରିବା ନିମନ୍ତେ ଅନୁମତି ମିଳିଲାନାହିଁ । ସେହିପରି ଅଷ୍ଟ୍ରିଆର ଚାନ୍‌ସଲର କାଇସ୍କିଙ୍କ ବାର୍ତ୍ତା ପର୍ଯ୍ୟନ୍ତ ଜୟପ୍ରକାଶଙ୍କ ପାଖରେ ପହଞ୍ଚିପାରିଲାନାହିଁ । ଏବେ ସେ ଅଷ୍ଟ୍ରିଆର ରାଷ୍ଟ୍ରଦୂତଙ୍କ ଜରିଆରେ ହିଁ ତାଙ୍କର ବାର୍ତ୍ତା ଜୟପ୍ରକାଶଙ୍କ ପାଖରେ ପହଞ୍ଚାଇପାରିଲେ । ଭାରତରୁ ସୁବ୍ରମନ୍ୟମ୍ ସ୍ୱାମୀ, ଭାରତୀୟ ବାର୍ ଆସୋସିଏସନ୍‌ର ସଭାପତି ଜେଥମାଲାନି, ମାର୍କଣ୍ଡ ଦେଶାଇ ଓ ଲସ୍ୟିଲି ଫର୍ଣ୍ଣାଣ୍ଡିସ୍ ଆଦି ପଳାଇଯାଇ ବିଦେଶରେ ପ୍ରଚାର ସଙ୍ଗଠନକୁ ଆହୁରି ବ୍ୟାପକ କରାଇପାରିଲେ ଏବଂ ଭାରତର ବାସ୍ତବ ଚିତ୍ର ପାଶ୍ଚାତ୍ୟ ଜଗତ ଆଗରେ ବ୍ୟକ୍ତିଗତ ଭାବରେ ରଖିପାରିବାରୁ ଏହାର ଖୁବ୍ ପ୍ରଭାବ ପଡ଼ିଲା । କେବଳ ରୁଷ ଦେଶ ଛଡ଼ା ଆଉ କୌଣସି ସୋସଲିଷ୍ଟ ଦେଶ ମଧ୍ୟ ପୂର୍ଣ୍ଣପ୍ରାଣରେ ଆନ୍ଦୋଳନ ସପକ୍ଷରେ ପ୍ରକାଶ୍ୟରେ କହିଲେ ନାହିଁ । ପାଶ୍ଚାତ୍ୟ ଦେଶଗୁଡ଼ିକର ପ୍ରାୟ ସବୁ ମୁଖ୍ୟ ସମ୍ବାଦପତ୍ର ଓ ରାଜନୀତିଜ୍ଞମାନେ ପ୍ରତିକୂଳ ମତ ପୋଷଣକଲେ ।

ଇଂଲଣ୍ଡର 'ଡ଼େଲିମେଲ୍' ୨୭ । ୬ । ୭୫ ରେ ଲେଖିଲା—

ଏସିଆରେ ଭାରତପରି ଏକମାତ୍ର ବୃହତ୍ ଦେଶ ଯେଉଁଠି ଏ ପର୍ଯ୍ୟନ୍ତ ବିରୋଧିଙ୍କୁ ଜେଲ୍‌ରେ ଭର୍ତ୍ତି କରାଯାଇ ନଥିଲା । କିନ୍ତୁ ଆଉ ସେ କଥା ନାହିଁ ।

ଶ୍ରୀମତୀ ଗାନ୍ଧୀ ଶେଷକୁ କ୍ଷମତାରେ ଉନ୍ମତ୍ତ ହୋଇପଡ଼ିଛନ୍ତି । ଏକ ଆଘାତରେ ଭାରତ ପରି ଗଣତନ୍ତ୍ର ଦେଶର ଖ୍ୟାତିକୁ ଚୂର୍ଣ୍ଣ କରିଦେଇଛନ୍ତି ।

ବରାବର ବିନା ବାଧାରେ ୨୮ ବର୍ଷ କାଳ କ୍ଷମତାରେ ରହି ଶ୍ରୀମତୀ ଗାନ୍ଧୀଙ୍କର କଂଗ୍ରେସଦଳ ଦୁର୍ନୀତିଗ୍ରସ୍ତ ହୋଇଯାଇଛି ।

ଓ୍ୱାଟରଗେଟ୍ ପରି ପ୍ରକୃତରେ ଯେଉଁ ଭ୍ରଷ୍ଟାଚାର ଅଭିଯୋଗରେ ଦୋଷୀ ପ୍ରମାଣିତ ହୋଇ ଏଡ଼େ ବଡ଼ ନେତାଙ୍କର ପତନ ଘଟିଲା, ତାହା ଅତି ସାମାନ୍ୟ ଧରଣର । ମାତ୍ର ଓ୍ୱାଟରଗେଟ୍ ପରି ଏହାର ପରିଣତି ଭୟାବହ ହେବ ।

କାରଣ ବର୍ତ୍ତମାନ ଏକଚ୍ଛତ୍ରବାଦ ଲାଗି ପଥ ଉନ୍ମୁକ୍ତ । ଥରେ ଗଣତାନ୍ତ୍ରିକ ଶିଷ୍ଟତା ଲଙ୍ଘନ ହୋଇଗଲେ ଆଉ ସଂଶୋଧନ କରିବା ସମ୍ଭବ ହୁଏନାହିଁ ।"

ଏମର୍ଜେନ୍‌ସି ଘୋଷଣାର ଦ୍ୱିତୀୟ ଦିନ ଲଣ୍ଡନର ଦୈନିକ ପତ୍ରିକାର ଏ ଭବିଷ୍ୟ-ବାଣୀ ପରେ କିଭଳି ନିଘଞ୍ଚ ବାସ୍ତବ ସତ୍ୟରେ ପରିଣତ ହେଲା !

ସେହି ୨୭ । ୬ । ୭୫ରେ 'ଟାଇମ୍‌ସ୍' ଲେଖିଲା—

ଯେପରି ଭୀଷଣ ଆକାରରେ ଦମନର ପ୍ରୟୋଗ ହେଲା ଲକ୍ଷ୍ୟ କରିବାର କଥା । ଭାରତରେ ପୂର୍ବରୁ ଏମର୍ଜେନ୍‌ସି ଘୋଷଣା କରାଯାଇଛି; କିନ୍ତୁ କେବେ ପାର୍ଲିମେଣ୍ଟର ସଭ୍ୟମାନେ ନିଦରୁ ଉଠିବା ଆଗରୁ ଗିରଫ ହୋଇନଥିଲେ । ସମ୍ବାଦପତ୍ର ଉପରେ କଡ଼ା କଟକଣା ରଖାଯାଇଛି । ଜୟପ୍ରକାଶ ନାରାୟଣ ହେଉଛନ୍ତି ଭାରତର ଜାତୀୟ କ୍ଷେତ୍ରରେ ସର୍ବାପେକ୍ଷା ସମ୍ମାନିତ ବ୍ୟକ୍ତି—ତାଙ୍କୁ ଏବଂ ମୋରାରଜୀ ଦେଶାଇ, ପିଲୁମୋଦୀ ଓ ଜ୍ୟୋତିର୍ମୟ ବସୁଙ୍କ ପରି ସଂସଦ ସଦସ୍ୟଙ୍କୁ କାହିଁକି ଅଟକ ରଖାଯାଇଛି ? ସେମାନଙ୍କୁ କେହି କେବେ ଷଡ଼ଯନ୍ତ୍ରକାରୀ ବୋଲି କହିପାରେନା ।

× × × ×

ଯଦି ମିଲିଟାରୀ ଓ ପୁଲିସ ଭିତରେ ବିଦ୍ରୋହ ଓ ଆନ୍ଦୋଳନ ଏମାନେ ଉତ୍ତେଜିତ କରାଉଥିବା ଅଭିଯୋଗ ସତ୍ୟ ବୋଲି ଧରାଯାଏ, ତେବେ ଏମର୍ଜେନ୍‌ସି ଘୋଷଣା ନ କରାଯାଇ ବି ଏମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଇପାରିଥାନ୍ତା ।"

'ଟାଇମସ୍' ପତ୍ରିକା ୧୯୭୫ ଅଗଷ୍ଟ ୧୫ ତାରିଖ ଭାରତର ସ୍ୱାଧୀନତାଦିବସରେ ଏକ ବିଶେଷ ସଂଖ୍ୟାରେ ଜୟପ୍ରକାଶଙ୍କର ବଡ଼ଧରଣର ଚିତ୍ର ପ୍ରକାଶ କରିଥିଲା ଏବଂ ସେଥିରେ ଲେଖାଥିଲା—"ଆଜି ଭାରତର ସ୍ୱାଧୀନତାଦିବସ । ଭାରତୀୟ ଗଣତନ୍ତ୍ରର ଆଲୋକ ଲିଭି-ନଯାଉ । ଜୟପ୍ରକାଶଙ୍କୁ ମୁକ୍ତକର ।"

୧୮ ଜୁଲାଇରେ 'ଗାଡ଼ିଆନ୍' ସମ୍ବାଦପତ୍ର ଲେଖିଲା—ହିବ୍ରାଣ୍ଟଙ୍କ ନେତୃତ୍ୱରେ ଏକ ସୋସଲିଷ୍ଟ ଡେଲିଗେସନ ସୋସଲିଷ୍ଟ ଇଣ୍ଟରନେସନାଲ ତରଫରୁ ଭାରତକୁ ଯିବାର କଥା । ସେଥିରେ ମେମ୍ବର ରୂପେ ଯିବାର ଥିଲା ଆୟର୍ଲାଣ୍ଡର ପୋଷ୍ଟଟେଲିଗ୍ରାଫ ମିନିଷ୍ଟର ମିଷ୍ଟର କନର କ୍ରୁଇଜ ଓବ୍ରାଏନ୍ । ଚିଲି ଏବଂ ଏପରିକି ଫାସିଷ୍ଟ-ଡ଼ିକ୍ଟେଟର ଫ୍ରାଙ୍କୋଙ୍କ ସ୍ପେନ୍ ଓ ସାଲଜାରଙ୍କ ପର୍ତ୍ତୁଗାଲ ଦେଶକୁ ସୋସଲିଷ୍ଟ ଇଣ୍ଟରନେସନାଲ ପ୍ରତିନିଧି ଯିବାକୁ ଅନୁମତି ମିଳିଥିଲା; ମାତ୍ର ଭାରତ ସରକାର ଅନୁମତି ଦେଲେ ନାହିଁ । ବନ୍ଧୁମାନଙ୍କୁ ଶତ୍ରୁ କାହିଁକି କରାଯାଉଛି ? ଶ୍ରୀମତୀ ଗାନ୍ଧୀଙ୍କ କଂଗ୍ରେସଦଳ ପରା ସୋସଲିଷ୍ଟ ଇଣ୍ଟରନେସନାଲ ସହ ସମ୍ପୃକ୍ତ ?"

ଆମେରିକାର Herald Tribune କାଗଜ ୧୯୭୫ ଜୁଲାଇ ୨୩ରେ ମନ୍ତବ୍ୟ ଦେଲା :

"ଏସିଆର ସର୍ବବୃହତ୍ତ ଗଣତନ୍ତ୍ର ଦେଶ ଭାରତରୁ ଏ ଯେଉଁ ସମ୍ବାଦ ମିଳୁଛି, ତାହା ଏକ କୁହୁଡ଼ି ପରି ବାହାର ଦୁନିଆର ଚକ୍ଷୁ-ଗୋଚରରେ ଛାଇହୋଇଯାଉଛି । ସେମାନେ କଳ୍ପନା ସୁଦ୍ଧା କରିପାରୁ ନାହାନ୍ତି ଗଣତନ୍ତ୍ରକୁ କିଭଳି ଏକଚ୍ଛତ୍ର ଭାବରେ ପରିଣତ କରାଯାଉଛି । ଏହା ପୃଥିବୀ ପକ୍ଷରେ ମନ୍ଦ ସୂଚନା—ଭାରତ ପକ୍ଷରେ ଅତୀବ ଶୋଚନୀୟ ।

କିନ୍ତୁ ଇନ୍ଦିରା ଗାନ୍ଧୀ ଯେମିତି ବାସ୍ତବ, ଭାରତ ଦେଶ ମଧ୍ୟ ସେହିଭଳି ବାସ୍ତବ ଓ ଜୀବନ୍ତ । ସେମାନେ ଯଦି କାଚ ଭିତରେ ପ୍ରବେଶ କରିବାକୁ ଯିବେ ତେବେ କାଚ ଭାଙ୍ଗିଯିବ ଏବଂ ସେଥିରେ ସେମାନେ ବି ଆଘାତ ପାଇବେ ।

ଏମର୍ଜେନ୍ସି ଯୋଗୁଁ ଜୟପ୍ରକାଶଙ୍କ ଆନ୍ଦୋଳନ ଆନ୍ତର୍ଜାତିକ କ୍ଷେତ୍ରରେ ବି ପ୍ରତିକ୍ରିୟା ଜାତ କରାଇଲା; ନଚେତ୍ ବାହାର ବା ଭାରତ ଭିତରେ ହିଁ ଏହାର ଶବ୍ଦ ବନ୍ଦ ହୋଇ ରହିଯାଇଥାଆନ୍ତା ।

# ଓଡ଼ିଶାରେ ଅନୀତି ଓ ଦୁର୍ନୀତି

ଦେଶର ଏତେ ବଡ଼ ଜାତୀୟ ଆନ୍ଦୋଳନରେ ନୂଆ ନୂଆ ବ୍ୟକ୍ତି ପୁରୋଭାଗକୁ ଆସିବାର କଥା—ପ୍ରତି ଦେଶରେ ଏହିଭଳି ସମୟରେ ହିଁ ରାଜନୀତିକ ଶକ୍ତିର ବୃଦ୍ଧି ହୋଇଥାଏ । ସେମିତି ଏ ଆନ୍ଦୋଳନରେ ବହୁ ନୂଆ ଶକ୍ତି ନିଜର ତ୍ୟାଗ, ସହନଶୀଳତା ଓ ବୀରତ୍ୱର ପରିଚୟ ଦେଇଛନ୍ତି ଏବଂ ଭାରତର ଆତ୍ମାକୁ ପୁଣି ଥରେ ପୁନର୍ଜୀବିତ କରିଛନ୍ତି । ଦମନ ଓ ଅତ୍ୟାଚାର ଯେପରି ଚାଲିଲା, ସେଥିରେ ଆନ୍ଦୋଳନର ରୂପ ଗୋପନୀୟ ହିଁ ରହିଲା । କିନ୍ତୁ ଆନ୍ଦୋଳନ ବଡ଼ ଶାନ୍ତିପୂର୍ଣ୍ଣ ଭାବରେ ଗତିକରିଥିଲା ଏବଂ ଦେଶରେ ଗୋପନୀୟ ସଙ୍ଗଠନ ଜରିଆରେ ଯେଉଁସବୁ କାର୍ଯ୍ୟ ହୋଇଥିଲା, ତାହା ଆଇନଅମାନ୍ୟ ଓ ସତ୍ୟାଗ୍ରହର ରୂପ ହିଁ ନେଇଥିଲା । ସରକାରୀ ପକ୍ଷ ଓ ଅନ୍ୟ କୌଣସି ପକ୍ଷରୁ ବହୁ କିଛି ହିଂସାକାଣ୍ଡର ଅଭିଯୋଗ ବା ପ୍ରମାଣ ମିଳିନାହିଁ; ବରଂ ସରକାର ବା ପୁଲିସ ତରଫରୁ ହିଂସା ଓ ଅତ୍ୟଧିକ ବର୍ବରତାର ବହୁ ଦୃଷ୍ଟାନ୍ତ ରହିଛି । ଭାରତରେ ଲରେନ୍‌ସ ଫର୍ଣ୍ଣାଣ୍ଡିସ୍, ସ୍ନେହଲତା ରେଡ୍ଡି ଓ ପି. ଏନ୍. ସିଂ ଇତ୍ୟାଦିଙ୍କ ଉପରେ ହୋଇଥିବା ବର୍ବରତାର ବିବରଣୀ ସରକାରୀ ବୀଭତ୍ସ ରୂପର ନିଦର୍ଶନ ଭାବରେ ଚିରଦିନ ରହିଥିବ ।

ଓଡ଼ିଶାରେ ଭଦ୍ରକ ଓ ଢେଙ୍କାନାଳରେ ସତ୍ୟାଗ୍ରହୀଙ୍କ ଉପରେ ଯେପରି ନିର୍ମମ ବ୍ୟବହାର କରାଯାଇଥିବାର ସମ୍ବାଦ ମିଳେ, ସେଥିର ପ୍ରକୃତ ବିବରଣୀ ଜନତା ସରକାର ହେଲା ପରେ ବି ଏପର୍ଯ୍ୟନ୍ତ ପ୍ରକାଶପାଇନାହିଁ । ଅନ୍ୟ କେଉଁଠି ମାତ୍ରାଧିକ୍ୟ ଘଟିଛି, ତାର ତଥ୍ୟ ହୁଏତ ପରେ ପ୍ରକାଶିତ ହେବ । ମାତ୍ର ଏ କଥା ସ୍ୱୀକାର୍ଯ୍ୟ ଯେ, ଅନ୍ୟ ପ୍ରଦେଶ ପରି ଏ ଆନ୍ଦୋଳନ ଓଡ଼ିଶାରେ ସେଭଳି ତୀବ୍ର ଆକାର ଧାରଣ କରିନଥିଲା । ଓଡ଼ିଶାର ମୁଖ୍ୟ ରାଜନୀତିକ ଦଳଗୁଡ଼ିକ ଏଭଳି ଆଇନ ଅମାନ୍ୟ ଆନ୍ଦୋଳନ ପ୍ରତି ହୁଏତ ଖୁବ୍ ବେଶି ଆଗ୍ରହୀ ନ ଥିଲେ କିମ୍ବା ଆଗ୍ରହ ରହିଥିଲେ ସୁଦ୍ଧା ଆଗରୁ ପ୍ରସ୍ତୁତ ନଥିବାରୁ ଏପରି ଆତଙ୍କଜନକ ପରିସ୍ଥିତି ଭିତରେ ଗୁପ୍ତ ସଙ୍ଗଠନ ଠିଆକରାଇବା ସମ୍ଭବ ହୋଇନଥିଲା । କିନ୍ତୁ ସର୍ବୋଦୟ କର୍ମୀ ଓ ପ୍ରାୟ ସବୁ ଦଳର ଯୁବଗୋଷ୍ଠୀ ଏଥିରେ ପୂର୍ଣ୍ଣପ୍ରାଣରେ ମାତିଯାଇଥିଲେ । ବିଶେଷତଃ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘ ସହିତ ସଂପୃକ୍ତ ଯୁବକମାନଙ୍କର କାର୍ଯ୍ୟ ବାସ୍ତବିକ ଉଲ୍ଲେଖଯୋଗ୍ୟ । ଓଡ଼ିଶାରୁ, ସରକାରୀ ରିପୋର୍ଟ ଅନୁସାରେ, 'ମିସା'ରେ ଓ ଭାରତରକ୍ଷା ଆଇନ ଅନୁସାରେ ପ୍ରାୟ ୧୦୦୦ରୁ ଅଧିକ ବ୍ୟକ୍ତି ଜେଲ୍ ବରଣ କରିଥିଲେ । ଏମାନଙ୍କ ଭିତରେ ଅଧିକାଂଶ ଯୁବକ ଓ ଶିକ୍ଷିତ । ନଭେମ୍ବର ୧୬ ଠାରୁ ଯେଉଁ ଏକସପ୍ତାହ ଆଇନ-ଅମାନ୍ୟ ପାଳନ କରିବା ନିମନ୍ତେ ନିର୍ଦ୍ଦେଶ ଆସିଥିଲା, ସେଥିରେ ବିଭିନ୍ନ ସ୍ଥାନରେ ଯେପରି ସତ୍ୟାଗ୍ରହ ଏବଂ ଭୁବନେଶ୍ୱର ଓ ଆଉ କେତେକ ସ୍ଥଳରେ ମହିଳାମାନେ ଯେ ଏକତ୍ର ହୋଇ ଆଇନ ଅମାନ୍ୟ କରିଥିଲେ ସେଥିରେ ଯୁବକ ଦାଦୁ ଯେଉଁ ଚମତ୍କାର ସାହସ ଓ ସଙ୍ଗଠନ-

ଶକ୍ତି ଦେଖାଇଛନ୍ତି, ତାହା ଶୁଣିଲେ ଭବିଷ୍ୟତ ଲାଗି ମନରେ ଆଶା ଜାଗ୍ରତ ହୁଏ । ସାରା ଭାରତରେ ଯେଉଁସବୁ କାର୍ଯ୍ୟକ୍ରମ କରାଯାଉଥିଲା, ତାହା ପାଳନ କରିବା ନିମନ୍ତେ ବରାବର ଉଦ୍ୟମ ଜାରିଥିଲା । ଶ୍ରୀମତୀ ମାଳତୀ ଚୌଧୁରୀ ବୃଦ୍ଧା ବୟସରେ ଯୁଦ୍ଧ ଯେପରି ସାହସ ଦେଖାଇ ସଂଗ୍ରାମ ପତ୍ରିକା ବାହାର କରୁଥିଲେ, ତାର ପ୍ରଚାର କରୁଥିଲେ, ତାଙ୍କୁ ଅନୁଗୁଳ ଠାରେ ଗିରଫ କରାଯାଇ ଯେମିତି ବ୍ୟବହାର କରାଗଲା, ପରେ ଭାରତରକ୍ଷା ଆଇନରେ ବିଚାର କରୁଥିବା ବେଳେ ଜେଲ୍ ଭିତରେ ପାଗଳୀଙ୍କ ସାଙ୍ଗରେ ରଖାଇ ଯେପରି ଯନ୍ତ୍ରଣାଦାୟକ ପରିସ୍ଥିତି ଭିତରେ କାଳ କଟାଇବାକୁ ପଡ଼ିଥିଲା, ସେସବୁ ଶୁଣିଲେ ସ୍ୱାଧୀନ ଦେଶର ଲୋକ ବୋଲି ଆପଣାକୁ କହିବାକୁ ଲଜ୍ଜା ଲାଗେ । ଯେତେଦୂର ଜଣାଅଛି ଭାରତ ସରକାରର ପ୍ରଥମ ନିର୍ଦ୍ଦେଶ ଥିଲା ଜନସଂଘର୍ଷ ସମିତିର ସଭ୍ୟଙ୍କୁ ଗିରଫ କରିବା ନିମନ୍ତେ । ନବକୃଷ୍ଣ ଚୌଧୁରୀ ଓ ଅନ୍ୟ କେତେକଙ୍କୁ ସେଥିଲାଗି ଗିରଫ କରାଗଲା । ମାତ୍ର ଅନ୍ୟ ରାଜନୀତିକ ଦଳର ମୁଖ୍ୟ ନେତାମାନେ ବାହାରେ ରହିଥିବା ବେଳେ ଶ୍ରୀ ହରେକୃଷ୍ଣ ମହତାବଙ୍କ ପରି ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କୁ ଗିରଫ କରିବା ମୂଳରେ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କର ବ୍ୟକ୍ତିଗତ ପ୍ରତିଶୋଧ ନେବା ବ୍ୟତୀତ ଆଉ କୌଣସି ଯୁକ୍ତିଯୁକ୍ତ କାରଣ ନଥିଲା ।

ନନ୍ଦିନୀ ଶତପଥୀଙ୍କର ଜନତା ଦଳରେ ଯୋଗଦାନ, ପରେ ବକ୍ତବ୍ୟ ଯେ, କେନ୍ଦ୍ର ସରକାରର ନିର୍ଦ୍ଦେଶ ଅନୁସାରେ ଗିରଫଦାରି ହେଉଥିଲା ଏବଂ ସେ ଗଣତନ୍ତ୍ରପ୍ରେମୀ ହୋଇଥିବାରୁ କେନ୍ଦ୍ରର ବହୁ ନିର୍ଦ୍ଦେଶ ଅମାନ୍ୟ କରିଥିଲେ । ଲେଖକର ଯାହା ସମ୍ବାଦ, ହରେକୃଷ୍ଣ ମହତାବଙ୍କୁ ଗିରଫ କରିବା ନିମନ୍ତେ କେନ୍ଦ୍ରର କୌଣସି ନିର୍ଦ୍ଦେଶ ନଥିଲା । ନବକୃଷ୍ଣ ଚୌଧୁରୀ ଓ ହରେକୃଷ୍ଣ ମହତାବଙ୍କ ପ୍ରତି ଜେଲ ଭିତରେ ଯେପରି କଦର୍ଯ୍ୟ ବ୍ୟବହାର କରାଗଲା ଏବଂ ନବକୃଷ୍ଣ ଚୌଧୁରୀ ଯେ ଚକ୍ଷୁରୋଗ ଅଭାବ ଏବଂ ଅସୁବିଧାଜନକ ପରିସ୍ଥିତିରେ କାରାଗାର ଭିତରେ ରହି ଏକପ୍ରକାର ମୃତ୍ୟୁମୁଖରେ ପଡ଼ିଥିଲେ—ଏମିତି ବ୍ୟବହାର କରିବାଲାଗି କଣ କେନ୍ଦ୍ରରୁ ନିର୍ଦ୍ଦେଶ ଆସିଥିଲା ? ସେହିପରି କଂଗ୍ରେସ ଦଳର ବିଲୋଚନ କାନୁନ୍‌ଗୋ ଏବଂ ଚଣ୍ଡିଗଡ଼ କଂଗ୍ରେସ ଅଧିବେଶନରେ ଯୋଗଦେବାକୁ ଯାଉଥିବା ଯୁବକମାନଙ୍କୁ ଯେ 'ମିସା'ରେ ଅଟକ କରାଯାଇଥିଲା, ତାହା କଣ କେନ୍ଦ୍ରର ନିର୍ଦ୍ଦେଶ ପାଇ ! ଭାରତରେ କେନ୍ଦ୍ରରେ ଯେଉଁଭଳି ମୋରାର୍‌ଜୀ ଓ ଅନ୍ୟ ନେତାମାନଙ୍କ ପାଇଁ ଅପେକ୍ଷାକୃତ ଉତ୍ତମ ବ୍ୟବସ୍ଥା କରାଯାଇଥିଲା, ସେହିଭଳି ହରେକୃଷ୍ଣ ମହତାବ ଓ ନବକୃଷ୍ଣ ଚୌଧୁରୀଙ୍କ ପ୍ରତି ଭଦ୍ର ବ୍ୟବସ୍ଥା କରିବା ନିମନ୍ତେ ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କୁ ଲେଖକ ଅନୁରୋଧ କରିବାରେ ଏକ ରୁକ୍ଷ ଜବାବ ମିଳିଲା ଯେ, ଆଇନ ଅନୁସାରେ ସବୁ ଠିକ୍‌ଭାବରେ କରାଯାଉଛି । ହରେକୃଷ୍ଣ ମହତାବଙ୍କ ପତ୍ନୀଙ୍କର ଅସୁସ୍ଥତା ଓ ତାଙ୍କ ନିଜର ଚକ୍ଷୁରୋଗ ସକାଶେ ବେଶି ଦିନ ପାରୋଲ୍‌ରେ ଖଲାସ କରିବା ନିମନ୍ତେ ତତ୍କାଳୀନ ଗଭର୍ଣ୍ଣର ସୁପାରିଶ କରିଥିବାରୁ ଓଡ଼ିଶାର ଶାସନରେ ଗଭର୍ଣ୍ଣର ଆକବର ଅଲ୍ଲୀ ଖାଁ ଅଯଥା ହସ୍ତକ୍ଷେପ କରୁଛନ୍ତି ବୋଲି ପ୍ରଧାନମନ୍ତ୍ରୀଙ୍କ ନିକଟରେ ଅଭିଯୋଗ କରିଥିବା କଥା ଲେଖକ ଆକବର ଅଲ୍ଲୀ ଖାଁଙ୍କ

ଠାରୁ ଶୁଣିଛୁ । ବାସ୍ତବିକ ଓଡ଼ିଶାରେ ଏଭଳି କୌଣସି ପରିସ୍ଥିତି ଘଟିନଥିଲି ଯାହା ସୁରୁଖୁରୁରେ ପାରି ହୋଇ ଯାଇ ନ ଆନ୍ତା ।

କିନ୍ତୁ ବାସ୍ତବ କଥା ହେଉଛି, ଓଡ଼ିଶାରେ ନନ୍ଦିନୀ ଶତପଥୀ ତତ୍କାଳୀନ ପୁଲିସ ଆଇ. ଜି.ଙ୍କ ସହଯୋଗରେ ଏମର୍ଜେନସିର ଅପପ୍ରୟୋଗ କଲେ ଯାବତୀୟ ଅନୀତି ଓ ଦୁର୍ନୀତି କରିବା ନିମନ୍ତେ । ଏଠାରେ ଏକପ୍ରକାର ମେଷ୍ଟାରିୟ ଓ ଇନ୍ଦିରା ଗାନ୍ଧୀଙ୍କ ଢଙ୍ଗରେ ପାରିବାରିକ ରାଜୁତି ଚ୍ଲାଲି । ସେଥିଲାଗି ନନ୍ଦିନୀ ଶତପଥୀଙ୍କି 'ମିନି ଇନ୍ଦିରା' ବୋଲି ଆଖ୍ୟା ଦିଆଗଲା । ଏବେ ଜନତା ପାର୍ଟିର ମୁଖ୍ୟମନ୍ତ୍ରୀଙ୍କର ଆସେମ୍ବ୍ଲିର ବକ୍ତବ୍ୟ ଅନୁସାରେ ପୁଲିସ ବିଭାଗର ଗୁପ୍ତ ଗୁଇନ୍ଦା ରିପୋର୍ଟ ଆଦି ନନ୍ଦିନୀଙ୍କ କନିଷ୍ଠ ପୁତ୍ର ନାମରେ 'ଟିପା' ନାମରେ ଗଠିତ ଏକ ଘରୋଇ ଗୁଇନ୍ଦା ଏଜେନ୍‌ସିକୁ ଯୋଗାଇଦିଆଯାଉଥିଲି । ଶାସନଦଣ୍ଡର ଭୟ ଦେଖାଇ ଏମର୍ଜେନ୍‌ସିରେ ଯେ ସବୁ କାଣ୍ଡ କରାଯାଇଛି ଏବଂ ଯାହାର ରହସ୍ୟ କ୍ରମେ ପଦାକୁ ବାହାରୁଛି, ସେଥିରେ ଓଡ଼ିଶାରେ ଏମର୍ଜେନ୍‌ସି ଆନ୍ଦୋଳନକୁ ଆୟତ୍ତ କରିବାଲାଗି ବ୍ୟବହୃତ ନ ହୋଇ ମୁଖ୍ୟମନ୍ତ୍ରୀଙ୍କର ବ୍ୟକ୍ତିଗତ ହୁକୁମ ଓ ପରିବାରର ଦୁର୍ନୀତିମୂଳକ କାର୍ଯ୍ୟ ଅବାଧରେ ଚଲାଇବା ନିମନ୍ତେ ଏକ ସୁଯୋଗ ଦେଲା ।

ଏମର୍ଜେନ୍‌ସିର ସୁଯୋଗ ନେଇ ଇନ୍ଦିରା ଗାନ୍ଧୀ ମଧ୍ୟ ନିଜ ପୁତ୍ରର ମାରୁତି କାରଖାନାକୁ ସାହାଯ୍ୟ କରିବା ନିମନ୍ତେ କିପରି ସରକାରୀ କଳର ଅପପ୍ରୟୋଗ କରୁଥିଲେ ଏବଂ ମାରୁତି ସମ୍ବନ୍ଧରେ ପାର୍ଲିମେଣ୍ଟରେ ପ୍ରଶ୍ନର ଜବାବର ତଥ୍ୟ ସଂଗ୍ରହ କରୁଥିବା ଅଫିସରଙ୍କୁ ଶାସ୍ତି ଦେଇଥିଲେ, ଶାହା କମିସନ ଆଗରେ ତାଙ୍କର ମନ୍ତ୍ରିମଣ୍ଡଳର ଅତି ପୁରୁଖା ଓ ଦକ୍ଷ ମନ୍ତ୍ରୀମାନେ ଏବେ ସାକ୍ଷ୍ୟ ଦେଇ ପ୍ରକାଶ କରୁଛନ୍ତି । ଆହୁରି ହୁଏତ ସେହିପରି କେତେ କାଣ୍ଡ ଲୋକଲୋଚନ ଅଗୋଚରରେ ରହିଯାଇଥିବ । ଏମର୍ଜେନ୍‌ସିରେ ଖାଲି ସରକାରୀ ଶାସନର ତଳସ୍ତର, ଅର୍ଥାତ୍ ରାଜସ୍ୱ ଓ ପୁଲିସ ବିଭାଗ ନୁହେଁ, ଅତି ଉଚ୍ଚ ରାଜନୀତିକ ସ୍ତରରେ ଯେ ଦୁର୍ନୀତିକୁ ଘଣ୍ଟ ଘୋଡ଼ାଇ ରଖାଯାଉଥିଲି ଏବଂ ବ୍ୟାପକଭାବରେ ଦୁର୍ନୀତି କରିବାର ସୁଯୋଗ ମିଳୁଥିଲି, ତାହା ଆଉ ବୁଝାଇ କହିବାର ଆବଶ୍ୟକତା ନାହିଁ ।

ଓଡ଼ିଶାରେ ଏହି ସୁଯୋଗରେ କେତେ ଅଫିସର ଓ ରାଜନୀତିଙ୍କ ଦୁର୍ନୀତିରେ ଲିପ୍ତ ରହିଥିଲେ ତାହାର ପୂର୍ଣ୍ଣ ବିବରଣ ପ୍ରକାଶ ପାଇଲେ ବହୁ ବିସ୍ମୟକର ତଥ୍ୟ ବାହାରିବ । ମାତ୍ର ଓଡ଼ିଶା ଭିଜିଲାନ୍‌ସର ତଦନ୍ତ ଫଳରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କର ଚଳନ୍ତି ଅଚଳନ୍ତି ସମ୍ପତ୍ତି ସମ୍ବନ୍ଧରେ ଯେତିକି ତଥ୍ୟ ପ୍ରକାଶିତ ହେଲଣି ଏବଂ ଆଉ ଯେ କେତୋଟି ଘଟଣା ବିଷୟରେ ତଦନ୍ତ ଚାଲିଛି, ସେଥିରୁ ଅନୁମାନ କରାଯାଉଛି କିଭଳି ସୁବିଧାରେ ଦୁର୍ନୀତି କରିବାଲାଗି ଏକ ବିରାଟ ଷଡ଼ଯନ୍ତ୍ର କରାଯାଇଥିଲି । ନନ୍ଦିନୀ ଶତପଥୀଙ୍କର ମନ୍ତ୍ରୀତ୍ୱ ଗଲା ପରେ ଏବେ ଯିବା ତଦନ୍ତ ହେଉଛି, ମୁଖ୍ୟମନ୍ତ୍ରୀ ଥିଲାବେଳେ ଯେ ଏ ବିଷୟ ଜଣାନଥିଲି ତାହା ନୁହେଁ । ଯେଉଁ

ସବୁ ବିଷୟରେ ତଦନ୍ତ ଓ ମକଦ୍ଦମା ଚାଲିଛି, ସେଥିରୁ ଅଧିକାଂଶ ବିଷୟ ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ପାଖରେ ଲେଖକ ଲିଖିତଭାବରେ ଅଭିଯୋଗ କରିଥିଲା ଏବଂ ତଦନ୍ତ ଦାବୀ କରିଥିଲା । ମାତ୍ର ଇନ୍ଦିରା ଗାନ୍ଧୀ ନିଜେ ଯେତେବେଳେ ଏତେ ପରିମାଣରେ ଜଡ଼ିତ ହୋଇଥିଲେ, ତାଙ୍କର ପୁଷ୍ଟି ସମର୍ଥକ ନନ୍ଦିନୀ ଶତପଥୀ ଯଦି କେଉଁଠି କିଛି କରି-ପକାଉଛନ୍ତି, ସେ କଥା ଶୁଣନ୍ତେ କିପରି ! ଅବଶ୍ୟ ଯେତେବେଳେ ସେ ଶ୍ରୀମତୀ ଶତପଥୀଙ୍କ ଉପରେ ବିମୁଖହେଲେ ଏବଂ ମୁଖ୍ୟମନ୍ତ୍ରୀ ପଦରୁ ତାଙ୍କୁ ବାହାର କରିଦିଆଗଲା, ତାର ଅବ୍ୟବହିତ ପୂର୍ବରୁ କେତେକ ଅଭିଯୋଗର ତଦନ୍ତ କରାଇଥିଲେ । ତାହା କରାଯାଇଥିଲା ଦୁର୍ନୀତି ବିରୁଦ୍ଧରେ ଅଭିଯାନ ପାଇଁ ନୁହେଁ; ରାଜନୀତିକ ଉଦ୍ଦେଶ୍ୟ ହାସଲ କରିବା ନିମନ୍ତେ ଆବଶ୍ୟକତା ପଡ଼ିଲା ବୋଲି । ଏମର୍ଜେନ୍‌ସି ହିଁ ସବୁ ଅନୀତି ଓ ଦୁର୍ନୀତିକୁ ଘଣ୍ଟି ଘୋଡ଼ାଇ ରଖିଥିଲା ।

# ଗଣତନ୍ତ୍ରର ପୁନରୁଦ୍ଧାର

ପ୍ରଭାବତୀ ଦେବୀଙ୍କର ମୃତ୍ୟୁ ଜୟପ୍ରକାଶଙ୍କ ଉପରେ ବଜ୍ରପାତ ପରି ଆସିଲା । ପରି ବୟସରେ ଦୁହେଁ ପରସ୍ପରର ଅତି ନିକଟ ହୋଇଥିଲେ । ଜୟପ୍ରକାଶ ୧୯୫୪ରେ ଜୀବନଦାନ କରିବା ପରେ ରାଜନୀତିକ ମତ ମଧ୍ୟ ମିଳିଗଲା ଏବଂ ପ୍ରଭାବତୀ ଦେବୀ ଆଉ କେବଳ ସହଧର୍ମିଣୀ ରହିଲେନାହିଁ, ସହକର୍ମିଣୀରୂପେ କାର୍ଯ୍ୟ କଲେ । ଜୟପ୍ରକାଶ ଏହି କାଳ ଭିତରେ କୌଣସି ପ୍ରାଇଭେଟ୍ ସେକ୍ରେଟେରୀ ବି ରଖିନଥିଲେ । ଶରୀରର ଅସୁସ୍ଥତା ଲାଗି ବି ତାଙ୍କ ମନରେ ଆଉ ଉତ୍କଣ୍ଠା ନ ଥିଲା—ଗାନ୍ଧୀଜୀଙ୍କଦ୍ୱାରା ସେବାରେ ଶିକ୍ଷାପ୍ରାପ୍ତ ପ୍ରଭାବତୀ ବରାବର ସାଥିରେ ରହି ସମସ୍ତ ଯତ୍ନନେଉଥିଲେ । ସେ ଦିନକୁ ଦିନ ପ୍ରଭାବତୀଙ୍କ ଉପରେ ବହୁପରିମାଣରେ ନିର୍ଭର କରିବାକୁ ଲାଗିଲେ । ପରବର୍ତ୍ତୀ କାଳରେ ଇଉରୋପ ଏବଂ ଦେଶର ବିଭିନ୍ନ ସ୍ଥାନରେ ଗସ୍ତ କଲାବେଳେ ଶ୍ରୀମତୀ ପ୍ରଭାବତୀ ଦେବୀ ହିଁ ଥିଲେ ଏକମାତ୍ର ସାଥୀ । ଏକ ଦୁଃସାଧ୍ୟ ରୋଗରୁ ପ୍ରଭାବତୀଙ୍କୁ ଉଦ୍ଧାର କରିନପାରି ଜୟପ୍ରକାଶ ଦୁଃଖରେ ଅଭିଭୂତ ହୋଇପଡ଼ିଲେ । ସେତେବେଳେ ଲେଖକ ସମେତ ବହୁ ବନ୍ଧୁଙ୍କ ମେଳରେ ପ୍ରାୟ କାନ୍ଦି କାନ୍ଦି ହୋଇ ଦିଲ୍ଲୀର ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନରେ ଜୟପ୍ରକାଶ କହିପକାଇଲେ—"ବଞ୍ଚିବାକୁ ଅଛି ବୋଲି ବଞ୍ଚିଛି ଏବଂ କିଛି କରିବାକୁ ହେବ ବୋଲି କରୁଛି ସିନା, ମୋର ପ୍ରାଣବାୟୁ ଉଡ଼ିଯାଇଛି ।" ଏଥିରୁ ତାଙ୍କର ମାନସିକ ସ୍ଥିତି ସହଜରେ ଅନୁମାନ କରିହେବ ।

ପ୍ରଭାବତୀଙ୍କୁ ସିନା ମୃତ୍ୟୁମୁଖରୁ ରକ୍ଷା କରିପାରିଲେ ନାହିଁ, କିନ୍ତୁ ଦେଶକୁ ମୃତ୍ୟୁ-ପଥରୁ ରକ୍ଷା କଲେ ଜୟପ୍ରକାଶ । କାରାଗାରରୁ ମୁକ୍ତିଲାଭକଲେ ଅର୍ଦ୍ଧମୃତ ଅବସ୍ଥାରେ । ସ୍ୱାସ୍ଥ୍ୟ ଏପରି ଆଶଙ୍କାଜନକ ଅବସ୍ଥାକୁ ଆସିଯାଇଥିଲା ଯେ ତାଙ୍କର ମୃତ୍ୟୁ ଆସନ୍ନ ଅନୁମାନ କରି ସେ ଦେଶବାସୀଙ୍କ ଉଦ୍ଦେଶ୍ୟରେ ଏକ ଉଇଲ୍ ମଧ୍ୟ ୧୯୭୫ ଡିସେମ୍ବର ୫ ତାରିଖରେ ରେଜିଷ୍ଟ୍ରୀ କରି ରଖିଗଲେ । ସେଥିରେ ଲେଖାଥିଲା :

"ମୁଁ କାଲେ ଏ ଦୁନିଆରୁ ଅନ୍ତର ହୋଇଯିବି, ସେଥିସକାଶେ ଏତଦ୍ଦ୍ୱାରା ମୁଁ ଆମର ଭାରତ ତଥା ବାହାରେ ପୃଥିବୀରେ ଥିବା ମୋର ଅନ୍ୟ ବନ୍ଧୁମାନଙ୍କୁ ଏକଥା ଜଣାଇ-ରଖୁଛି ଯେ, ଦେଶର ବର୍ତ୍ତମାନ ପରିସ୍ଥିତି ବିଷୟରେ ମୋର ୧୯୭୫ ଜୁନ ୨୫ ତାରିଖରେ ଯାହା ମତ ଥିଲା ଏବଂ ଜୁଲାଇ ୧୯୭୫ରେ ମୁଁ ଯାହା ପ୍ରଧାନମନ୍ତ୍ରୀଙ୍କୁ ଚିଠିଦ୍ୱାରା ଜଣାଇଥିଲି, ସେହି ମତ ମୋର ସେହିପରି ବଳବତ୍ତର ରହିଛି । ଏହା ପରେ ଯାହାସବୁ କୁତ୍ସିତ ଘଟଣା ଘଟିଯାଇଛି, ସେଥିରେ ମୋର ଆଶଙ୍କା ହିଁ ସତ୍ୟ ବୋଲି ପ୍ରମାଣିତ ହୋଇଛି । ମୋ ସମ୍ପର୍କରେ କୌଣସି ବିକୃତ ଧାରଣା ସୃଷ୍ଟି କରିବାକୁ ଚେଷ୍ଟା କରାଗଲେ, ତାହା ସଂଶୋଧନ କରିବା ଲାଗି କାଲେ ମୁଁ ଆଉ ଜୀବିତ ନ ଥିବି, ସେଥିଲାଗି ଏହା ପରିଷ୍କାର କରିଦେଇଯାଉଛି ।

ବର୍ତ୍ତମାନ ଯେଉଁ ନିର୍ମମ ଦମନରାଜ ଚାଲିଛି, ସେଥିରୁ ଆମ ଦେଶବାସୀ ମୁକ୍ତିଲାଭ କରିବାକୁ ସମର୍ଥ ହୋଇପାରିବେ ବୋଲି ମୁଁ ଆଶା ପୋଷଣ କରୁଛି ।"

ଜୟପ୍ରକାଶଙ୍କର ଅସୁସ୍ଥ ଅବସ୍ଥାର ପୂର୍ଣ୍ଣ ଉପଶମ ହୋଇନାହିଁ, କିନ୍ତୁ ଏଭଳି ମରଣାପନ୍ନ ପରିସ୍ଥିତିରୁ ସେ ଉଦ୍ଧାର ପାଇଲେ । ବମ୍ବେରେ ସେହି ଅସୁସ୍ଥ ଅବସ୍ଥାରେ ପଡ଼ି ସୁଦ୍ଧା ତାଙ୍କର ଏକ ଉଦ୍ୟମ ଚାଲିଲା ବିରୋଧୀ ଶକ୍ତିଗୁଡ଼ିକୁ ଏକାଠି କରିବା । ତାଙ୍କ ଉପସ୍ଥିତିରେ ବିଭିନ୍ନ ଦଳର ପ୍ରତିନିଧିଶ୍ରେଣୀସ୍ଥ ବ୍ୟକ୍ତିମାନଙ୍କୁ ଡକାଇ କିଭଳି ଧରଣରେ ସବୁ ଦଳ ପରସ୍ପର ଭିତରେ ବୁଝାମଣା କରି ମିଳିମିଶି କାର୍ଯ୍ୟ କରିପାରିବେ—ଏହାହିଁ ଥିଲା ମୁଖ୍ୟ ଉଦ୍ଦେଶ୍ୟ । ଗାନ୍ଧୀଜୀ ଯେପରି ପରିସ୍ଥିତି ଦେଖି ସଂଗ୍ରାମର ଆଭିମୁଖ୍ୟ ସ୍ଥିର କରନ୍ତି, ସେହିଭଳି ଜୟପ୍ରକାଶଙ୍କ ମତରେ ଦେଶରେ ରାଜବନ୍ଦୀ ଖଲାସ, ଏମର୍ଜେନ୍‌ସି ପ୍ରତ୍ୟାହାର ଏବଂ ପୂର୍ଣ୍ଣ ଗଣତାନ୍ତ୍ରିକ ଅଧିକାର ଫେରସ୍ତ ନଆସିବା ପର୍ଯ୍ୟନ୍ତ ସଂଗ୍ରାମର ଅବସାନ ହୋଇ ନପାରେ; କେବଳ ପରିସ୍ଥିତି ବିଚାରକୁ ନେଇ ସଂଗ୍ରାମର ଧାରାକୁ ଭିନ୍ନଭାବରେ ପରିଚାଳନା କରିବାକୁ ପଡ଼ିବ । ଯେଉଁଠି ସମ୍ଭବ, ଆଇନ ଅମାନ୍ୟ ପୂର୍ବପରି ଚାଲୁରହିଲା । ଅଶୋକ ମେହେତାଙ୍କ ଖଲାସ ପରେ ସଂଗଠନ କଂଗ୍ରେସ ତରଫରୁ ଆଇନ ଅମାନ୍ୟ ସପ୍ତାହ ପାଳନ କରାଯାଇ ସର୍ଦ୍ଦାର ପଟେଲଙ୍କ କନ୍ୟା ୭୫ବର୍ଷ ବୟସ୍କା ମଣିବେନ୍ ପଟେଲ ଗାନ୍ଧୀଜୀଙ୍କ ଦାଣ୍ଡିଯାତ୍ରା ପରି ପଦଯାତ୍ରା କରି ଗିରଫ ହେଲେ । ସ୍ଥାନେ ସ୍ଥାନେ ପ୍ରତିରୋଧ ଶକ୍ତି ପୁଣି ତେଜିଉଠିଲା । ଜୟପ୍ରକାଶ ଅପେକ୍ଷାକୃତ ସୁସ୍ଥ ହୋଇଗଲେ ଏବଂ ମୂତ୍ରାଶୟ-ବିଶୋଧନ ଯନ୍ତ୍ର ସାଧାରଣ ଚାନ୍ଦାରେ ତାଙ୍କ ପାଇଁ କିଣାହୋଇ ପାଟନାରେ ରଖାଗଲା । ଦେଶବାସୀ ତାଙ୍କ ପ୍ରତି ଶ୍ରଦ୍ଧାର ନିଦର୍ଶନସ୍ୱରୂପ ଏକଟଙ୍କା ଲେଖାଏଁ ଚାନ୍ଦା ଦେଇ ପ୍ରାୟ ୩ଲକ୍ଷ ଟଙ୍କା ଉଠାଇ ଡାଏଲେସିସ୍ ମେସିନ୍ ବିଦେଶରୁ ଅଣାଇଦେଲେ ଏବଂ ତାହା ତାଙ୍କ ପାଟନା ବାସଭବନରେ ରଖାଗଲା ।

ପାଟନା ଫେରିଯିବା ପୂର୍ବରୁ ବମ୍ବେରେ ଏକ ବିବୃତି ଦେଇ ଜୟପ୍ରକାଶ କହିଥିଲେ :

"ମୁଁ ସରକାରଙ୍କୁ ନିବେଦନ କରିବି ଯେ ଦେଶରେ ଶୀଘ୍ର ସାଧାରଣ ନିର୍ବାଚନ କରାଯାଉ ଏବଂ ମୁକ୍ତ ଓ ସ୍ୱାଧୀନ ନିର୍ବାଚନ ଲାଗି ଆବଶ୍ୟକୀୟ ପରିସ୍ଥିତି ସୃଷ୍ଟି କରାଯାଉ । ଦେଶରେ କୌଣସି ଆଭ୍ୟନ୍ତରୀଣ ଅଶାନ୍ତି ନାହିଁ, ହିଂସା ନାହିଁ କିମ୍ବା ବୈଦେଶିକ ଆକ୍ରମଣର ଆଶଙ୍କା ନାହିଁ । ହାତରୁ କ୍ଷମତା ଚାଲିଯିବା ଭୟରେ ଶ୍ରୀମତୀ ଗାନ୍ଧୀ ନିର୍ବାଚନ ସ୍ଥଗିତ ରଖିଛନ୍ତି ।

ମୁକ୍ତ ଓ ସ୍ୱାଧୀନ ନିର୍ବାଚନ କରିବାକୁ ହେଲେ ଏମର୍ଜେନ୍‌ସି ଉଠାଇବାକୁ ପଡ଼ିବ; ନାଗରିକ ସ୍ୱାଧୀନତା, ସଭାସମିତି କରିବା ଅଧିକାର ଏବଂ ସମ୍ବାଦପତ୍ରର ସ୍ୱାଧୀନତା ଫେରାଇ ଦେବାକୁ ପଡ଼ିବ । ଏହା ଯଦି ନହୁଏ, ତେବେ ମୁଁ ବିରୋଧୀଦଳକୁ ପରାମର୍ଶ ଦେବି ନିର୍ବାଚନ ବର୍ଜନ କରିବା ନିମନ୍ତେ ।

ଲୋକ ଦବିଯାଇନାହାନ୍ତି; ଏବଂ ମୁକ୍ତ ଓ ସ୍ୱାଧୀନ ନିର୍ବାଚନରେ କଂଗ୍ରେସ ଦଳ ପରାସ୍ତ ହେବ, ଏଥିରେ ମୋ ମନରେ ତିଳେ ହେଲେ ସନ୍ଦେହନାହିଁ ।"

ଏହା ହେଉଛି ୧୯୭୬ ଜୁଲାଇ ୧୪ ତାରିଖର ଘଟଣା । ସେତେବେଳକୁ ହୁଏତ ଜୟପ୍ରକାଶ ଅନୁଭବ କରୁଥିଲେ ଯେ ଶ୍ରୀମତୀ ଗାନ୍ଧୀ ଆଉ ବେଶିଦିନ ନିର୍ବାଚନ ସ୍ଥଗିତ ରଖିପାରିବେନାହିଁ । ତେଣୁ ସେ ବିରୋଧୀଦଳ ଗୁଡ଼ିକ ଭିତରେ କୌଣସି ପ୍ରକାର ବୁଝାମଣା କରିବା ଲାଗି ଏବଂ ସମସ୍ତେ ମିଶି ଯେଉଁଭଳି କଂଗ୍ରେସ ବିରୋଧରେ ଜଣେ ପ୍ରାର୍ଥୀ ଛିଡ଼ା କରି ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବେ ସେଥିଲାଗି ସେମାନଙ୍କୁ ନିବେଦନ କଲେ ଏବଂ ନିଜ ଆଡ଼ୁ ଉଦ୍ୟମ ଜାରିରଖିଥିଲେ । ସେ ମଧ୍ୟ ଅନୁଭବ କରୁଥିଲେ ଯେ, ଏହା ଆଗରୁ ନହୋଇପାରିଲେ ହୁଏ ତ ନିର୍ବାଚନ ଘୋଷଣା ବେଳକୁ ବିରୋଧୀ ଶକ୍ତି ସମୟ ପାଇବେ ନାହିଁ ପ୍ରସ୍ତୁତ ସକାଶେ ।

ପାଟଣା ଯିବା ପଥରେ ଜୟପ୍ରକାଶ ନାରାୟଣ ଅସୁସ୍ଥତା ସତ୍ତ୍ୱେ ବିନୋବାଜୀଙ୍କ ସହ ସାକ୍ଷାତ୍ କଲେ ଏବଂ ସେ ସାକ୍ଷାତ୍‌ର ବିବରଣୀ କିଛି ପ୍ରକାଶିତ ହୋଇ ନ ଥିଲା । ସମ୍ବାଦପତ୍ରକୁ ବାରଣ କରାଯାଇଥିଲା ଜୟପ୍ରକାଶଙ୍କର ପାଟନା ଯାତ୍ରା ଏବଂ ସେଠାରେ ପହଞ୍ଚିବାର ବିବରଣୀ ପ୍ରକାଶ ନକରିବା ନିମନ୍ତେ । ତଥାପି ଏନ୍. ଜି. ଗୋରେଙ୍କ ସମ୍ପାଦକତ୍ୱରେ ପ୍ରକାଶ ପାଉଥିବା 'ପିପୁଲ୍' ସମ୍ବାଦପତ୍ର ଏହି ସାକ୍ଷାତ୍‌ର ଏକ ସତ୍ୟ ସମାଚାର ପ୍ରକାଶ କରିଥିଲା । ସେଥିରେ ଉଲ୍ଲେଖଥିଲା—

"ବିନୋବାଜୀ ଗୋହତ୍ୟା ସମସ୍ୟାରେ ଅତ୍ୟନ୍ତ ଜଡ଼ିତ ହୋଇପଡ଼ିଥିଲେ ପୁଣି ଏମର୍ଜେନ୍‌ସି ଚାଲୁରହିଥିବାରୁ ଅତ୍ୟନ୍ତ ଅସୁଖୀ ଅଛନ୍ତି । ସେ ତଥାପି ଆଶା ରଖିଛନ୍ତି ଯେ ଏମର୍ଜେନ୍‌ସି ଉଠିଯିବ ଏବଂ ଅକ୍ଟୋବର କିମ୍ବା ନଭେମ୍ବର ମାସ ବେଳକୁ ରାଜନୀତିକ ବନ୍ଦୀମାନେ ମୁକ୍ତିଲାଭ କରିବେ । ୧୯୭୭ ଫେବୃୟାରି ମାର୍ଚ୍ଚ ମାସ ବେଳକୁ ହୁଏତ ସାଧାରଣ ନିର୍ବାଚନ ହୋଇଯିବ । କିନ୍ତୁ 'ମିସା' ଆଇନରେ ଅଟକ ରଖିବା କାଳ ବୃଦ୍ଧି କରାଯାଇଥିବାରୁ ଏମର୍ଜେନ୍‌ସି ଶୀଘ୍ର ଉଠିଯିବା ସଂକାନ୍ତରେ ସେ ସନ୍ଦିହାନ ହୋଇ ପଡ଼ିଛନ୍ତି ।"

ଶେଷକୁ ୧୯୭୭ ଜାନୁୟାରି ୧୮ ତାରିଖରେ ଇନ୍ଦିରା ଗାନ୍ଧୀ ସାଧାରଣ ନିର୍ବାଚନର ଘୋଷଣା କଲେ; ଏମର୍ଜେନ୍‌ସି କୋହଳ କରାଗଲା ସିନା, ପୂରା ଉଠିଲା ନାହିଁ । ସେହିଦିନହିଁ ମୋରାରଜୀ ଦେଶାଇଙ୍କୁ ଜେଲରୁ ଖଲାସ କରିଦିଆଗଲା ।

ଇନ୍ଦିରା ଗାନ୍ଧୀ ତାହିଁ ପୂର୍ବରୁ ଯେଉଁସବୁ ବିବୃତି ଦେଇଥିଲେ ଏବଂ କ୍ରମେ ଅଧିକ ପ୍ରଭୁତ୍ୱ ବିସ୍ତାର କରିଥିଲେ, ଏପରିକି ନିଜ ସହଯୋଗୀଙ୍କପ୍ରତି ଯେମିତି ଅସହିଷ୍ଣୁ ଭାବ ଦେଖାଉଥିଲେ, ସେଥିରେ ନିର୍ବାଚନ ଘୋଷଣାରେ ରାଜନୀତିକ ମହଲ ଚକିତ ହୋଇଗଲେ । ଇନ୍ଦିରା ଗାନ୍ଧୀଙ୍କର ପ୍ରତ୍ୟେକ କାର୍ଯ୍ୟରେ ଏକ ନାଟକୀୟ ଢଙ୍ଗ ଥାଏ ଏବଂ ପଶ୍ଚାତ୍‌ରେ କିଛି ଚମତ୍କାରିତା ଦେଖାଇବାର ବାସନା ଥାଏ । ଏହା ସେହିରୂପକ ଏକ ଘୋଷଣା । କେବଳ ଯେ ବିରୋଧୀ

ଦଳଗୁଡ଼ିକ ନିର୍ବାଚନ ହେବାର ଆଶା ତ୍ୟାଗ କରିଥିଲେ ତାହା ନୁହେଁ; କଂଗ୍ରେସ ଲୋକେ ବି ସଂବିଧାନ ସଂଶୋଧନ କରାଯାଇ ପାର୍ଲିମେଣ୍ଟର ଆୟୁଷ ବୃଦ୍ଧି କରାଯାଇଥିବା ହେତୁ ନିଶ୍ଚିନ୍ତ ଆରାମ୍‌ରେ କାଳ କାଟୁଥିଲେ ।

ଅନେକ ସ୍ଥଳରେ ଆଲୋଚନା ହୋଇଛି, ସମସ୍ତ ପ୍ରକାର କ୍ଷମତା ହାତକୁ ନେଇଗଲା ପରେ ଇନ୍ଦିରା ଗାନ୍ଧୀ ଏଭଳି ଏକ ବିପଦ କାହିଁକି ବରଣ କଲେ ? ତାହାର କାରଣ ଯାହା ପରେ ପ୍ରକାଶିତ ବିଭିନ୍ନ ସଂବାଦରୁ ଅନୁମାନ କରାଯାଉଛି । ଇନ୍ଦିରା ଗାନ୍ଧୀ ସରକାରୀ ଗୁପ୍ତଚରଙ୍କ ରିପୋର୍ଟରୁ ଏକପ୍ରକାର ନିଶ୍ଚିତ ଥିଲେ ଯେ ସେ ବହୁମତ ପାଇବେ । ପରେ ସେ ନିଜେ ସ୍ୱୀକାର କରିଛନ୍ତି ଯେ ଗୁଇନ୍ଦା ବିଭାଗ ତାଙ୍କୁ ଭୁଲ ରିପୋର୍ଟ ଦେଇଦେଲା । ସେ ଅନୁଭବ କରୁଥିଲେ ଯେ, ସଞ୍ଜୟ ଗାନ୍ଧୀଙ୍କି ରାଜନୀତି କ୍ଷେତ୍ରରେ ପ୍ରତିଷ୍ଠିତ କରିବା ପ୍ରଚେଷ୍ଟାରେ ବିରୋଧ ଦେଖାଯାଉଛି । ପାଶ୍ଚାତ୍ୟ ଦେଶମାନଙ୍କରେ ସେ ଗଣତନ୍ତ୍ରକୁ ହତ୍ୟା କରିଛନ୍ତି ବୋଲି ଅଭିଯୋଗ ଆହୁରି ପ୍ରବଳରୁ ପ୍ରବଳତର ହେଲାଣି । ଏପରିକି ଏକ ବର୍ଷ ପରେ ଗୁରୁତର ଅପରାଧରେ ଜର୍ଜ ଫର୍ଣ୍ଣାଣ୍ଡିସ୍‌ଙ୍କୁ ଗିରଫ କରାଯାଇ ବିଚାର କରାଯାଉଥିଲେ ସୁଦ୍ଧା ପାଶ୍ଚାତ୍ୟ ଦେଶରେ ଏହାର ଭିନ୍ନ ପ୍ରତିକ୍ରିୟା ହୋଇଛି ଏବଂ ଜୟପ୍ରକାଶଙ୍କ ମୁକ୍ତିଲାଗି ଯେମିତି ବହିର୍ଜଗତରେ ବିଧିବଦ୍ଧ ଆନ୍ଦୋଳନ ଚାଲିଥିଲା, ସେହିଭଳି ଆନ୍ଦୋଳନ ବ୍ୟାପିଯାଇଛି । ଇଉରୋପର ତିନୋଟି ଦେଶ ପଶ୍ଚିମ ଜର୍ମାନୀର ଭୂତପୂର୍ବ ଚାନ୍‌ସେଲର ୱିଲି ବ୍ରାଣ୍ଟ, ଅଷ୍ଟ୍ରିଆର ଚାନ୍‌ସେଲର ବ୍ରୁନୋ କ୍ରିଇସ୍କି ଏବଂ ସୁଇଡ଼େନର ପ୍ରଧାନମନ୍ତ୍ରୀ ପ୍ରଭୃତି ଗିରଫର ପ୍ରତିବାଦ କରି ତାଙ୍କୁ ଲେଖିଥିଲେ—"ଆମେ ଗଣତାନ୍ତ୍ରିକ ବିଶ୍ୱରେ ଭାରତର ସୁଖ୍ୟାତି ରକ୍ଷା ଦୃଷ୍ଟିରୁ ଭାରତ ସରକାର ଏବଂ ବିଶେଷ ଭାବରେ ଇନ୍ଦିରା ଗାନ୍ଧୀଙ୍କୁ ଅନୁରୋଧ କରୁଛୁ ସେ ତାଙ୍କ ନିଷ୍ପତ୍ତିର ପୁନର୍ବିଚାର କରିବା ନିମନ୍ତେ ।" ଆନ୍ତର୍ଜାତିକ ଜଗତର ପ୍ରତିକୂଳ ବାୟୁମଣ୍ଡଳ ଇନ୍ଦିରାଙ୍କ ମନକୁ ଆନ୍ଦୋଳିତ କରୁଥିଲା । ତେଣୁ ସେ ବିଚାରିଲେ, ସେ ଏପର୍ଯ୍ୟନ୍ତ ଯାହା କରିଯାଇଛନ୍ତି, ତା' ପଶ୍ଚାତ୍‌ରେ ଲୋକସମର୍ଥନ ରହିଛି ବୋଲି ସାଧାରଣ ନିର୍ବାଚନରେ ପ୍ରମାଣିତ ହୋଇଗଲେ ତାଙ୍କର ଭବିଷ୍ୟତ ପନ୍ଥା ଅନୁସରଣ କରିବାରେ ଆଉ କୌଣସି ଅନ୍ତରାୟ ରହିବ ନାହିଁ । ୪୨ତମ ସଂବିଧାନ ସଂଶୋଧନ ଦ୍ୱାରା ପାର୍ଲିମେଣ୍ଟ ଓ ଶାସକ କର୍ତ୍ତୃପକ୍ଷଙ୍କ ହାତରେ ଯେଉଁ ଅଖଣ୍ଡ କ୍ଷମତା ରହିଯାଇଛି ତାହା ବଳରେ ପାର୍ଲିମେଣ୍ଟରେ ଆଉ ସଂବିଧାନ ସଂଶୋଧନ କରିବାଭଳି ବହୁମତ ତାଙ୍କୁ ନ ମିଳିଲେ ସୁଦ୍ଧା ନିଜର ନିର୍ବିରୋଧ ନେତୃତ୍ୱ ଓ କର୍ତ୍ତୃତ୍ୱ ପ୍ରତିଷ୍ଠା କରିବାରେ କିଛି ଅସୁବିଧା ଉପୁଜିବ ନାହିଁ । ଜାନୁଆରୀ ୧୮ରେ ନିର୍ବାଚନ ଘୋଷଣା ଏବଂ ମାର୍ଚ୍ଚ ୧୬ ତାରିଖରେ ନିର୍ବାଚନ — ଏଥିଭିତରେ ଯେ ସ୍ୱଳ୍ପ ସମୟ ରହିଲା, ତହିଁରେ ବିରୋଧୀ ପକ୍ଷ ଏକଜୁଟ ହୋଇ ସଂଗଠିତ ହୋଇପାରିବେ ନାହିଁ ବୋଲି ତାଙ୍କର ବିଶ୍ୱାସ ଥିଲା ।

ପ୍ରାଥମିକ ଅବସ୍ଥାରେ ମଧ୍ୟ ସେହିଭଳି ମନେହେଉଥିଲା । ମୋରାରଜୀ ଦେଶାଇ ମୁକ୍ତି ପାଇଲେ ସତ, ମାତ୍ର ସନ୍ଦେହ ପ୍ରକାଶ କଲେ—ଆମ ହାତରେ ସମୟ ବହୁତ କମ୍ ।

ପ୍ରାୟ ୧୭ ହଜାରରୁ ଅଧିକ ବନ୍ଦୀ ଜେଲରେ ରହିଥାଆନ୍ତି । ଅଟଳବିହାରୀ ବାଜପେୟୀ ପ୍ରମୁଖ ସେମାନଙ୍କର ଶୀଘ୍ର ମୁକ୍ତି ଦାବି କରି ପ୍ରଧାନମନ୍ତ୍ରୀଙ୍କି ଭେଟିଲେ । ପ୍ରଧାନମନ୍ତ୍ରୀ କହିଲେ ରାଜ୍ୟମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ତୁରନ୍ତ ମୁକ୍ତି ଦେବା ନିମନ୍ତେ; ମାତ୍ର ସେମାନେ ଶୁଣୁନାହାନ୍ତି । ଏମିତି ଅସୁବିଧାଜନକ ପରିସ୍ଥିତି ବେଳେ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା କେତେଦୂର ସମୀଚୀନ ହେବ ଏହା ଯେନି କେତେକଙ୍କ ମନରେ ସନ୍ଦେହ ଉପୁଜୁଥାଏ । ମାତ୍ର ଏତିକିବେଳେ କାଳବିଳମ୍ବ ନକରି ଜୟପ୍ରକାଶ ନାରାୟଣ ପାଟନାରୁ ଘୋଷଣା କରିଦେଲେ ଯେ ଏ ଆହ୍ୱାନର ମୁକାବିଲା କରିବାକୁ ହେବ ଏବଂ ଏହା ହେବ ଏକଚ୍ଛତ୍ରବାଦ ସହିତ ଗଣତନ୍ତ୍ରବାଦର ଲଢ଼ାଇ । ବିରୋଧୀଦଳଗୁଡ଼ିକ ଏକତ୍ର ହୋଇ ଲଢ଼େଇ କଲେ ସେ ପୂର୍ଣ୍ଣ-ପ୍ରାଣରେ ସେମାନଙ୍କୁ ଭଗ୍ନ-ସ୍ୱାସ୍ଥ୍ୟ ସତ୍ତ୍ୱେ ସାହାଯ୍ୟ କରିବେ ।

ଏହା ପରେ ସାରା ବାୟୁମଣ୍ଡଳର ବିଦ୍ୟୁତ୍ ବେଗରେ ପରିବର୍ତ୍ତନ ଘଟିଲା । ମୋରାର୍ଜୀ ମୁକ୍ତି ପାଇବାର ୨୪ ଘଣ୍ଟା ମଧ୍ୟରେ ଜନତା ପାର୍ଟି ଗଠିତ ହୋଇଗଲା । ଜନତା ପାର୍ଟି ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବା ନିମନ୍ତେ ସ୍ଥିର କରି ନିଜର ନିର୍ବାଚନ ଘୋଷଣାପତ୍ର ଏବଂ ନିର୍ବାଚନ ସଂକେତ ଆଦି ସମ୍ବନ୍ଧରେ ଅବିଳମ୍ବେ ସିଦ୍ଧାନ୍ତ କରିନେଲା । ସେହି ଅବସରରେ ଦିଲ୍ଲୀରେ ବିରାଟ ଜନସଭାରେ ମୋରାର୍ଜୀ ଦେଶାଇ ଓ ଜନତା ଦଳକୁ ଅପୂର୍ବ ସମର୍ଥନ ମିଳିଲା । ନିର୍ବାଚନରେ ଲଢ଼ିବା ନିମନ୍ତେ ଅର୍ଥ ଏକ ଅତ୍ୟନ୍ତ ଆବଶ୍ୟକୀୟ ଅଂଶ । ଜନତାଠାରୁ ଅର୍ଥ ସଂଗୃହୀତ ହେଲା । ସେହି ପ୍ରଥମ ସଭାରେ ପ୍ରାୟ ଏକ ଲକ୍ଷରୁ ଅଧିକ ଟଙ୍କା ସଂଗୃହୀତ ହୋଇଗଲା । ଲୋକଙ୍କ ଅନ୍ତରର ପୁଞ୍ଜୀଭୂତ ଅସନ୍ତୋଷ ଏକ ବିରାଟ ଆକାରରେ ଆତ୍ମପ୍ରକାଶକଲା ଇନ୍ଦିରା ଶାସନକୁ ମୂଳପୋଛ କରିବା ନିମନ୍ତେ । ଦେଶର ସବୁ ପ୍ରାଦେଶିକ ଓ ଅନ୍ୟ ଦଳଗୁଡ଼ିକ ଭିତରେ ଏକତା ଆଣିବାରେ କମ୍ୟୁ ପରସ୍ପର ବୁଝାମଣାରେ ପହଞ୍ଚିବାରେ ସମର୍ଥ ନହେଲେ ସୁଦ୍ଧା ଜନତା ଦଳ ସ୍ଥୂଳତଃ ଲୋକଙ୍କର ଇଚ୍ଛାକୁ ଚରିତାର୍ଥ କରିବା ନିମନ୍ତେ ଏକପ୍ରକାର ବିକଳ୍ପ ଶକ୍ତିରୂପେ ଛିଡ଼ାହେଲା ।

ଏତିକିବେଳେ ଇନ୍ଦିରା ଗାନ୍ଧୀଙ୍କର ସମସ୍ତ ପରିକଳ୍ପନା ଧୂଳିସାତ୍ ହୋଇଗଲା । ଜଗଜ୍ଜୀବନ ରାମଙ୍କର କଂଗ୍ରେସ ଦଳ ତ୍ୟାଗ ହେତୁ । ସେ ଆଉ କେତେକଙ୍କୁ ସାଙ୍ଗରେ ଧରି "କଂଗ୍ରେସ ଫର୍ ଡେମୋକ୍ରାସି" ବୋଲି ଏକ ଦଳର ଘୋଷଣାକଲେ । ଲେଖକର ଏବେ ବି ବିଶ୍ୱାସ ଯେ ଇନ୍ଦିରା ଗାନ୍ଧୀଙ୍କର ଏକଚ୍ଛତ୍ରବାଦ ବିରୋଧରେ ପ୍ରତିବାଦ କରି ଯେତେ ନୁହେଁ, ନିଜର ଆତ୍ମରକ୍ଷା ନିମନ୍ତେ ଜଗଜ୍ଜୀବନ ରାମ ଏଭଳି ପଦକ୍ଷେପ ନେଲେ । ସେ ବୁଝିପାରିଥିଲେ ଯେ ନୂତନ କଂଗ୍ରେସରେ ସଞ୍ଜୟ ଓ ଇନ୍ଦିରା ଗାନ୍ଧୀଙ୍କର ପ୍ରଭୁତ୍ୱ ବଢ଼ିବ ଏବଂ ସେ ଏତେ ବର୍ଷ କାଳ ଯେଉଁଭଳି ସୁବିଧାଜନକ ସ୍ଥାନ ବରାବର ଅଧିକାର କରିଆସିଛନ୍ତି ତାହା ଆଉ ସମ୍ଭବ ହେବ ନାହିଁ । ଏକଚ୍ଛତ୍ରବାଦ ବିରୁଦ୍ଧରେ ସଂଗ୍ରାମ କରିବାର ଉଦ୍ଦେଶ୍ୟ ଥିଲେ ବହୁପୂର୍ବରୁ ଯେତେ ସୁଯୋଗ ମିଳିଥିଲା, ସେ ସେଥିରେ ମୁଣ୍ଡଗୁଞ୍ଜି ରହିନଥାନ୍ତେ ଏବଂ ୧୯୭୬ ଶେଷଭାଗକୁ ହୋଇଥିବା ନିଖିଳ ଭାରତ କଂଗ୍ରେସ କମିଟିର ଗୌହାଟି ଅଧିବେଶନରେ ଇନ୍ଦିରା ଗାନ୍ଧୀଙ୍କ

ବ୍ୟତୀତ ଏ ଦେଶକୁ ରକ୍ଷା କରିବାଲାଗି ଆଉ କୌଣସି ନେତୃତ୍ୱ ଜନ୍ମ ହୋଇନାହିଁ ବୋଲି ଏକ ଲଜ୍ଜାହୀନ ବକ୍ତବ୍ୟ ଦେଇ ନ ଥାନ୍ତେ । ତାହାଛଡ଼ା କଂଗ୍ରେସ ତ୍ୟାଗ ପରେ ସେ ସିଧାସଳଖ ଜନତା ପାର୍ଟିରେ ଯୋଗଦାନ ନକରି ନିଜର ଏକ ଦଳ ଗଠନ କଲେ—ପରେ ଅବଶ୍ୟ ଅବସ୍ଥାଚକ୍ରରେ ପଡ଼ି ଜନତାଦଳରେ ମିଶିଲେ ଏବଂ ନିର୍ବାଚନ ଲଢ଼େଇ ଜନତା ଦଳର ସଂକେତ ଓ ପତାକା ତଳେ କରିଥିଲେ । କିନ୍ତୁ ପ୍ରଧାନମନ୍ତ୍ରୀ ନିର୍ବାଚନ ବେଳକୁ ବି ଶ୍ରୀ ରାମ ଦଳ ଯେଉଁଲି ମନୋଭାବ ପ୍ରଦର୍ଶନ କଲେ, ସେଥିରୁ ସ୍ପଷ୍ଟ ଅନୁମାନ ହେଲା ଯେ, ସ୍ୱତନ୍ତ୍ର ସି.ଏଫ୍. ଡ଼ି., ଗଠନକରି ସେ ବିଚାରକରିଥିଲେ, ଏହା ଏପରି ଏକ ଅବସ୍ଥାରେ ରହିବ ଯାହାର ସମର୍ଥନ ବିନା କଂଗ୍ରେସ କିମ୍ବା ଜନତା ଦଳ କେହି ମନ୍ତ୍ରିମଣ୍ଡଳ ଗଠନରେ ସମର୍ଥ ହେବେ ନାହିଁ ଏବଂ ତାଙ୍କର ସହଯୋଗ ନେବାକୁ ପରିସ୍ଥିତି ସେମାନଙ୍କୁ ବାଧ୍ୟକରିବ ଯାହାଫଳରେ ତାଙ୍କ ପକ୍ଷରେ ପ୍ରଧାନମନ୍ତ୍ରୀ ହେବା ଅନିବାର୍ଯ୍ୟ ହୋଇପଡ଼ିବ । ସେହିଭଳି ଅତି ସନ୍ଦେହଜନକ ରାଜନୀତିକ ପ୍ରବୃତ୍ତିର ବ୍ୟକ୍ତିଙ୍କୁ ନେଇ ତାଙ୍କର ଦଳ ଗଠିତ ହୋଇଥିଲା ଏବଂ ସି.ପି.ଆଇ.ର ପୂର୍ଣ୍ଣ ସମର୍ଥନ ରହିଥିଲା ଉକ୍ତ ଦଳ ପ୍ରତି । କିନ୍ତୁ ଏକଛତ୍ରବାଦକୁ ଧ୍ୱଂସ କରିଦେବାଲାଗି ଦେଶର ଜନତା ଯେଉଁଭଳି ମନସ୍ଥ କରିନେଇଥିଲା, ସେଥିରେ କୌଣସି ସୁବିଧାବାଦକୁ ପ୍ରଶ୍ରୟ ମିଳିଲା ନାହିଁ । ନିର୍ବାଚନ ପରେ ଜନତାର ଚାପ ଫଳରେ ଜଗଜ୍ଜୀବନ ରାମଙ୍କ ଦଳ ଜନତା ଦଳରେ ପୂର୍ଣ୍ଣରୂପେ ସାମିଲ ହୋଇଗଲା ।

ନିର୍ବାଚନ ଘୋଷଣା ପରେ ଦେଶରେ ଏଭଳି ଅଭୂତପୂର୍ବ ଜନଜାଗରଣ ଦେଖାଗଲା—ସତେ କି ଏ ଦେଶରେ ଏକ ଶାନ୍ତିପୂର୍ଣ୍ଣ ନୂତନ ବିପ୍ଳବ ସଂଘଟିତ ହେଉଛି । ଅଲକ୍ଷ୍ୟରେ ଜନତା ହୃଦୟରେ ଏକଛତ୍ରବାଦ ବିରୁଦ୍ଧରେ ଅସନ୍ତୋଷ ଭିତରେ ଭିତରେ କୁହୁଳୁଥିଲା । ପରିବାର-ନିୟୋଜନରେ ହୋଇଥିବା ମାତ୍ରାଧିକ୍ୟ, ଶାସନରେ ସ୍ୱେଚ୍ଛାଚାରିତା ଏବଂ ଭ୍ରଷ୍ଟାଚାର ସେସବୁକୁ ଇନ୍ଧନ ଯୋଗାଇପାରିଥାଏ । ଦେଶର କୋଟି କୋଟି ଶିକ୍ଷିତ ଅଶିକ୍ଷିତ ସ୍ୱାଧୀନତା ଉପଭୋଗ କରିଥିବା ଭାରତବାସୀ ସେମାନଙ୍କର ସ୍ୱାଧୀନତା ଅପହରଣ ଅପମାନକୁ ସହ୍ୟ କରିପାରିଲେ ନାହିଁ; ବିଦ୍ରୋହ କରିଉଠିଲେ । ଜନତା ଦଳ ନିଜର ନିର୍ବାଚନ ଇସ୍ତାହାର ପ୍ରକାଶ କଲେ—ଅନ୍ୟ ଦଳଗୁଡ଼ିକ ମଧ୍ୟ ସେହିଭଳି ଲୋକଙ୍କ ସମ୍ମୁଖରେ ସେମାନଙ୍କ ପକ୍ଷସମର୍ଥନକାରୀ ପ୍ରତିଶ୍ରୁତିମାନ ବାଢ଼ିଲେ—ମାତ୍ର ଲୋକଙ୍କ ଦୃଷ୍ଟି ସେଥିକି ନଥିଲା । ଜନତା ଏକ ଅପମାନ ଓ କଳଙ୍କର ବୋଝ ଭାରତବର୍ଷରୁ ଉଠାଇ ଫୋପାଡ଼ିଦେବାକୁ ଚାହୁଁଥିଲା । ଲୋକଙ୍କ ଅନ୍ତରର କଥା ଜୟପ୍ରକାଶ ଠିକ୍ ବୁଝିପାରିଥିଲେ । ତେଣୁ ସେ ନିର୍ବାଚନ ଆଗରେ ମୁଖ୍ୟ ସମସ୍ୟାଭାବରେ ରଖିଲେ—ଏକ ପକ୍ଷରେ ଏକଛତ୍ରବାଦ, ଅନ୍ୟ ପକ୍ଷରେ ଗଣତନ୍ତ୍ରବାଦ; ଏକ ପକ୍ଷରେ ଦାସତ୍ୱ, ଅନ୍ୟ ପକ୍ଷରେ ମୁକ୍ତି ।

ନିର୍ବାଚନ ଘୋଷଣାର ଦୁଇମାସ ପରେ ଭୋଟ ନେବାକୁ ସ୍ଥିର କରାଗଲା । ମାର୍ଚ୍ଚ ୧୬ ତାରିଖରୁ ଭାରତର ଚାରିଆଡ଼େ ଭୋଟଗ୍ରହଣ ଆରମ୍ଭ ହେବାର ଥିଲା । ଏହି ଦୁଇମାସ ଭିତରେ ଲୋକଙ୍କ ଆଶା-ଆକାଙ୍‌କ୍ଷା ବିଭିନ୍ନ ଭାବରେ ପ୍ରକାଶପାଇଲା ।

ଲୋକଙ୍କୁ ନିର୍ବାଚନ ନିମନ୍ତେ ଅନ୍ତିମ ନିବେଦନ କରି ଜୟପ୍ରକାଶ କହିଲେ :

''ଏହା ହେଉଛି ଶେଷ ସୁଯୋଗ । ଯଦି ଭୁଲ କର, ତେବେ ୧୯ ମାସର ଅତ୍ୟାଚାର ପୁଣି ୧୯ ବର୍ଷର ଆତଙ୍କରାଜରେ ପରିଣତ ହେବ ।

ଆମେ ନ୍ୟାୟ ଉପରେ ପ୍ରତିଷ୍ଠିତ ପ୍ରଗତି କାମନା କରୁ ।

ଏହି ଲକ୍ଷ୍ୟ ହାସଲ ଲାଗି ପ୍ରଥମେ ଲୋଡ଼ା ସ୍ୱାଧୀନତା । ଆମେ ଗତ ୧୯ ମାସ ଭିତରେ ଦେଖିଲେ ସ୍ୱାଧୀନତା ହରଣ କରି କପରି ଦରିଦ୍ରଶ୍ରେଣୀକୁ ଦଳାଦିଆଗଲା; ସେମାନଙ୍କୁ ଉପର ସ୍ତରର ଏକ କ୍ଷୁଦ୍ର ଗୋଷ୍ଠୀଙ୍କ ଧନୀ କରିବା ନିମନ୍ତେ ଦାସରୂପେ ବ୍ୟବହାର କରାଗଲା । ସ୍ୱାଧୀନତା ହରାଇଲେ ଆମେ ସବୁ ହରାଇବସିବା ।

ଆମେ ଚାହୁଁ ଆମର କର୍ମଚାରୀ ଓ ନିର୍ବାଚିତ ପ୍ରତିନିଧିମାନେ ଲୋକଙ୍କ ପାଖରେ ଦାୟୀ ହୁଅନ୍ତୁ ।

ସ୍ୱାଧୀନତା ରହିଥିଲେ ସେମାନଙ୍କଠାରୁ ଏପରି ଆଚରଣ ଆଦାୟ କରିହେବ । ଯଦି ବିଚାର ବିଭାଗକୁ ନିକମା କରି କ୍ଷମତା କାଢ଼ି ନିଆଯାଏ, ତେବେ ଶାସକମାନେ ଆଉ କାହାକୁ କାହିଁକି ମାନିବେ ? ଯଦି ଭ୍ରଷ୍ଟାଚାର କଣ ଓ କେମିତି ହେଉଛି ସେ ବିଷୟରେ ତୁମେ ଲେଖିପାରିବ ନାହିଁ କି କହିପାରିବ ନାହିଁ, ତେବେ ଦେଶରୁ ଭ୍ରଷ୍ଟାଚାର କେମିତି ଦୂର ହୋଇପାରିବ ? ଯଦି କୌଣସି ପଦବୀ ନଥିବା ଲୋକେ ଭିତରପଟେ ରହି ସବୁ କାମ ପରିଚାଳନା କରନ୍ତି, ତେବେ କିଏ କାହାକୁ ଦାୟୀ କରିବ ?

ଏହି ଅନ୍ଧକାର କାଳ ୧୯ ମାସରେ କଣ ଘଟିନଗଲା ! ଲକ୍ଷ ଲକ୍ଷ ଲୋକ ଜେଲରେ ସଢ଼ିଲେ, ତାଙ୍କ ଉପରେ ଯାବତୀୟ ନିର୍ଯାତନା କରାଗଲା, ତାଙ୍କର ପରିବାରବର୍ଗ ଅଶେଷ ଦୁଃଖ ଭୋଗକଲେ, ଆଇନକୁ ଖର୍ବ କରିଦିଆଗଲା ଯାହା ଫଳରେ ସାଧାରଣ ନାଗରିକ ତାର ସ୍ୱାଭାବିକ ଜୀବନରୁ ବଞ୍ଚିତହେଲା । ଆଇନ ଲଙ୍ଘନ କରି ଅନ୍ୟାୟ ଭାବରେ ଲୋକଙ୍କଠାରୁ ଜବରଦସ୍ତି ଧନ ଆଦାୟ କରାଗଲା । ଏସବୁ ଅକସ୍ମାତ୍ ଘଟିଗଲା ନାହିଁ—ଏକଛତ୍ରବାଦର ଏହାହିଁ ହେଉଛି ସ୍ୱାଭାବିକ ଗତି ।

ଏକ ମୁକ୍ତ ସ୍ୱାଧୀନ ସମାଜରେ ଏ ସବୁ କିଛି ହୋଇପାରିନଥାନ୍ତା । ତୁମେ ଯଦି ଏ ସବୁ ବିଷୟ ଆଲୋଚନା କରିବା ଲାଗି ସୁବିଧା ପାଇଥାନ୍ତ, ସଙ୍ଗଠିତ ହୋଇ ଏହାର ବିରୋଧ କରିଥାନ୍ତ, ସମ୍ବାଦପତ୍ରରେ ଏ ବିଷୟରେ ଲେଖିପାରିଥାନ୍ତ, ତାହାହେଲେ ଜନମତ ଜାଗ୍ରତ ହୋଇ ଅତ୍ୟାଚାରୀର ସମ୍ମୁଖୀନ ହୋଇପାରିଥାନ୍ତା ।

ଗତ ଦୁଇମାସର ସ୍ୱାଧୀନତାକୁ ଅନ୍ଧକାର କାଳରେ ୧୯ ମାସ ସହ ତୁଳନା କର । ଏହି ଶାସକମାନେ କହୁଥିଲେ ଯେ ଜନତା ଏମର୍ଜେନ୍‌ସିର ସୁବିଧା ଭୋଗ କରୁଛନ୍ତି ଏବଂ ନିର୍ବାଚନ ଚାହୁଁନାହାନ୍ତି । ଆଜି ତାଙ୍କୁ ନିର୍ବାଚନ ବନ୍ଦ କରିଥିବା ଯୋଗୁଁ ଲୋକଙ୍କ ପାଖରେ କ୍ଷମା ମାଗିବାକୁ ପଡ଼ୁଛି ଏବଂ ନାନା କୈଫିୟତ୍ ଦେବାକୁ ପଡ଼ୁଛି । ଏକ ସୀମିତ ସ୍ୱାଧୀନତା

ମାତ୍ର ଦୁଇମାସ ହେଲା ମିଳିଛି; କିନ୍ତୁ ସେହି ଶାସକ ଲୋକଙ୍କ ପାଖରେ ମୁଣ୍ଡ ପାତିବାକୁ ବାଧ୍ୟ ହେଉଛନ୍ତି ।

ତୁମେ କଣ ସେହି ୧୯ ମାସର ଦାସ୍ତ୍ୱଶ୍ୱାସନତା ଓ ପାଶବିକତା ପୁଣି ଫେରି-ଆସିବାକୁ ଚାହଁ ? ପ୍ରାୟ ଯେଉଁ ୩୦ ହଜାର ଭାଇଭଉଣୀ ଏବେ ସୁଦ୍ଧା ଜେଲ୍‌ରେ ସଢ଼ୁଛନ୍ତି, ସେମାନେ ଅନିର୍ଦ୍ଦିଷ୍ଟକାଳ ଲାଗି ଜେଲ୍‌ରେ ରହନ୍ତୁ, ଏହା କଣ ତୁମର ଇଚ୍ଛା ! ତୁମେ କଣ ପୁଣି ସେହି ଅବସ୍ଥାକୁ ଯିବାକୁ ଚାହଁ ଯେଉଁଥିରେ ବିନା କାରଣରେ ତୁମକୁ ପୁଣି ଗିରଫ କରାଯିବ, ବିନା ବିଚାରରେ ଅନିର୍ଦ୍ଦିଷ୍ଟ କାଳ ବନ୍ଦୀ ହୋଇ ରହିବ ! ଶାସକମାନେ ତୁମପ୍ରତି ଯଥେଚ୍ଛା ବ୍ୟବହାର କରିବେ ଏବଂ ତୁମ ପରିବାର ବି କଣ ହେଉଛି କିଛି ଜାଣିବେ ନାହିଁ !

କୌଣସି ଚିନ୍ତା କଥାରେ ଭୁଲ ନାହିଁ । ଅର୍ଜୁନ ପରି ଦୃଢ଼ ରହି ଏବଂ ମୂଳକେନ୍ଦ୍ର ସମସ୍ୟାରୁ ମନ ଅନ୍ୟ ଆଡ଼କୁ ନ ଯାଉ । ଆମ ଆଗରେ ସମସ୍ୟା ହେଉଛି—

ସ୍ୱାଧୀନତା ବନାମ ଦାସତ୍ୱ
ଗଣତନ୍ତ୍ର ବନାମ ପାଶବିକ ଏକଚ୍ଛତ୍ରବାଦ

ମନେରଖ ଏହି ସବୁ କଳା ଆଇନ ଶାସକଦଳ କରିଛି ଏବଂ ତା'ରି ଉପରେ ଏକଚ୍ଛତ୍ରବାଦ ପ୍ରତିଷ୍ଠିତ ହୋଇଛି । ସେମାନେ ପୁଣି ସୁଯୋଗ ପାଇଲେ ସେହି ସବୁ ଆଇନ ଉପଯୋଗ କରିବେ ।

ଜୟପ୍ରକାଶଙ୍କର ଏଭଳି ଆହ୍ୱାନ ଓ ଉଦ୍ୟମ ହେତୁ କଂଗ୍ରେସ ଓ ଇନ୍ଦିରା ଗାନ୍ଧୀଙ୍କ ପକ୍ଷ ଆକ୍ରମଣ କରିବା ପରିବର୍ତ୍ତେ ଆତ୍ମରକ୍ଷାରେ ହିଁ ନିବିଷ୍ଟ ରହିଗଲା । ୫୨୪ ଲୋକସଭା ସ୍ଥାନ ଭିତରୁ ୧୦୦ଟି ସ୍ଥାନରେ କଂଗ୍ରେସ ଏକମୁଖୀ ପ୍ରତିଯୋଗିତାର ସମ୍ମୁଖୀନ ହେଲା । ଏହା ଭାରତର ଗଣତାନ୍ତ୍ରିକ ନିର୍ବାଚନ ଇତିହାସରେ ଏକ ଅପୂର୍ବ ସଫଳତା । କାରଣ ଦେଶରେ ବରାବର ଶତକଡ଼ା ପଚାଶ ଭାଗ ଭୋଟରୁ କମ୍ ପାଇ ସୁଦ୍ଧା ବିରୋଧ ଭୋଟ ବାଣ୍ଟି ହୋଇ-ଯାଉଥିବାରୁ କଂଗ୍ରେସ ଅଧିକ ସଂଖ୍ୟକ ସ୍ଥାନ ପାର୍ଲିମେଣ୍ଟରେ ଦଖଲ କରି ରାଜୁତି କରୁଥିଲା ।

ଦ୍ୱିତୀୟରେ ଜୟପ୍ରକାଶଙ୍କର ଏଭଳି ଧ୍ୱନି ଦେବା ଫଳରେ ଦଳ ଉପରେ ଦୃଷ୍ଟି ନରହି ଜନତାର ଦୃଷ୍ଟି ରହିଲା ଦାସତ୍ୱ ଓ ଏକଚ୍ଛତ୍ରବାଦ ଉପରେ । ଜନତା ଦଳ ଯେଭଳି ଭାବରେ ବିଚ୍ଛିନ୍ନ ଗୋଷ୍ଠୀଙ୍କୁ ନେଇ ଗଢ଼ା, ସେଥିରେ ଯେମିତି ପରସ୍ପରବିରୋଧୀ ଶକ୍ତି ଓ ବ୍ୟକ୍ତି ଜୁଟିଛନ୍ତି, ଦଳ ଭିତରେ ଯେଭଳି ଭାବରେ ଅନେକ ଅବାଞ୍ଛନୀୟ ଓ ସୁବିଧାବାଦୀ ବ୍ୟକ୍ତିବିଶେଷ ପ୍ରବେଶ କରିଛନ୍ତି ଏବଂ ଏବେ ଜନତାଦଳର ପୂର୍ଣ୍ଣ ସମ୍ମିଶ୍ରଣରେ ସେମାନେ ଯେଭଳି ଅନ୍ତରାୟ ସୃଷ୍ଟି କରୁଛନ୍ତି, ସେଥିରେ ଦଳଗତ ବିଚାର ଭୋଟରଙ୍କ ସମ୍ମୁଖରେ ପ୍ରଧାନ ସମସ୍ୟା ହୋଇ ରହିଥିଲେ ଲୋକେ ସେ ହିସାବରେ କଂଗ୍ରେସଦଳ ସବୁଠାରୁ ଉତ୍ତମ ସଂଗଠିତ ଓ ଦୃଢ଼ ଦଳ ବୋଲି ଗ୍ରହଣ କରିଥାଆନ୍ତେ । ନିର୍ବାଚନ ଦ୍ୱନ୍ଦ୍ୱକୁ ସେହିଭଳି ରୂପଦେବା ନିମନ୍ତେ ଇନ୍ଦିରା ଗାନ୍ଧୀ ତାଙ୍କ ନିର୍ବାଚନ ଭାଷଣମାନଙ୍କରେ ବହୁ ଉଦ୍ୟମ

କରି କହୁଥିଲେ—ବିରୋଧୀ ଦଳ ଏକ ଖେଚେଡ଼ି । ସେମାନଙ୍କ ଭିତରେ କିଛି ସାମଞ୍ଜସ୍ୟ ନାହିଁ, ଭାବଗତ ବା ବ୍ୟକ୍ତିଗତ ମିଳନ ନାହିଁ, ନେତୃତ୍ୱ ନାହିଁ, ତେଣୁ ଦେଶକୁ ଅସ୍ଥିରତା ଆଡ଼କୁ ଟାଣିନେବ ଏବଂ ଭାରତବର୍ଷର ଘରଆଡ଼େ ଚାହିଁ ରହିଥିବା ବିଦେଶୀ ଶତ୍ରୁଙ୍କୁ ସୁଯୋଗ ମିଳିବ ଦେଶରେ ଆଭ୍ୟନ୍ତରୀଣ ଗଣ୍ଡଗୋଳ ସୃଷ୍ଟି କରିବା ନିମନ୍ତେ । ବିଦେଶୀ ଶକ୍ତିମାନେ ନିର୍ବାଚନକୁ ଅର୍ଥ ସାହାଯ୍ୟ କରୁଛନ୍ତି ବୋଲି ମଧ୍ୟ ଇନ୍ଦିରା ଗାନ୍ଧୀ ପ୍ରକାଶ୍ୟ ଅଭିଯୋଗ କରିଥିଲେ । ମାତ୍ର ସେଥିକୁ ଲୋକଙ୍କ ଦୃଷ୍ଟି ଗଲାନାହିଁ ଏବଂ ଲୋକେ ଦଳର ଭଲମନ୍ଦ ବା ନିର୍ବାଚନ ଇସ୍ତାହାରକୁ ବିଚାରକୁ ନେଲେନାହିଁ । ଏହି ବିଚାର ଏଭଳି ପ୍ରବଳଭାବରେ ଲୋକଙ୍କ ମନରେ ପ୍ରବେଶ କଲା ଯେ, ଲୋକେ ଇନ୍ଦିରା ଗାନ୍ଧୀଙ୍କି ଏକଛତ୍ରବାଦର ପ୍ରତୀକ ଓ ସେ ତାଙ୍କ ପରିବାରର ଶାସନ ଏ ଦେଶରେ ଚଳାଇବେ ବୋଲି ବିଶ୍ୱାସ କରିଥିଲେ ଓ ତାହାର ବିରୋଧରେ ଭୋଟ ଦେଲେ । ଇନ୍ଦିରା ଗାନ୍ଧୀ ନିଜେ ଓ ତାଙ୍କ ଉତ୍ତରାଧିକାରୀ ରୂପେ ଗଢ଼ି-ଉଠୁଥିବା ସଞ୍ଜୟ ଗାନ୍ଧୀ ମଧ୍ୟ ନିର୍ବାଚନରେ ପରାସ୍ତ ହେଲେ । ପ୍ରଧାନମନ୍ତ୍ରୀ ନିର୍ବାଚନ ମକଦ୍ଦମାରେ ମଧ୍ୟ ହାରିଲେ । ନିର୍ବାଚନ ଅସିଦ୍ଧ ଘୋଷଣା କରାଗଲା । ଛଅବର୍ଷ ପର୍ଯ୍ୟନ୍ତ ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତା କରିବା ନିମନ୍ତେ ସେ ଅଯୋଗ୍ୟ ଘୋଷିତ ହେଲା ପରେ ବି ଅତିରିକ୍ତ କ୍ଷମତା ପ୍ରୟୋଗ କରି, ଆଇନର ସଂଶୋଧନ କରି, ଜନତାର ଇଚ୍ଛା ବିରୁଦ୍ଧରେ କ୍ଷମତାକୁ ମାଡ଼ି ରହିବାପାଇଁ ତାଙ୍କର ଉଦ୍ୟମ ହେଲା ଭାରତ ଇତିହାସରେ ପ୍ରଥମ—ସେମିତି ସାଧାରଣ ନିର୍ବାଚନରେ ଏତେ ଅଧିକ ଭୋଟରେ କୌଣସି ପ୍ରଧାନମନ୍ତ୍ରୀ ପରାସ୍ତ ହେବା ହେଲା ପ୍ରଥମ । ବିଚାରବିଭାଗର ଫଇସଲାକୁ ଆଇନ-ଜାଲରେ ପରିବର୍ତ୍ତନ କରି ଗାଦିରେ ବସିବାର ପ୍ରଚେଷ୍ଟା ବିରୁଦ୍ଧରେ ଲୋକେ ସେହି ପାଞ୍ଚବର୍ଷ ଲାଗି ଶାସ୍ତି ଦେଲେ ତାଙ୍କୁ ଲୋକସଭାର ସଭ୍ୟପଦରୁ ବଞ୍ଚିତ କରି । ଇନ୍ଦିରା ଗାନ୍ଧୀ ହିଁ ଥିଲେ କଂଗ୍ରେସର ଅଦ୍ୱିତୀୟ ନେତ୍ରୀ । ତାଙ୍କର ଇଙ୍ଗିତରେ କଂଗ୍ରେସ ଓ ଦେଶ ଚାଳିତ ହେଉଥିଲା । ତାଙ୍କର ନାମରେ ଭୋଟ ମଗାଯାଉଥିଲା । ତାଙ୍କର ପ୍ରଭାବ କ୍ଷୁଣ୍ଣ ଏବଂ ନିର୍ବାଚନରେ ପରାଜୟ ଲଭିବା ସାଙ୍ଗେ ସାଙ୍ଗେ କଂଗ୍ରେସର ମଧ୍ୟ ତଦନୁରୂପ ଦଶା ହେଲା । ଲୋକସଭାର ୫୨୪ ସ୍ଥାନରୁ କଂଗ୍ରେସ ଅଧିକାର କରିପାରିଲା ମୋଟେ ୧୫୩ଟି ସ୍ଥାନ । ଜନତା ଦଳର ଓ ତାର ସମର୍ଥିତ ପ୍ରାର୍ଥୀମାନେ ବିପୁଳ ସଂଖ୍ୟାରେ ନିର୍ବାଚିତ ହୋଇ ଆସିଲେ । ତାଙ୍କର ସଂଖ୍ୟା ହେଲା ୨୯୮ । ଭାରତ ଇତିହାସର ଗତି ବଦଳିଲା ।

ମାର୍ଚ୍ଚ ୨୧ ତାରିଖରେ ନିର୍ବାଚନ ଫଳ ବାହାରିଲା ପରେ ଆଉ କାଳକ୍ଷେପ ନକରିଯାଇ ଜନତା ଓ ସହଯୋଗୀଦଳଗୁଡ଼ିକର ନିର୍ବାଚିତ ପ୍ରତିନିଧିମାନେ ଦିଲ୍ଲୀରେ ଏକଜୁଟ ହେଲେ ଏବଂ ଜୟପ୍ରକାଶ ସମସ୍ତଙ୍କୁ ଏକ ନୂଆ ଶପଥପତ୍ର ଗାନ୍ଧୀଜୀଙ୍କ ସମାଧି ପୀଠ ରାଜଘାଟଠାରେ ଦିଆଇଲେ । ସେ ଶପଥପତ୍ରରେ ଥିଲା :

"ଏକ ଗଣତନ୍ତ୍ରରାଷ୍ଟ୍ରର ନାଗରିକଙ୍କର ଜୀବନ ଓ ସ୍ୱାଧୀନତା ଉପଭୋଗର ଏକ ଅଲଂଘନୀୟ ଅଧିକାର ଅଛି । ଆମେ ଏହା ଅକ୍ଷୁଣ୍ଣ ରଖିବୁ ।

ଆମ ଜୀବନର ସର୍ବୋତ୍ତମ ସେବାରୂପେ ଆମେ ଜନତା, ବିଶେଷ ଭାବରେ ଦୁର୍ବଳଶ୍ରେଣୀର, ଅଭ୍ୟୁଦୟ ନିମନ୍ତେ ଗୃହୀତ କାର୍ଯ୍ୟକ୍ରମକୁ ସଫଳ କରିବା ଲାଗି ନିଜକୁ ସମର୍ପଣ କରୁଛୁ ।

ମହାତ୍ମା ଗାନ୍ଧୀଙ୍କର ଜୀବନ ଓ କାର୍ଯ୍ୟପନ୍ଥାକୁ ଦିଗ୍‌ଦର୍ଶନ ବୋଲି ସ୍ୱୀକାର କରି ସେଥିଲାଗି ଆତ୍ମୋତ୍ସର୍ଗ ମନୋଭାବ ପୋଷଣ କରି ଆମେ ଦେଶର ଏକତା ଓ ସଂହତି ରକ୍ଷା ଏବଂ ବିକାଶ ନିମନ୍ତେ ଐକ୍ୟବଦ୍ଧ ହୋଇ କାର୍ଯ୍ୟ କରିବା ନିମନ୍ତେ ଆପଣାକୁ ସମର୍ପଣ କରୁଛୁ ।

ବ୍ୟକ୍ତିଗତ ଓ ସାଧାରଣ ଜୀବନରେ ଆମେ ସଚ୍ଚୋଟ ଓ ନିରାଡ଼ମ୍ବର ଆଚରଣ ଅନୁସରଣ କରିବୁ ।

ମହାତ୍ମା ଗାନ୍ଧୀ ଆମର ଯାତ୍ରାପଥକୁ ଆଲୋକିତ କରନ୍ତୁ, ଏହି ଆଶୀର୍ବାଦ ଭିକ୍ଷା କରୁଛୁ ।"

୨୪ ତାରିଖ ଦିନ ମୋରାରଜୀ ଭାଇ ଦେଶାଇଙ୍କ ନେତୃତ୍ୱରେ ପ୍ରଥମଥର ଲାଗି ବେକଂଗ୍ରେସୀ ଜନତା ଦଳର ସରକାର କେନ୍ଦ୍ରରେ ଶାସନଭାର ଗ୍ରହଣ କଲା । କଂଗ୍ରେସ ଦଳ ପାର୍ଲିମେଣ୍ଟରେ ବିରୋଧୀ ଦଳ ଭାବରେ ସ୍ୱୀକୃତ ହେଲା ।

୧୯୭୭ ମେ ପହିଲା ତାରିଖରେ ଜନତା ଦଳ ବିଧିବଦ୍ଧ ଭାବରେ ଗଠିତ ହୋଇଛି ଏବଂ ଚନ୍ଦ୍ରଶେଖର ଏହାର ସଭାପତି ରୂପେ ନିର୍ବାଚିତ ହୋଇଛନ୍ତି ।

ଜନତା-ପାର୍ଟି ସରକାର ଗଠିତ ହେଲାପରେ ସମ୍ବାଦପତ୍ର ଓ ଅନ୍ୟ ନାଗରିକ ସ୍ୱାଧୀନତା ଅଧିକାର ଫେରିଆସିଛି । ସମ୍ବିଧାନକୁ ସମ୍ପୂର୍ଣ୍ଣ ଗଣତାନ୍ତ୍ରିକ କରିବା ନିମନ୍ତେ କେତେକ ସଂଶୋଧନର ପ୍ରସ୍ତାବ ରହିଛି । ସରକାର ଓ ଜନତା ଦଳ ଗାନ୍ଧୀ-ପନ୍ଥା ଅନୁସରଣ କରି କାର୍ଯ୍ୟ କରିବା ନିମନ୍ତେ ଘୋଷଣା କରିଛି । କେତେକ ଆସେମ୍ବ୍ଲି ନିର୍ବାଚନରେ ଜନତା ଦଳ ହିଁ ଜୟଯୁକ୍ତ ହୋଇଛି ।

ଏକଚ୍ଛତ୍ରବାଦ କବଳରୁ ଦେଶ ମୁକ୍ତିଲାଭ କରିଛି—ଏହା ହେଉଛି ସର୍ବାପେକ୍ଷା ବଡ଼ ବିଜୟ । ଭାରତବର୍ଷର ଇତିହାସରେ ଏକ ନୂତନ ଅଧ୍ୟାୟ ଖୋଲିଲା । ଜୟପ୍ରକାଶଙ୍କ ଯାତ୍ରା-ପଥରେ ସେ ଅଗ୍ରସର ହୋଇଛନ୍ତି; କିନ୍ତୁ ଏଥିରେ ସମ୍ପୂର୍ଣ୍ଣ ବିପ୍ଳବର ଲକ୍ଷ୍ୟ ପୂର୍ଣ୍ଣ ହେଲା କି ? ଏକଚ୍ଛତ୍ରବାଦ ଦୂର ହେଲା ସତ, ମାତ୍ର ଗଣତନ୍ତ୍ର ପଦ୍ଧତି ଦୃଢ଼ଭାବରେ ସ୍ଥାପିତ ହେଲାଣି କି ? ଜନତା ଦଳ ସରକାରରେ ବସିଗଲା ପରେ ଯେଉଁ ପରିବର୍ତ୍ତନ କାମନା କରାଯାଉଛି ତାହାର ପରିପୂରଣ ହେବ କି ? ଏହାର ଜବାବ ଜୟପ୍ରକାଶ ନିଜେ ତାଙ୍କର 'କାରାଗାର କାହାଣୀ'ରେ ଲେଖିଛନ୍ତି : ସେ ନିଜେ ପ୍ରଶ୍ନ କରିଛନ୍ତି—ଯଦି ବିରୋଧ ଶକ୍ତି ଜୟଲାଭ କରେ, ବର୍ତ୍ତମାନ ଛବିର ପରିବର୍ତ୍ତନ ହୋଇଯିବ କି ? ଉତ୍ତରରେ କହିଛନ୍ତି—"ମୋର ଆଶଙ୍କା ହେବ ନାହିଁ । ନୂଆ ନୂଆ ଆଇନ ପାସ୍ ହୋଇଯିବ । ଅର୍ଥବ୍ୟୟ କରାଯିବ—ଧର, ଦୁର୍ନୀତି ବି ଦୂରହୋଇଯିବ । ଏ ସମସ୍ତ କାର୍ଯ୍ୟ କରିବା ସତ୍ତ୍ୱେ ଯେଉଁ ଗଠନତନ୍ତ୍ର ପ୍ରଥା ଏବଂ ପଦ୍ଧତି ଉପରେ ଆମ ସମାଜ ପ୍ରତିଷ୍ଠିତ, ତାର କଣ ପରିବର୍ତ୍ତନ ହୋଇପାରିବ ? ମୋ ମତରେ ହୋଇ ପାରିବନାହିଁ ।"

ଏହା ଯେତେବେଳେ ଜନତାଦଳର ଜନ୍ମଦାତା ଏବଂ ସମ୍ପୂର୍ଣ୍ଣ କ୍ରାନ୍ତିର ବାହକ ଓ ନେତା ଜୟପ୍ରକାଶଜୀଙ୍କର ମତ, ତେବେ ସେ ସମ୍ପୂର୍ଣ୍ଣ କ୍ରାନ୍ତିର ରୂପ କଣ ଏବଂ ତାହା ବୋଇଲେ କଣ ବୁଝାଏ ?

# ସଂପୂର୍ଣ୍ଣ କ୍ରାନ୍ତିର ଧାରା

ସଂପୂର୍ଣ୍ଣ କ୍ରାନ୍ତି ଗାନ୍ଧୀବାଦ ନୁହେଁ କିମ୍ବା ଏକ ଆଦର୍ଶବାଦ ନୁହେଁ । କ୍ରାନ୍ତିର ଅର୍ଥ ସୂଚାଉଛି ପରିବର୍ତ୍ତନ, ବିପ୍ଳବ—ତେଣୁ ଏହା ସଂପୂର୍ଣ୍ଣ ବିପ୍ଳବ—ଗାନ୍ଧୀମାର୍ଗରେ ଚାଳିତ ।

ଟ୍ରଟ୍‌ସ୍କି ଓ ଷ୍ଟାଲିନ୍‌ଙ୍କ ଭିତରେ ମତଭେଦ ହୋଇଥିଲା ସେ ସ୍ଥାୟୀ ବିପ୍ଳବ କଥା ଉଠାଇଥିଲେ ବୋଲି । ଷ୍ଟାଲିନ୍ ଲେନିନ୍‌ବାଦର ପ୍ରଧାନ ମୁଖପାତ୍ର ବୋଲି ନିଜକୁ ପ୍ରତିପାଦିତ କଲେ ଏବଂ ଏକ ସର୍ବଶକ୍ତିମାନ୍ ରାଷ୍ଟ୍ରକୁ ବଳଶାଳୀ କରି ସେହି ଦେଶରେ ବିପ୍ଳବ ହୋଇପାରିଲେ ତେଣିକି ଅନ୍ୟ ଦେଶକୁ ଏହା ପ୍ରସାରଲାଭ କରିବ; ଏହାହିଁ ଥିଲା ତାଙ୍କର ଉଦ୍ଦେଶ୍ୟ । ମାତ୍ର ସେଥିରେ ପୃଥିବୀର କମ୍ୟୁନିଷ୍ଟବାଦ ଆସିପାରିନାହିଁ—ତାହା ବଦଳରେ ପ୍ରତିଷ୍ଠିତ ହୋଇଛି ଏକ ଅଧିନାୟକବାଦ, ରାଷ୍ଟ୍ରବାଦ—ସର୍ବହରାର ରାଜୁତି ନହୋଇ ସର୍ବହରାଙ୍କ ଉପରେ ସର୍ବହରାଙ୍କ ନାମରେ ରାଜତ୍ୱ ଚାଲିଛି । କମ୍ୟୁନିଜମ୍‌ର ଲକ୍ଷ୍ୟ ହେଲା ରାଷ୍ଟ୍ରର କ୍ଷମତା ହ୍ରାସ ହେବ; ଶ୍ରେଣୀଭେଦ ରହିବ ନାହିଁ—ଏଭଳି ସମାଜ ହେବ ଯେଉଁଥିରେ କେହି ଅପରକୁ ଶୋଷଣ କରିବାକୁ ମଉକା ପାଇବ ନାହିଁ—ସମାଜର ଜଣେ କେହି କର୍ତ୍ତା ହୋଇ ରହିବ ନାହିଁ କିମ୍ବା ରାଷ୍ଟ୍ରର ଶାସନଦଣ୍ଡ ସମାଜକୁ ଚାଳନା କରିବ ନାହିଁ । ରାଷ୍ଟ୍ର ମଉଳିଯିବ ଏବଂ ପ୍ରତ୍ୟେକ ବ୍ୟକ୍ତି ନିଜର ଶକ୍ତି ଅନୁସାରେ ସମାଜଲାଗି ଦାନ କରିବ ଏବଂ ନିଜର ଆବଶ୍ୟକତା ଅନୁସାରେ ପାଇବ । ଏହା ହେଲା ଚରମ ଲକ୍ଷ୍ୟ । ଏଭଳି ସମାଜ କଣ କେବଳ ଗୋଟିଏ ଦଳ ବା ବିଭିନ୍ନ ଦଳର ସମଷ୍ଟି କ୍ଷମତାରେ ବସିଗଲେ, ଗୋଟିଏ ଦେଶରେ ହେଉ ବା ବହୁ ଦେଶରେ ହେଉ ସରକାରୀ କଳ ଜରିଆରେ ପ୍ରତିଷ୍ଠା ହୋଇପାରିବ ! କ୍ଷମତାରେ ବସିଗଲେ କିମ୍ବା କ୍ଷମତାର ଅଧିକାରୀ ହୋଇଗଲେ ତାହା ଏକ ନ୍ୟସ୍ତସ୍ୱାର୍ଥରେ ପରିଣତ ହୋଇଯାଏ । ଯେମିତି ଅର୍ଥନୀତିକ କ୍ଷେତ୍ରରେ ଯେଉଁମାନେ ଥରେ ଏକ ସୁବିଧାଭୋଗୀ ଶ୍ରେଣୀ ହୋଇଯାଆନ୍ତି; ସେମାନେ ସେହି ପ୍ରଥା ଓ ରୀତିକୁ ମଜବୁତ୍ କରିବାକୁ ଚାହାନ୍ତି ଏବଂ ଅନ୍ୟ ପରିବର୍ତ୍ତନର ବିରୋଧ କରନ୍ତି, ସେମିତି କ୍ଷମତାସୀନ ରାଜନୀତିକ ଦଳ ଗୋଷ୍ଠୀର ଉଦ୍ୟମ ହୁଏ, ନିଜର ରାଜନୀତିକ ସ୍ଥିତିକୁ ଦୃଢ଼ ରଖିବାଲାଗି ପରିବର୍ତ୍ତନର ପ୍ରତିରୋଧ କରାଯାଏ । ତେଣୁ ଲୋକଙ୍କ ହାତକୁ କ୍ଷମତା ଆସେନା । ଟ୍ରଟ୍‌ସ୍କି ଏଭଳି ବିପଦର ଆଶଙ୍କା କରୁଥିଲେ ଏବଂ ତେଣୁ ସ୍ଥାୟୀ ବିପ୍ଳବର ଧ୍ୱନି ଦେଉଥିଲେ—ସ୍ଥାୟୀ ବା ସଂପୂର୍ଣ୍ଣ ବିପ୍ଳବର ଚିନ୍ତାଧାରାକୁ ଠିକ୍ ସମୁଦ୍ର ସାଙ୍ଗରେ ତୁଳନା କରାଯାଇପାରେ । ସମୁଦ୍ର କେବେ ସ୍ଥିର ରହିପାରେନା—ସ୍ଥିର ରହିବା ଏହାର ପ୍ରକୃତିବିରୋଧୀ—ସର୍ବଦା ମନ୍ଥନ ଏବଂ ହଲଚଲ । ନଦୀର ଗର୍ଭ ପୋତି ହୋଇଯାଏ, ନଦୀର ଗତି ବଦଳିଯାଏ, ସ୍ଥିର ଜଳରେ ପଟୁ ବସିଯାଏ, ନଦୀ ଶୁଷ୍କ ହୋଇଯାଏ କିମ୍ବା କେବେ ବର୍ଷାହେଲେ ଅଧିକ ଜଳ ପାହାଡ଼ରୁ, ବରଫ ତରଳି ହେଉ ବା

ବୃଷ୍ଟିପାତ ହୋଇ ହେଉ, ମୂଷଳଧାରାରେ ପ୍ରବେଶ କଲେ ଏହାର କଳେବର ବୃଦ୍ଧି ହୁଏ; ନଚେତ୍ କ୍ଷୀଣ ଅବସନ୍ନ ହୋଇ ପଡ଼ିଥାଏ; କିନ୍ତୁ ସମୁଦ୍ରପାଣି ଶୁଖିପାରେନା । ଏହା ଅତଳଗର୍ଭ, ଅକୂଳ; ଅଥଚ ଅଚଳ ନୁହେଁ, ପରିବର୍ତ୍ତନ ହେଉଥାଏ । ଭୂକମ୍ପ ହେଲେ ନଦୀ ପୋତିହୋଇଯାଏ, ନୂଆ ନଦୀ ବାହାରିପଡ଼େ; କିନ୍ତୁ କେବେ ସମୁଦ୍ରର ଗତି ପରିବର୍ତ୍ତନ ହେବା କଥା ଶୁଣାଯାଇନାହିଁ । ସମୁଦ୍ର ସବୁ କମ୍ପନ, ମନ୍ଥନ, ହଲ୍‌ଚଲ୍, ଅସ୍ଥିରତା ନିଜର କବଳରେ ଧାରଣ କରିଥାଏ, ଗ୍ରହଣ କରିନିଏ; ନିଜକୁ ବଦଳାଉଥାଏ, କେତେବେଳେ ବଡ଼ ଲହରୀ ତ କେତେବେଳେ ଶ୍ରେଷ୍ଠ । ଏହି ପରିବର୍ତ୍ତନପନ୍ଥୀ ଏବଂ ଅସ୍ଥିରତା ଯୋଗୁଁ ସମୁଦ୍ର ସ୍ଥାୟୀ । ବାସ୍ତବିକ ସମୁଦ୍ରକୁ ହିଁ ସ୍ଥାୟୀ ବିପ୍ଳବ—Perpetual revolution ବୋଲି କୁହାଯାଇପାରେ ।

ପରିବର୍ତ୍ତନ କେବେ ସ୍ଥାୟୀ ହୋଇପାରେନା; ବିପ୍ଳବ କେବେ ସ୍ଥିର ବା ନିର୍ଦ୍ଦିଷ୍ଟ ଢଙ୍ଗରେ ହୋଇପାରେନା ।

ସମ୍ପୂର୍ଣ୍ଣ ବିପ୍ଳବ କୌଣସି ମତବାଦ ନହେଲେ ସୁଦ୍ଧା ଗାନ୍ଧୀ-ପ୍ରଦର୍ଶିତ ମାର୍ଗରେ ଚାଳିତ । ସମ୍ପୂର୍ଣ୍ଣ ବିପ୍ଳବ ଗାନ୍ଧୀ ଆଦର୍ଶରେ ବିଶ୍ୱାସ କରେ । ସଂପୂର୍ଣ୍ଣ କ୍ରାନ୍ତି ଗାନ୍ଧୀ-ନିର୍ଦ୍ଦେଶିତ ଶାନ୍ତିପୂର୍ଣ୍ଣ ପରିବର୍ତ୍ତନରେ ବିଶ୍ୱାସ କରେ ଏବଂ ହିଂସାପଥକୁ ପରିତ୍ୟାଗ କରେ । ଜୟପ୍ରକାଶଜୀ ଆବ୍ରାହମ୍ ଲିଙ୍କନ୍‌ଙ୍କର 'ଜନତା ପାଇଁ, ଜନତାର ଓ ଜନତା ଦ୍ୱାରା ସରକାର୍' ଏକ ଅସମ୍ଭବ କଳ୍ପନା ବୋଲି ଯେଉଁମାନେ କହନ୍ତି, ସେ ମତକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ସେ ପରିଷ୍କାର କହନ୍ତି—ଜନତାଦ୍ୱାରା ହିଁ, ଜନତା ପାଇଁ ଓ ଜନତାର ସରକାର ହେବ—ଅନ୍ୟ କେହି କରି ଜନତା ପାଇଁ କଲେ ତାହା ଜନତାର ହୋଇ ରହିପାରେନା ।

ଏହିଠାରେ ହିଁ ଜୟପ୍ରକାଶଜୀ ଓ ବିନୋବାଜୀଙ୍କ ମତରେ ମୌଳିକ ପ୍ରଭେଦ । ସମ୍ପୂର୍ଣ୍ଣ କ୍ରାନ୍ତିର ଅର୍ଥ ହେଉଛି ସମଗ୍ର ସାମାଜିକ ଜୀବନ ଓ ସଂଗଠନର ସବୁ ସ୍ତରରେ ପରିବର୍ତ୍ତନ । ଶାନ୍ତିପୂର୍ଣ୍ଣ ଉପାୟରେ ଏ ପରିବର୍ତ୍ତନ ଆସିବ । ଶାନ୍ତିପୂର୍ଣ୍ଣରେ ହେଉଥିବା କ୍ରାନ୍ତି ନିଶ୍ଚୟ ସମୟସାପେକ୍ଷ ମଧ୍ୟ ହେବ; ହଠାତ୍ ତ୍ୱରିତ ହୋଇପାରିବ ନାହିଁ । ଆଗ ସମାଜର ମୌଳିକ ପରିବର୍ତ୍ତନ ହୋଇପାରିଲେ ତେବେ ଯାଇ ବ୍ୟକ୍ତିବିଶେଷ ବା ଗୋଷ୍ଠୀର ମାନସିକ ପରିବର୍ତ୍ତନ ସମ୍ଭବ । ଏହା ସାମାଜିକ ପ୍ରକୃତିଗତ ନିୟମ ମଧ୍ୟ । ସମାଜକୁ ବ୍ୟକ୍ତି ପ୍ରଭାବିତ କରେ ଏବଂ ସମାଜଦ୍ୱାରା ବ୍ୟକ୍ତି ଚାଳିତ ହୁଏ । ଏକକୁ ଛାଡ଼ି ଅପରର କୌଣସି ସ୍ୱାଧୀନ ସ୍ଥିତି ନାହିଁ ଏବଂ ସେଭଳି ସ୍ୱାଧୀନ ସ୍ଥିତିର ଅର୍ଥ ହେବ ଅରାଜକତା—ବିପ୍ଳବ ବା ପରିବର୍ତ୍ତନ ନୁହେଁ ।

ସମ୍ପୂର୍ଣ୍ଣ କ୍ରାନ୍ତି ଯେତେବେଳେ ସବୁସ୍ତରରେ ପରିବର୍ତ୍ତନ ଚାହୁଁଛି, ସେଥିରେ ରାଜନୈତିକ ପ୍ରକାର ବୈପ୍ଳବିକ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇପଡ଼ୁଛି । ତେଣୁ ଯେଉଁ ରାଜନୈତିକ ଶକ୍ତି ଶାସନ ଜାବୁଡ଼ି ବସିଥିବ ବା ବସିଛି, ତାହା ସହ ସଂଗ୍ରାମ ଅନିବାର୍ଯ୍ୟ—ସଂଗ୍ରାମ ହିଁ ସମ୍ପୂର୍ଣ୍ଣ କ୍ରାନ୍ତିର କାମନା । ଏଇଥିଲାଗି ଯେତେବେଳେ ଜନତାର ଦାବି ଶାନ୍ତିପୂର୍ଣ୍ଣ ଭାବରେ, କଥାବାର୍ତ୍ତାରେ ବା ମିଳାମିଶାରେ ସମାଧାନ କରିବା ନିମନ୍ତେ ଇନ୍ଦିରା ସରକାର

ଅସମ୍ମତ ହେଲା, ତାହାଁ ସହିତ ସଂଗ୍ରାମ ବା ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼ିଲା, ଏହା କେବଳ ଜୟପ୍ରକାଶ ଗୁହିଁଥିଲେ ହୋଇଯାଇ ନଥାନ୍ତା । କୌଣସି ବିପ୍ଳବ କେବେ ସେଭଳି ହୋଇ-ନାହିଁ । ଲୋକଙ୍କ ପ୍ରାଣରେ ସେହିଭଳି ଅସନ୍ତୋଷ, ଯୁବପ୍ରାଣରେ ସେହିଭଳି ବ୍ୟାକୁଳତା ରହିଥିବାରୁ ଏକ ବୈପ୍ଳବିକ ପରିସ୍ଥିତି ରହିଥିଲା ଏବଂ ସେଥିରେ ଜୟପ୍ରକାଶ ଇନ୍ଧନ ଦେଇ ତାକୁ ତେଜାଇଦେଲେ—ବିପ୍ଳବ-ବହ୍ନି ଜଳିଉଠିଲା – ଦେଶ ସାରା ବ୍ୟାପିଗଲା ।

ବିନୋବା ମଧ୍ୟ ଗାନ୍ଧୀପନ୍ଥୀ ଏବଂ କେହି କେହି ତାଙ୍କୁ ପ୍ରକୃତ ଗାନ୍ଧୀଭାବଧାରାର ପ୍ରତୀକ ବୋଲି ଗ୍ରହଣ କରନ୍ତି । ବିନୋବା ବିଶ୍ୱାସ କରନ୍ତି, ବିନା ସଂଗ୍ରାମରେ ବା ବିନା ସଂଘର୍ଷରେ ରାଜନୀତିକ ପ୍ରଥାର ପରିବର୍ତ୍ତନ ହୋଇଯିବ । ଅନ୍ତତଃ ଇନ୍ଦିରା ଗାନ୍ଧୀ ସରକାର ସହିତ କୌଣସି ପ୍ରକାର ସଂଘର୍ଷର ସେ ପକ୍ଷପାତୀ ନ ଥିଲେ । ସେ ହୁଏତ ବିଶ୍ୱାସ କରନ୍ତି ଯେ ନୈତିକ ଓ ଆଧ୍ୟାତ୍ମିକ ଶକ୍ତିବଳରେ ବା ସଂଘର୍ଷ ବିନା ଏକ ମାନସିକ ପରିବର୍ତ୍ତନରେ ଏହା ସମ୍ଭବ । ଏହା ହୋଇପାରିନାହିଁ—ବିନୋବାଙ୍କର ସେପରି ଉଦ୍ୟମ ବିଫଳ ହୋଇଛି । ଏତେ ବର୍ଷର ଭୂଦାନ, ଗ୍ରାମଦାନ ଓ ନୈତିକ ପ୍ରଚାରରେ ରାଜନୀତିକ ପ୍ରଥା ତ ଦୂରର କଥା, ମାନସିକ ପରିବର୍ତ୍ତନ ମଧ୍ୟ ସମ୍ଭବ ହୋଇନାହିଁ । ଯେଉଁମାନେ ଗ୍ରାମଦାନ କରିଛନ୍ତି ସେମାନଙ୍କ ଭିତରୁ କେତେକ ଫେରାଇନେଇଛନ୍ତି କିମ୍ବା ଯାହା ଦାନ କରିଛନ୍ତି, ସେଗୁଡ଼ିକରୁ କେତେକ ଅମଡ଼ା ଖାଲଢିପ ପାହାଡ଼ କନ୍ଦର—ଚାଷ ବା ବସବାସର ସଂପୂର୍ଣ୍ଣ ଅଯୋଗ୍ୟ । ତାର ଅର୍ଥ କେବଳ ହୃଦୟ ପରିବର୍ତ୍ତନ ଦ୍ୱାରା ସାମାଜିକ ଓ ରାଜନୀତିକ ପ୍ରଥାର ପରିବର୍ତ୍ତନ ସମ୍ଭବ ନୁହେଁ । ବିନୋବାଜୀ ଏବେ ବି ବଞ୍ଚିଛନ୍ତି—କାହିଁ ତାଙ୍କର ନୈତିକ ସମର୍ଥନ ଇନ୍ଦିରା ଗାନ୍ଧୀଙ୍କ ଉପରେ ବି ପ୍ରଭାବ ପକାଇପାରିଲା ନାହିଁ । ଇନ୍ଦିରା ଗାନ୍ଧୀ ଶେଷକୁ ତାଙ୍କ ରାଜନୀତିକ ଉଦ୍ଦେଶ୍ୟ ବିରୁଦ୍ଧରେ ଯିବାରୁ ଗୋବଧ ଲାଗି ବିନୋବାଙ୍କ ଆଶ୍ରମ ବି ତଲାସକଲେ ଏବଂ 'ମୈତ୍ରୀ' କାଗଜକୁ ଜବତ୍ କରନେଲେ । ସେ ନିଜେ 'ସରକାରୀ ସାଧୁ' ହୋଇପାରିଲେ—ତାଙ୍କର ସମ୍ମିଳନୀ ଓ ପ୍ରଚାର ଲାଗି ବିପୁଳ ସରକାରୀ ବ୍ୟବସ୍ଥା ହୋଇପାରିଲା । କାରଣ ତାଙ୍କର ମନୋଭାବ, ଆଚରଣ ଓ କାର୍ଯ୍ୟ ଏକଚ୍ଛତ୍ରବାଦକୁ ପ୍ରଶ୍ରୟ ଦେଲା ସିନା; ତାର ଶକ୍ତି ହ୍ରାସ କଲାନାହିଁ । ଲୋକଙ୍କର ନାଗରିକ ସ୍ୱାଧୀନତା ଖର୍ବ କରି ଓ ଶାସନର ଯାବତୀୟ ଦମନାସ୍ତ୍ର ପ୍ରୟୋଗରେ ଗୁଳିକାଣ୍ଡ, ହତ୍ୟା ଓ ଅକଥନୀୟ ଅତ୍ୟାଚାର ତାଙ୍କ ମତରେ ହେଲା ଅନୁଶାସନପର୍ବ । ଏହାଠାରୁ ବଳି ଗାନ୍ଧୀବାଦ ବା ଗାନ୍ଧୀପନ୍ଥାର ଆଉ କୁତ୍ସିତ ରୂପ କଣ ହୋଇପାରେ ! କାରଣ ଗାନ୍ଧୀଜୀ ନିଜେ କହିଛନ୍ତି—"ଯେଉଁ ଶାସନରେ ଲୋକେ ଭୟ କରି ମେଣ୍ଢାଭଳି ବାସ କରନ୍ତି, ତାକୁ ଗଣତନ୍ତ୍ର କୁହାଯାଇପାରେନା । ଗଣତନ୍ତ୍ର-ରାଜ୍ୟରେ ନାଗରିକ ସ୍ୱାଧୀନତା, କଥା ଓ କାର୍ଯ୍ୟର ପୂର୍ଣ୍ଣ ସ୍ୱାଧୀନତା ରକ୍ଷା କରିବାକୁ ହୁଏ ।" ତେଣୁ ବିନୋବାଙ୍କ ପନ୍ଥା ଗାନ୍ଧୀଜୀଙ୍କ ପ୍ରଦର୍ଶିତ ପନ୍ଥା ଓ ଗାନ୍ଧୀଜୀଙ୍କ ପରିକଳ୍ପିତ ସମାଜର ଅନୁକୂଳ ନୁହେଁ । ଜୟପ୍ରକାଶଜୀ ସଂପୂର୍ଣ୍ଣ ବିପ୍ଳବର ପରିଭାଷା ଓ କାର୍ଯ୍ୟକାରିତାର ପରିସର ବୃଦ୍ଧି କରି ଗାନ୍ଧୀଜୀଙ୍କର ପ୍ରକୃତ ହିଂସାତ୍ମକ ଅହିଂସାର ସାମାଜିକ କାନ୍ତି ପ୍ରୟୋଗର ପନ୍ଥା ଦେଖାଇଛନ୍ତି ।

ତେଣୁ ଏଥିରୁ ସ୍ପଷ୍ଟ ଯେ ସଂପୂର୍ଣ୍ଣ କ୍ରାନ୍ତି ଗାନ୍ଧୀମାର୍ଗରେ ଚାଲିଛି ହେଉଛି ଏବଂ ଦେଶ ଓ ସମାଜର ରାଜନୀତିକ, ଆର୍ଥିକ ଅନ୍ୟାନ୍ୟ ସକଳପ୍ରକାର କ୍ରାନ୍ତି ନିମନ୍ତେ ସଂଗ୍ରାମ ଅନିବାର୍ଯ୍ୟ ବୋଲି କହୁଛି । ଜୟପ୍ରକାଶ ଯେଉଁଭଳି ନିଜ କାରାଗାର ଡାଏରୀରେ ଏହାର ବିଶଦ ବ୍ୟାଖ୍ୟା କରିଛନ୍ତି, ସେଥିରେ ଉଲ୍ଲେଖ ରହିଛି, ଗୀତାର 'ଯଜ୍ଞ' ଶବ୍ଦର ଯେମିତି କେତେକ ବୋଧଗମ୍ୟ ଏବଂ କେତେକ ଅବୁଝା ଅର୍ଥ ବାହାରୁଛି, 'କ୍ରାନ୍ତି' ଶବ୍ଦକୁ ସେହିଭଳି ବିଚାର କରାଯାଇପାରେ । ସାମାଜିକ, ଆର୍ଥିକ, ରାଜନୀତିକ, ସାଂସ୍କୃତିକ ବିଚାରର ବା ବୌଦ୍ଧିକ, କ୍ଷଣିକ ଓ ଆଧ୍ୟାତ୍ମିକ କ୍ରାନ୍ତିକୁ ହିଁ ସଂପୂର୍ଣ୍ଣ କ୍ରାନ୍ତି କୁହାଯିବ—ଅର୍ଥାତ୍ ଏସବୁ କ୍ଷେତ୍ରରେ ପରିବର୍ତ୍ତନ ଘଟିଲେ ସଂପୂର୍ଣ୍ଣ କ୍ରାନ୍ତି ସମ୍ଭବହେବ ଏବଂ ତାହା ନ ଘଟିବା ପର୍ଯ୍ୟନ୍ତ ଏ ସଂଗ୍ରାମ ଚାଲିଥିବ ।

ପ୍ରଥମ ପର୍ଯ୍ୟାୟରେ କେବଳ ଗାନ୍ଧୀ-ପ୍ରଦର୍ଶିତ ମାର୍ଗରେ ଏକ ରାଜନୀତିକ କ୍ରାନ୍ତି ଘଟିଛି—ପ୍ରଚଳିତ ରାଜନୀତିକ ଶକ୍ତି ଓ ଏକଛତ୍ରବାଦର ବିଲୟ ଘଟିଛି । ଜନତା ଦଳ ଏହି ବିଲୟର ମାଧ୍ୟମରୂପେ ଉଭାହୋଇଛି । କିନ୍ତୁ ଏତଦ୍ଦ୍ୱାରା ସଂପୂର୍ଣ୍ଣ କ୍ରାନ୍ତିର ରାଜନୀତିକ ଲକ୍ଷ୍ୟ ପୂରଣ ହୋଇନାହିଁ ।

ଜନତା ପାର୍ଟି ଗାନ୍ଧୀଜୀଙ୍କ ପ୍ରଦର୍ଶିତ ପନ୍ଥାରେ ଚାଲିତ ହେବ ବୋଲି ପ୍ରତିଜ୍ଞାବଦ୍ଧ ଏବଂ ସରକାରୀ ସ୍ତରରେ ମଧ୍ୟ ଗାନ୍ଧୀଜୀଙ୍କ କାର୍ଯ୍ୟକ୍ରମ କିଞ୍ଚିତ୍ ପରିମାଣରେ କାର୍ଯ୍ୟକାରୀ କରାଯିବାର କ୍ଷୀଣ ଉଦ୍ୟମ ଆରମ୍ଭ ହୋଇଛି । ସଂପୂର୍ଣ୍ଣ କ୍ରାନ୍ତିଲାଗି ଯେଉଁ ରାଜନୀତିକ ଶକ୍ତିର କଳ୍ପନା ଜୟପ୍ରକାଶଜୀ କରୁଛନ୍ତି, ତାହା ହେଉଛି—ଏହି ରାଜନୀତିକ ଶକ୍ତିର ଦୁଇଟି ଅଙ୍ଗ ବା ବିଭାଗ । ଏକ ବ୍ୟବସ୍ଥାପକ ଅଙ୍ଗ ଏବଂ ଅନ୍ୟଟି ଜନସାଧାରଣଙ୍କ ମଧ୍ୟରେ କାର୍ଯ୍ୟ କରିବା ଅଙ୍ଗ; କିନ୍ତୁ ଦୁଇଟି ଯାକ ଏକ ସମଷ୍ଟିଭୁକ୍ତ । ଲୋକେ ବା ସଭ୍ୟମାନେ କାର୍ଯ୍ୟର ଅଦଳବଦଳ କରିପାରନ୍ତି—ଆଜି ଯେ ଗଣମଧ୍ୟରେ କାର୍ଯ୍ୟ କରୁଛି, ସେ କାଲିକି ପାର୍ଲିମେଣ୍ଟାରୀ କାର୍ଯ୍ୟକୁ ଚାଲିଯାଇପାରେ—ଅନ୍ୟ ଜଣକ ଅନ୍ୟ ଆଡ଼େ କାର୍ଯ୍ୟ କରିବାଲାଗି ଆଗ୍ରହ ଦେଖାଇପାରେ । ଏଥିରେ ଉଭୟ କାର୍ଯ୍ୟରେ ଦୁହିଁଙ୍କର ଅଭିଜ୍ଞତା ହେବ ଏବଂ ତାହାଦ୍ୱାରା ହିଁ ପୂର୍ଣ୍ଣାଙ୍ଗ ପରିବର୍ତ୍ତନ ସମ୍ଭବ ହେବ । ମୁଁ ଯେଉଁ ପାର୍ଟିର କଳ୍ପନା କରୁଛି ସେ ଦଳ କଂଗ୍ରେସର ବିକଳ୍ପ ଶକ୍ତି ରୂପେ ଛିଡ଼ାହେବ; ପ୍ରଚଳିତ ରାଜନୀତିକ ଦଳ ପରି ନୁହେଁ । ଏହି ପାର୍ଟିର ଅଧିକାଂଶ ନେତୃମଣ୍ଡଳୀ, କର୍ମୀ ଓ ସଭ୍ୟ ଗାଁଗହଳରୁ ଆସିବେ; ସେମାନେ ଅଧିକ ସମୟ ଗ୍ରାମଗହଳରେ ବିତାଇବେ; ସେମାନେ ଖାଲି ପାର୍ଟିର ଆଦର୍ଶ, ଲକ୍ଷ୍ୟ, କାର୍ଯ୍ୟକ୍ରମ ପ୍ରଚାର କରିବେ ନାହିଁ, ଗଣତନ୍ତ୍ରର ମୌଳିକ ଅଧିକାର ଏବଂ ନାଗରିକ ସ୍ୱାଧୀନତାର ପ୍ରକୃତ ମର୍ମ ଜନସାଧାରଣଙ୍କ ମନରେ ପ୍ରବେଶ କରାଇବେ ଶିକ୍ଷା ଓ ସଂଘର୍ଷ ଜରିଆରେ । ତେଣୁ ମୋ ବିଚାରରେ ଏହି ପାର୍ଟିର କାର୍ଯ୍ୟ କେବଳ ପାର୍ଲିମେଣ୍ଟ ସ୍ତରରେ ସୀମାବଦ୍ଧ ନ ରହି ଏହା ଲୋକଙ୍କ ଭିତରକୁ ଯିବ ଏବଂ ଲୋକଙ୍କ ସମସ୍ୟା ଘେନି ଆବଶ୍ୟକ ହେଲେ ଆଇନ ଅମାନ୍ୟ ଓ ଅନ୍ୟାନ୍ୟ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ପଶ୍ଚାତ୍ପଦ ହେବନାହିଁ । ଏହାର କାର୍ଯ୍ୟ କେବଳ

ରାଜନୀତିକ ସ୍ତରରେ ସୀମାବଦ୍ଧ ହୋଇ ରହିବ ନାହିଁ; ଶିକ୍ଷା, ଅର୍ଥନୀତିକ ବିକାଶ, ଆଦିବାସୀ ହରିଜନଙ୍କ ସମସ୍ୟା ଇତ୍ୟାଦି ସକଳ ଦିଗକୁ ଏହା ପ୍ରସାର କରିବ ।

ତେଣୁ ଜନତା ପାର୍ଟି ସମ୍ପୂର୍ଣ୍ଣ କ୍ରାନ୍ତିର ପୂର୍ଣ୍ଣ ଉଦ୍ଦେଶ୍ୟ ପୂରଣ କରୁନାହିଁ । ଏହା ସମ୍ପୂର୍ଣ୍ଣ କ୍ରାନ୍ତି କାର୍ଯ୍ୟକ୍ରମ ଭିତରେ ଆସୁଛି; ମାତ୍ର ତାର ରାଜନୀତିକ ଉଦ୍ଦେଶ୍ୟର କେବଳ ପାର୍ଲିମେଣ୍ଟାରି ଅଂଶର କାର୍ଯ୍ୟ କରୁଛି । ଜୟପ୍ରକାଶଜୀଙ୍କ ମତରେ ଏଥିରେ ସମ୍ପୂର୍ଣ୍ଣ କ୍ରାନ୍ତି ପଥରେ ସହଯୋଗ ମିଳିବ । ଜନତା ପାର୍ଟି ସରକାର ଗାନ୍ଧୀ-ପ୍ରଦର୍ଶିତ ମାର୍ଗ ସ୍ୱୀକାର କରିଥିବାରୁ ସମ୍ପୂର୍ଣ୍ଣ କ୍ରାନ୍ତିରେ ସାହାଯ୍ୟ କରିବ ସିନା, ଅନ୍ତରାୟ ହେବନାହିଁ । ତେଣୁ ସେ ଜନତା ପାର୍ଟିକୁ ସମର୍ଥନ ଦେଉଛନ୍ତି ଏବଂ ଜନତା ପାର୍ଟି ଦୁର୍ବଳ ହେଲେ ପୁଣି ପୂର୍ବାବସ୍ଥା ଫେରିଆସିପାରେ ବୋଲି ଆଶଙ୍କା ପ୍ରକାଶ କରୁଛନ୍ତି ।

ମାତ୍ର ଏଠାରେ ବିଚାରକୁ ନେବାର କଥା ଯେ, ଜନତା ପାର୍ଟି ଯେଉଁଭଳି ଭାବରେ ଗଠିତ ହୋଇଛି ବା ହେଉଛି, ତାହା ବାସ୍ତବିକ ଏ ଦେଶରେ ଗଣତନ୍ତ୍ରକୁ ମଜବୁତ୍ କରିବା ନିମନ୍ତେ ଯେଉଁ ଦୁଇ ଗଣତାନ୍ତ୍ରିକ ପରସ୍ପରବିରୋଧୀ ଏବଂ ଶକ୍ତିରେ ପ୍ରାୟ ସମକକ୍ଷ ରାଜନୀତିକ ଦଳର ପ୍ରତିଷ୍ଠାର କଳ୍ପନା କରାଯାଉଛି, ତାହା ପୂରଣ କରିପାରିବ କି ? ନିର୍ବାଚନ ଦୃଷ୍ଟିରୁ ହୁଏତ ଏହି ଦଳ ଗାନ୍ଧୀ ନାମରେ ଶପଥ ନେଉଛି; ମାତ୍ର ଏଥିରେ ଏଭଳି ଶ୍ରେଣୀ, ମତ ଓ ସ୍ୱାର୍ଥର ସମଷ୍ଟି ଘଟିଛି, ସେ ପୂର୍ଣ୍ଣମାତ୍ରାରେ ସେ ଆଦର୍ଶକୁ ନିଷ୍ଠା ସହକାରେ କାର୍ଯ୍ୟ କରିବାର ବିଶ୍ୱାସ ଜନ୍ମୁଛି କି ? ଏହା ନ ହେବା ପର୍ଯ୍ୟନ୍ତ ଏବଂ ଭାରତର ରାଜନୀତିକ ଶକ୍ତି ଦୁଇଟି ନୀତି ଉପରେ ସୁପ୍ରତିଷ୍ଠିତ ରାଜନୀତିକ ଦଳରେ ବିଭକ୍ତ ନ ହେବା ପର୍ଯ୍ୟନ୍ତ, ଗଣତାନ୍ତ୍ରିକ ମର୍ଯ୍ୟାଦା ଓ ଭିତ୍ତି ପ୍ରତିଷ୍ଠା ଦୃଢ଼ ହୋଇପାରିବ ନାହିଁ ।

ଜନତାଦଳ ଜୟପ୍ରକାଶଙ୍କର ବା ସମ୍ପୂର୍ଣ୍ଣ କ୍ରାନ୍ତିର ପୂର୍ଣ୍ଣ ରାଜନୀତିକ ଅଭିଳାଷର ପ୍ରତିବିମ୍ବ ନୁହେଁ । ଏହାର କାର୍ଯ୍ୟ ପରିସର ସୀମାବଦ୍ଧ । ଏହା ସମ୍ପୂର୍ଣ୍ଣ କ୍ରାନ୍ତିର ମାଧ୍ୟମ ହେବା ଭଳି ଶକ୍ତି ଅର୍ଜନ କରିନାହିଁ କିମ୍ବା ସେଭଳି ଭିତ୍ତିରେ ଗଠିତ ଓ ବିକାଶଲାଭ କରିବାର ସୂଚନା ଏପର୍ଯ୍ୟନ୍ତ ମିଳିନାହିଁ । ଯେତିକି କାର୍ଯ୍ୟର ସୂଚନା ମିଳୁଛି, ସେଥିରେ କଂଗ୍ରେସଦଳ ଅପେକ୍ଷା ଅଧିକ ଗଣତନ୍ତ୍ର ଓ ସ୍ୱାଧୀନତା ଅଭିମୁଖୀ, ଏବଂ କେନ୍ଦ୍ରିକ କ୍ଷମତା ବଦଳରେ କ୍ଷମତାର ବିକେନ୍ଦ୍ରୀକରଣ ଏବଂ ଗ୍ରାମଗହଳର ଉନ୍ନତି ଲାଗି ଅଧିକ ଦୃଷ୍ଟି ଦେବାର ପ୍ରୟାସ ଦେଖାଉଛି । କଂଗ୍ରେସ ଦଳ ଅପେକ୍ଷା ଅଧିକ ଗଣତାନ୍ତ୍ରିକ ଓ ଉଦାର ମତ ପୋଷଣ କରୁଛି ।

କିନ୍ତୁ ସମ୍ପୂର୍ଣ୍ଣ କ୍ରାନ୍ତିର କାର୍ଯ୍ୟକ୍ରମ ଆହୁରି ବ୍ୟାପକ ଓ ସୁଦୂରପ୍ରସାରୀ । ଲୋକଙ୍କ ହାତକୁ ପ୍ରକୃତ କ୍ଷମତା ଗଲେ ଏବଂ ଲୋକେ ପ୍ରକୃତ ବ୍ୟକ୍ତିସ୍ୱାଧୀନତାର ସ୍ୱାଦ ଅନୁଭବ କଲେ ଯାଇ ଏହା ସଫଳ ହେବ । ସେଇଥିଲାଗି ଜନତା ପାର୍ଟି ସଙ୍ଗେ ଅନ୍ୟ ଏକ ରାଜନୀତିକ ଶକ୍ତିର କଳ୍ପନା କରାଯାଇଛି—ଲୋକସମିତି । ଜୟପ୍ରକାଶ ନାରାୟଣ ଏହାର ମୁଖ୍ୟ ଉପଦେଷ୍ଟା ରୂପେ ରହିଛନ୍ତି । ଏହି ଲୋକ-ସମିତିର ଲକ୍ଷ୍ୟ ହେଉଛି—

ସ୍ୱାଧୀନତା, ସମାନତା, ଭ୍ରାତୃଭାବ, ସାମାଜିକ ଓ ଆର୍ଥିକ ନ୍ୟାୟ, ସାଧାରଣ ଜୀବନରେ ନିର୍ମଳ ଆଚରଣ ଆଦି ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଦୃଢ଼ କରିବା ।

ସରକାରର ନୀତି ଓ କାର୍ଯ୍ୟକଳାପ ଉପରେ ସତର୍କ ଦୃଷ୍ଟି ରଖିବା ।

ଜନତାର ପ୍ରତିନିଧିମାନଙ୍କ ସହ ସଂପର୍କ ରଖିବା ଓ ସେମାନଙ୍କର କର୍ତ୍ତବ୍ୟ ପାଳନରେ ସେମାନଙ୍କର ହାତମୁଠା ଟାଣ କରିବା । ଲୋକ ସମିତି ତାଙ୍କ ଅଞ୍ଚଳର ଏମ୍. ଏଲ୍. ଏ. ଓ ଏମ୍. ପି.ମାନଙ୍କଠାରୁ ପ୍ରତି ୩ ମାସରେ ତାଙ୍କର କାର୍ଯ୍ୟକଳାପର ହିସାବ ମାଗିବେ । ସେମାନଙ୍କର ସଂପତ୍ତି ଓ ଆୟର ହିସାବ ମଧ୍ୟ ପ୍ରତିବର୍ଷ ସର୍ବସାଧାରଣରେ ପ୍ରକାଶ କରିବା ନିମନ୍ତେ ପ୍ରତିନିଧିମାନଙ୍କୁ ପ୍ରବର୍ତ୍ତାଇବେ ।

ଲୋକଙ୍କ ଭିତରେ ଆତ୍ମନିର୍ଭରତା ବଢ଼ାଇବା, ଯେପରିକି ସେମାନେ ନିଜର ସମସ୍ୟା-ସବୁର ସମାଧାନ ରଚନାତ୍ମକ କାର୍ଯ୍ୟ ମାଧ୍ୟମରେ କରିପାରିବେ ।

ଲୋକଙ୍କୁ ସେମାନଙ୍କର ଅଧିକାର ଓ କର୍ତ୍ତବ୍ୟ ବିଷୟରେ ସଚେତନ କରିବା ।

ଉପରୋକ୍ତ ଉଦ୍ଦେଶ୍ୟ ପୂରଣପାଇଁ ସତ୍ୟାଗ୍ରହ ସମେତ ସବୁପ୍ରକାରର ଶାନ୍ତିପୂର୍ଣ୍ଣ ଓ ଗଣତାନ୍ତ୍ରିକ ପନ୍ଥା ଅବଲମ୍ବନ କରିବା ।

ରାଷ୍ଟ୍ରୀୟ ଓ ସ୍ଥାନୀୟ ସମସ୍ୟା ବିଷୟରେ ଅନୁଧ୍ୟାନ କରି ତାହା ସର୍ବସାଧାରଣ କର୍ତ୍ତୃପକ୍ଷଙ୍କ ଦୃଷ୍ଟିଗୋଚରକୁ ଆଣିବା । ଏସବୁ କାମ ମାଧ୍ୟମରେ ପୂର୍ଣ୍ଣ ବିପ୍ଳବକୁ ଆଗେଇ ନେବାର ଲକ୍ଷ୍ୟ ଧରି ସମିତି କାମ କରିବ । ଏହା ଛଡ଼ା ଅନ୍ୟାନ୍ୟ କାମ ମଧ୍ୟ । ଲୋକସମିତି ସ୍ଥାନୀୟ ପରିସ୍ଥିତି ଓ ସୁବିଧା ଅନୁସାରେ ହାତକୁ ନେଇପାରିବେ ।

ଏହି ଲୋକସମିତି ଗଣତାନ୍ତ୍ରିକ ମର୍ଯ୍ୟାଦା ରକ୍ଷା ଏବଂ ସରକାରର ଜଗୁଆଳିରୂପେ କାର୍ଯ୍ୟ କରିବାର ଯେ କଳ୍ପନା ଜୟପ୍ରକାଶଜୀଙ୍କର ରହିଛି, ଏହା ଯଦି ବାସ୍ତବିକ ରାଜନୀତିକ ଉଦ୍ଦେଶ୍ୟ ପୂରଣ କରିବା ନିମନ୍ତେ କାର୍ଯ୍ୟ ନ କରି ସରକାରର ବୋଲକରା ବା ସଂଘର୍ଷକୁ ଭୟ କରି ବା କୌଣସି ପ୍ରକାରେ ଏଡ଼ିଦେଇ କାର୍ଯ୍ୟ କରେ କିମ୍ବା ଏହାର କୌଣସି ସ୍ୱତନ୍ତ୍ର ସ୍ଥିତି ଓ ଆଭିମୁଖ୍ୟ ରହିଛି ବୋଲି ଲୋକଙ୍କ ଭିତରେ ଧାରଣା ସୃଷ୍ଟି ନକରିପାରେ, ତେବେ ଏହାର ପରିଣତି ବିନୋବାଜୀଙ୍କ ପରିଚାଳିତ ସର୍ବୋଦୟ ଆନ୍ଦୋଳନ ପରି ହୋଇଯିବ । ଏହାର ରାଜନୀତିକ ଆଭିମୁଖ୍ୟ ଏବଂ ଚରିତ୍ର ଓ ଗଠନ ଜୟପ୍ରକାଶଙ୍କ ପରିକଳ୍ପିତ ସଂପୂର୍ଣ୍ଣ କ୍ରାନ୍ତିର ଅନୁକୂଳ ହେବା ଉଚିତ ।

ଗାନ୍ଧୀଜୀ, ବିନୋବା ବା ଅନ୍ୟମାନଙ୍କ ଅପେକ୍ଷା ଜୟପ୍ରକାଶଙ୍କର ବିଶେଷତ୍ୱ ହେଉଛି ରାଜନୀତିକ ଓ ସାମାଜିକ କ୍ଷେତ୍ରରେ ଗାନ୍ଧୀପନ୍ଥାରେ ସଂଗ୍ରାମଦ୍ୱାରା କିଭଳି ପରିବର୍ତ୍ତନ ଅଣାଯାଇପାରେ, ତାହା ସେ ଦର୍ଶାଇଯାଇଛନ୍ତି । ସଂପୂର୍ଣ୍ଣ କ୍ରାନ୍ତିର ଲକ୍ଷ୍ୟ ହେଉଛି ସଂପୂର୍ଣ୍ଣ-ଭାବରେ ଲୋକ-ସ୍ୱାଧୀନତା ଆଣିବା ଏବଂ ଲୋକଙ୍କ ହାତରେ କ୍ଷମତା ଅର୍ପଣ କରିବା । ଏକଥା ଜୟପ୍ରକାଶ ଆଜି ନୂଆ କହୁନାହାନ୍ତି । ୧୯୪୬ ମସିହାରେ ଦେଶର ସ୍ୱାଧୀନତାର ପ୍ରାକ୍‌କାଳରେ ସ୍ୱାଧୀନତା-ସଂଗ୍ରାମୀମାନଙ୍କୁ ସେ ଯେଉଁ ତୃତୀୟ ପତ୍ର ଲେଖିଥିଲେ ସେଥିରେ ଥିଲା—

"ଆମର ଶେଷ ଲକ୍ଷ୍ୟ ହେଉଛି ଗ୍ରାମରାଜ୍ୟ ପ୍ରତିଷ୍ଠା । ଏହି ଗ୍ରାମରାଜ ହେଉଛି ସ୍ୱାୟତ୍ତ-ଶାସିତ ଗ୍ରାମ, ଗ୍ରାମ ସାଧାରଣତନ୍ତ୍ର; କେବଳ ଗ୍ରାମପଞ୍ଚାୟତ ନୁହେଁ । ଏହି ଗ୍ରାମରାଜ ଲୋକେ ହିଁ ଗଠନ କରିବେ । ସେମାନେ ଆଗୁଆ ହେବେ ଓ ସରକାରୀ ଯନ୍ତ୍ରଦ୍ୱାରା ଏହା ଗଠିତ ହେବ-

ନାହିଁ । ଏଗୁଡ଼ିକ ଗଠିତ ହୋଇଗଲେ ବିଦେଶୀ ଶାସନର ଆବଶ୍ୟକତା ଆଉ ରହିବ ନାହିଁ । ବିପ୍ଳବ ସମୟରେ ଏଗୁଡ଼ିକ ହେବ ସଂଗ୍ରାମ ଓ ପ୍ରତିରୋଧର କେନ୍ଦ୍ରସ୍ଥଳ । ଏହି ପ୍ରସ୍ତର ଉପରେ ସ୍ୱାଧୀନ ଭାରତୀୟ ସାଧାରଣତନ୍ତ୍ରର ସୌଧ ନିର୍ମିତ ହେବ ।"

ଏମର୍ଜେନ୍‌ସି ଭିତରେ, ୧୯୭୬ ଫେବୃୟାରୀ ମାସରେ, ବ୍ରିଟିଶ୍ ବ୍ରଡ଼କାଷ୍ଟିଙ୍ଗ୍ କର୍ପୋରେସନ୍‌ର ପ୍ରତିନିଧି ଜୟପ୍ରକାଶଙ୍କୁ ପ୍ରଶ୍ନ କରିଥିଲେ :

**ପ୍ରଶ୍ନ**—ଆପଣ ଏମର୍ଜେନ୍‌ସି ପୂର୍ବରୁ ଯେଉଁ ସଂପୂର୍ଣ୍ଣ କ୍ରାନ୍ତିର ପ୍ରଚାର କରୁଥିଲେ ତାର କଳ୍ପନା କ'ଣ ? ଆପଣ ସେଥିରେ କିଛି ପରିବର୍ତ୍ତନ କରିଛନ୍ତି କି ? ଲୋକେ କିଭଳି ଏଥିରେ କାର୍ଯ୍ୟ କରିବେ ?

**ଜୟପ୍ରକାଶ**—ମୋର ଭାବଧାରାର କୌଣସି ପରିବର୍ତ୍ତନ ହୋଇନାହିଁ; ବରଂ ଏହାର ଆହୁରି କିଛି ମାର୍ଜନା ହୋଇଛି । ସଂକ୍ଷେପରେ କହିଲେ, ସଂପୂର୍ଣ୍ଣ କ୍ରାନ୍ତି ସମାଜର ପ୍ରତ୍ୟେକ ସ୍ତର, ଅଙ୍ଗ-ପ୍ରତ୍ୟଙ୍ଗକୁ ପ୍ରସାର ଲାଭ କରିବ । ସଂପୂର୍ଣ୍ଣ ବୈପ୍ଳବିକ ପରିବର୍ତ୍ତନର ଅର୍ଥ ହେଉଛି ଏକ ବ୍ୟାପକ ପରିବର୍ତ୍ତନ—ବିବାହ ଉତ୍ସବର ପରମ୍ପରାଠାରୁ ରାଜନୀତିକ ନିର୍ବାଚନ ପର୍ଯ୍ୟନ୍ତ । ଏହାକୁ ହିଁ ମୁଁ ସଂପୂର୍ଣ୍ଣ କ୍ରାନ୍ତି କହୁଛି ।

ଏହା ଏକ ଧାରାବାହିକ ସ୍ରୋତ । ଏହା ଭୁଲ ପଥରେ କିମ୍ବା ଠିକ୍ ମାର୍ଗରେ ଗତି କରିପାରେ । ଶ୍ରୀମତୀ ଗାନ୍ଧୀଙ୍କ ଶାସନକାଳ ଭିତରେ ଏହା ଏକଚ୍ଛତ୍ରବାଦ ଆଡ଼କୁ ଗତି କରିଗଲା । ମୁଁ ଚାହୁଁଛି ଏହା ଅଧିକରୁ ଅଧିକ ଭାବରେ ଗଣତନ୍ତ୍ର ଆଡ଼କୁ, ଲୋକ ସରକାର ଆଡ଼କୁ ଏବଂ ଗ୍ରାମରାଜ ଆଡ଼କୁ ଗତିକରୁ । ଯେତେ ଗମ୍ଭୀର ଭାବରେ ସମ୍ଭବ, ସେହି ଦିଗରେ ପ୍ରବେଶ କରିଯାଉ । କିନ୍ତୁ ଏଭଳି ସାମାଜିକ ପରିବର୍ତ୍ତନ ଧାରାର ଅନ୍ତ ନାହିଁ; ଏହା କ୍ରମାଗତ ଅବିଶ୍ରାନ୍ତ ଭାବରେ ଗତି କରୁଥିବ ।

**ପ୍ରଶ୍ନ**—କିନ୍ତୁ ଲୋକଙ୍କର ଶକ୍ତି ତ ପୁଣି ସୀମାବଦ୍ଧ ? ଆପଣ ସମ୍ପୂର୍ଣ୍ଣ କ୍ରାନ୍ତିର ଆହ୍ୱାନ ଦେଲାବେଳେ ଏହି ସୀମିତ ଶକ୍ତି ବିଷୟ ମନରେ ରଖିଛନ୍ତି କି ? ଲୋକେ କଣ ଆପଣ ଯେଉଁ ଅଦର୍ଶବାଦ କଥା କହୁଛନ୍ତି ସେହି ସ୍ତରକୁ ଉଠିପାରିବେ ?

**ଜେ. ପି.**—ଲୋକଙ୍କ ଭିତରେ ଅସରନ୍ତି ଶକ୍ତି ରହିଛି । ପ୍ରଶ୍ନ ହେଉଛି, ସେ ଶକ୍ତିର ଆତ୍ମପ୍ରକାଶର ଏବଂ ତାର ସଙ୍ଗଠନର; ତାଙ୍କ ବାଣୀକୁ ବଳଶାଳୀ କରିବା ଏବଂ ତାର ଅଙ୍ଗ-ପ୍ରତ୍ୟଙ୍ଗରେ ବଳ ପ୍ରଦାନ କରିବା । ଏହା ଏକ ଅସୀମ ଶକ୍ତି । ଇତିହାସରେ ଏମିତି ମୁହୂର୍ତ୍ତ ବହୁଥର ଆସିଛି—ସାମାଜିକ ଜୀବନରେ ମଧ୍ୟ—ଲୋକ ଏକଦମ୍ ମୃତ ଓ ନିର୍ଜୀବ ପରି ମନେହୁଅନ୍ତି; କିନ୍ତୁ ସେହି ଲୋକେ ପୁଣି ପର ମୁହୂର୍ତ୍ତରେ ଆଖି ଖୋସିପକାଇଲା ଭଳି କୃତି ଦେଖାଇଦିଅନ୍ତି, କରିପକାନ୍ତି । ସିଂହାସନ ଓଲଟି ପଡ଼େ, ବ୍ୟବସ୍ଥା ସବୁ ଧ୍ୱଂସ ହୋଇଯାଏ, ସରକାର ବଦଳିଯାଏ, ସମାଜର ଆମୂଳଚୂଳ ଓଲଟ ପାଲଟ ଘଟେ । ଲୋକମାନେ ହିଁ ଏପରି । ଲୋକେ ହିଁ ଏମିତି ଅତ୍ୟାଶ୍ଚର୍ଯ୍ୟ କାର୍ଯ୍ୟ କରିଛନ୍ତି ଓ କରନ୍ତି ।

ମୁଁ ବିଶ୍ୱାସ କରେ ସେମିତିକା ଏକ ବେଳ ଭାରତବର୍ଷରେ ଆସି ପହଞ୍ଚିଗଲାଣି ।

# ଜୟତୁ, ଜୟପ୍ରକାଶ

ଆଜି ତୁମର ଜନ୍ମଦିବସ । ମୃତ୍ୟୁ ତୁମ ଦୁଆରେ ଧକ୍କା ଦେଉଛୁ, ବେଳେବେଳେ ଗୃହଭିତରେ ପ୍ରବେଶ କରିଛୁ, ଅଙ୍ଗ ସ୍ପର୍ଶ କରିଛୁ; ମାତ୍ର ପାରିନାହିଁ; ଫେରିଆସିଛୁ । ତୁମେ ମୃତ୍ୟୁ-ବିଜୟୀ; ବର୍ଷକ ପରେ ବର୍ଷ ବଞ୍ଚୁଛ । ତୁମର ଜନ୍ମଦିବସ ପାଳିତ ହେଉଛି ? ଦେଶବାସୀ ସ୍ନେହ ଶ୍ରଦ୍ଧା ଭକ୍ତି ଅର୍ପଣ କରୁଛନ୍ତି । ଦୀର୍ଘଜୀବୀ ହୁଅ—ଏ ଜାତିର ଅଳିଭା ଆଲୋକ ହୋଇ ରହିଥାଅ ।

ତୁମେ ନୂତନ ବୈପ୍ଳବିକ ଭାରତର ଜନକ, ଲୋକଶକ୍ତିର ପ୍ରତୀକ ଏବଂ କୋଟି ଜନତା ତୁମ ଉପରେ ଆଶା ବିଶ୍ୱାସ ରଖିଛନ୍ତି । ଭାରତରେ ଗଣତନ୍ତ୍ର ଓ ମୁକ୍ତି ଲାଗି ତୁମର ଆହ୍ୱାନ ଓ ସଂଗ୍ରାମ ବିଶ୍ୱ-ଦରବାରରେ ଚମକ ସୃଷ୍ଟି କରିଛୁ; ତୁମର ଅଲୌକିକ ସାଫଲ୍ୟ ସାରା ବିଶ୍ୱକୁ ଚମକିତ କରିଛୁ । ଆମେରିକାର ପ୍ରେସିଡେଣ୍ଟ ଜିମି କାର୍ଟରଙ୍କ ଭାଷାରେ "ତୁମର ଗଣତନ୍ତ୍ର ଓ ସ୍ୱାଧୀନତା ପ୍ରତି ଉତ୍ସର୍ଗୀକୃତ କାର୍ଯ୍ୟ ଆମ ସମସ୍ତଙ୍କୁ ପ୍ରେରଣା ଦାନ କରିଛୁ ।" ତୁମେ ଆମେରିକାରେ ଚିକିତ୍ସିତ ହେଉଥିବା ବେଳେ ସେ ଯେଉଁ ବାର୍ତ୍ତା ପଠାଇଥିଲେ ସେଥିରେ ଆହୁରି ଲେଖିଛନ୍ତି :

"ଆନ୍ତର୍ଜାତିକ ଶାନ୍ତି, ମାନବିକ ସ୍ୱାଧୀନତା ଓ ଦେଶ ଦେଶ ଭିତରେ ସହଯୋଗ ନିମନ୍ତେ ତୁମେ ଯେଭଳି ନିଷ୍ଠା ଓ ସାହସ ସହକାରେ ନିଜକୁ ଉତ୍ସର୍ଗୀକୃତ କରିଛ, ସେଥିରେ ଗତ କେତେମାସ ହେଲା ତୁମେ ବରାବର ମୋର ଚିନ୍ତା-ରାଜ୍ୟକୁ ଦଖଲ କରି ବସିଛ । ତୁମକୁ ମୁଁ ମୋର ଶୁଭେଚ୍ଛା ଜଣାଉଛି ଏବଂ ତୁମେ ତୁମ ସମ୍ମୁଖରେ ଯେଉଁ ମହତ୍ତ୍ୱ କର୍ତ୍ତବ୍ୟ ପଥ ରଖିଛ, ତାହାଁର ସଫଳତା କାମନା କରୁଛି ।"

ନିଜ ଜୀବଦ୍ଦଶାରେ ଏଭଳି ଯଶ ଓ ସାଫଲ୍ୟ ଭାରତର କୌଣସି ସନ୍ତାନ ପାଇଛି କି ? ତେଣୁ ତୁମକୁ ବଞ୍ଚିବାକୁ ପଡ଼ିବ ।

ଗାନ୍ଧୀଜୀ ଭାରତର ସ୍ୱାଧୀନତା ଆଣିଥିଲେ; ମାତ୍ର ସ୍ୱାଧୀନ ଦେଶ ଗଢ଼ିବାର ସୁଯୋଗ ପାଇଲେ ନାହିଁ । ତାଙ୍କ ଲୋକ-ସେବକ-ସଂଘ କଳ୍ପନାର ବାସ୍ତବ ରୂପ ଦେଶବାସୀ ଜାଣିପାରିଲେ ନାହିଁ ।

ତୁମେ ଗାନ୍ଧୀଜୀଙ୍କର ସେ ଇଚ୍ଛା ପୂରଣ କରୁଛ କି ? ତୁମେ ଦେଶକୁ ଏକଚ୍ଛତ୍ରବାଦ ହାତରୁ ରକ୍ଷା କରିଛ; ଗଣତନ୍ତ୍ର ଓ ସ୍ୱାଧୀନତା ଫେରାଇ ଆଣିଛ । ତୁମ ହାତରେ ନୂତନ ଭାରତ ପୁଣି ଜାଗି ଉଠିଛି । ଜନତା ଦଳର ତୁମେ ଜନ୍ମଦାତା । ଜନତା ପାର୍ଟି ସରକାର ତୁମରି ଯୋଗୁଁ ତିଷ୍ଠିଛି । ଲୋକେ ତୁମକୁ ଚାହିଁ ଜନତା ପାର୍ଟି ସରକାରକୁ ବରଦାସ୍ତ କରୁଛନ୍ତି । ଜନତା ପାର୍ଟି ଏବେ ସୁଦ୍ଧା ପୂର୍ଣ୍ଣରୂପେ ସଂଗଠିତ ହୋଇନାହିଁ । ଜନତା ପାର୍ଟି

ସରକାର ୬ ମାସରୁ ଅଧିକ କାଳ ଶାସନଭାର ଗ୍ରହଣ କରିଥିଲେ ସୁଦ୍ଧା ଏବଂ ତୁମର ଓ ଭାରତୀୟ ଜନତାର ବିପୁଳ ସମର୍ଥନ ପାଇ ସୁଦ୍ଧା, ଏପର୍ଯ୍ୟନ୍ତ ତାର ପୂର୍ଣ୍ଣ ଲକ୍ଷ୍ୟ ଓ ନୀତି ପରିସ୍ଫୁଟ ହୋଇନାହିଁ । ଛ'ମାସର ଯାହା ଗତିବିଧି ଓ ଆଚରଣ ସେଥିରେ ଏମାନେ ବାସ୍ତବିକ ଲୋକରାଜ ଓ ସମାନ ସମାଜ ଗଠନ ଦିଗରେ କୌଣସି ମୌଳିକ ପରିବର୍ତ୍ତନ କରିବାର ସୂଚନା ଦେଖାଗଲଣିକି ? ଜନତା ପାର୍ଟି ତୁମର ରାଜନୀତିକ ଲକ୍ଷ୍ୟ ଓ ଅଭିଳାଷର ପୂର୍ଣ୍ଣରୂପେ ପ୍ରତିବିମ୍ବ କି ?

କ୍ଷମତାରେ ପହଞ୍ଚିଲା ପରେ ଜନତା ପାର୍ଟି ସରକାର ଭିତରେ ତୁମ କାର୍ଯ୍ୟ ଓ କଥା ପ୍ରତି ପୂର୍ବପରି ସମ୍ମାନ ଓ ମର୍ଯ୍ୟାଦା ଦିଆଯାଉଛି ବୋଲି ତୁମେ ଅନୁଭବ କରୁଛ କି ? କିମ୍ବା ଗାନ୍ଧୀଜୀ ସ୍ୱାଧୀନତା ଆଣିବା ପରେ ତାଙ୍କ ନିଜର ଅତି ଅନୁରକ୍ତ ସହଚରଗଣ ତାଙ୍କ କଥା ଓ କାର୍ଯ୍ୟ ସଂପୂର୍ଣ୍ଣ ଅବାସ୍ତବ ବୋଲି ତାଙ୍କୁ ଯେମିତି ପ୍ରତ୍ୟାଖ୍ୟାନ କରିଦେଲେ, ତୁମ ପ୍ରତି ସେହିଭଳି ମନୋବୃତ୍ତି ଦେଖାଉଥିବାର ଅନଭବ କରୁଛ ? ଯଦି ହେଉଥାଏ, ତେବେ ତାର ସଂଶୋଧନ ବା ପ୍ରତିକାର ଲାଗି କି ପଦକ୍ଷେପ ନେଉଛ ?

ପ୍ରସ୍ତାବିତ ଲୋକସମିତିକୁ ତୁମେ ଏକ ରାଜନୀତିକ ଶକ୍ତିରୂପେ ସ୍ଥାପନା କରିବାକୁ ଚାହଁ କି ? ଏହାର ରାଜନୀତିକ ଆଭିମୁଖ୍ୟ କଅଣ ? ଏହା ସରକାରର ପରିପୂରକ, ସଂସ୍କାରକ ଏବଂ ଯାହାକୁ କହୁଛନ୍ତି କେବଳ watchdog ବା ଜଗୁଆଳ ରୂପେ କାର୍ଯ୍ୟ କରିବ ନାଁ ଲୋକଙ୍କର ଆଶାଭରସା ଓ ଅଭିଳାଷର ମାଧ୍ୟମ ରୂପେ ବିକଳ୍ପ ରାଜନୀତିକ ଶକ୍ତିଭାବରେ ଗତି କରିବ ?

ଦେଶରେ ଆହୁରି ଏକ ବିକଳ୍ପ ଓ ନୂତନ ଆଦର୍ଶବାଦୀ ଯୁବଶକ୍ତିର ଆବିର୍ଭାବ ଓ ସଂଗଠନର ଆବଶ୍ୟକତା ତୁମେ ଅନୁଭବ କରୁନାହଁ କି ? ତୁମରି କଥାନୁସାରେ, କେବଳ ସରକାରୀ ଶାସନକଳ ଜରିଆରେ ସମ୍ପୂର୍ଣ୍ଣ କ୍ରାନ୍ତି ହୋଇପାରିବ ନାହିଁ ।

ଜନତା ଦଳର ତୁମେ ସଭ୍ୟ ନୁହଁ କିମ୍ବା ନେତା ନୁହଁ । ଦେଶବାସୀ କିନ୍ତୁ ଜନତା ଦଳ ବୋଇଲେ ତୁମକୁ ବୁଝନ୍ତି । ଜନତା ଦଳକୁ ସମର୍ଥନ ଦେବା ନିମନ୍ତେ ତୁମେ ବରାବର ନିବେଦନ ପ୍ରକାଶ କରୁଛ । ତେଣୁ ଜନତା ଦଳର କାର୍ଯ୍ୟ ପାଇଁ ତୁମେ ସଭ୍ୟ ନ ହୋଇ ସୁଦ୍ଧା ଲୋକେ ତୁମକୁ ଦାୟୀ କରିବେ । ସଭ୍ୟ ନ ହୋଇ ଜନତା ଦଳକୁ ଠିକ୍ ପଥରେ ଆଣିବା ଲାଗି ତୁମେ କି ପଦକ୍ଷେପ ନେଉଛ ଏବଂ ଜନତା ଦଳ ସହ ତୁମର ସଂପର୍କ ଓ ଦାୟିତ୍ୱ ବିଷୟରେ ଲୋକଙ୍କ ଆଗରେ ପରିଷ୍କାର ଧାରଣା ଦେବା ଉଚିତ ବୋଲି ବିଚାରୁନାହଁ କି ?

ଦେଶରେ ଏକ ନିର୍ଦ୍ଦଳୀୟ ଯୁବ ସଂଘର୍ଷ ବାହିନୀ ଲାଗି ତୁମେ ଆହ୍ୱାନ ଦେଇଛ । ଦେଶର ଦରିଦ୍ର ଶ୍ରେଣୀ ହରିଜନଙ୍କୁ ଶ୍ରେଣୀସଂଗଠନ ଜରିଆରେ ସଂଗଠିତ ହେବା ନିମନ୍ତେ ତୁମେ ନିବେଦନ କଲଣି । ଏସବୁ କଥାକୁ ମିଶାଇ ଦେଖିଲେ ଦେଶରେ ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଯେଉଁ ରାଜନୀତିକ ସଂଗଠନର ଆବଶ୍ୟକତା ଅଛି, ସେ ଦିଗରେ ତୁମର କଳ୍ପନା କଣ, ଚିନ୍ତା କଅଣ ?

ସଂପୂର୍ଣ୍ଣ କ୍ରାନ୍ତିର ଜୟ ପରାଜୟ, ସଫଳତା ବ୍ୟର୍ଥତା ଏହି ପ୍ରଶ୍ନଗୁଡ଼ିକର ପ୍ରକାଶ୍ୟ ଉତ୍ତର ଉପରେ ନିର୍ଭର କରେ ।

ଗାନ୍ଧୀଜୀଙ୍କର ହତ୍ୟା ହୋଇଗଲା । ଲୋକେ ତାଙ୍କୁ ଭୁଲିଯାଇଥିଲେ । ତୁମେ ମହାତ୍ମା ଗାନ୍ଧୀଙ୍କର ପୁନର୍ଜନ୍ମ ଦେଶରେ କରାଇପାରିଲ । ଦେଶବାସୀ ସେଥିଲାଗି ତୁମକୁ ନମସ୍କାର କରୁଛନ୍ତି ।

ତୁମର ଜୀବନକାଳ ଭିତରେ ସଂପୂର୍ଣ୍ଣ କ୍ରାନ୍ତି ସଫଳ ହେଉ—ଏହା ଲୋକେ କାମନା କରନ୍ତି ।

ବର୍ଷକୁ ବର୍ଷ ଏମିତି ତୁମର ଜନ୍ମଦିବସ ହିଁ ପାଳନ କରାଯାଉଥାଉ ଏବଂ ତୁମ ନିଜ ହାତରେ ଦେଶଲୋକେ ଶ୍ରଦ୍ଧା ପ୍ରୀତି ସମର୍ପିଦେଉଥାଆନ୍ତୁ । ସେ ସୌଭାଗ୍ୟ ଦେଶବାସୀଙ୍କୁ ମିଳୁଥାଉ ଏବଂ ତୁମେ ଅଭୟବାଣୀ ଦେଇ ଏ ଦେଶର ନୈତିକ ପ୍ରାଣରୂପେ ଜାଗ୍ରତ ହୋଇ ରହିଥାଅ ।

ନମସ୍ତେ

**ଜୟତୁ, ଜୟପ୍ରକାଶ**

## ପରିଶିଷ୍ଟ—୧

## STATEMENT BY SHRI S. N. DWIVEDY ON Mrs. GANDHI'S REMARK ON J. P.

Bhubaneswar
10. 4. 74

In the interest of decent public life, the controversy over the statements of the Prime Minister and Shri Jayaprakash Narayan should not be carried further. If has already taken an ugly and vulgar shape.

In an interview at Nagpur, the Orissa Chief Minister is reported to have said that during her stay in Orissa, the Prime Minister did not speak any thing against Jayaprakash Narayan. If this was true, it should help in removing the tension. I was present at the meeting when the unfortunate remarks were made. The Prime Minister, of course, did not mention J. P.'s name. But I do not think any doubt remained in the minds of others present there that these were aimed at Jayaprakash Narayan and the press reported accordingly. It could never be that the Prime Minister was referring to Smt. Rama Devi, another Sarvoday leader who was present at the meeting.

I would request the Prime Minister to make a statement as has been made by Mrs. Satpathy that her remarks are not meant against Jayaprakash Narayan and thus end this painful development which does not leave a good taste behind it.

S. N. Dwivedy

## CORRESPONDENCE WITH INDIRA GANDHI ON J. P. MOVEMENT

Bhubaneswar
× × × ×                4. 11. 74

As it appears to me, one of the main hurdles for reaching any agreement is the dissolution. If I understand you correctly, you can not agree to dissolution of a representative legislature in

the manner it is made. Hence we have to think of a way out. You would be prepared to concede a demand made in a representative, constitutional and democratic way. Since such a procedure is not provided in the constitution, the agitators argue that only popular pressure can be adopted.

Apart from the present question, I personally feel, the way our democratic system has developed and specially when there is no possibility of a viable opposition coming up, the voters must possess some other method of control over their representatives. I think it is time that we agree to provide the power of recall in the constitution. This is also one of the demands of Jayaprakashji and others who are urging for electrol reforms. The C. P. I., our ally, is also in its favour. You may recall that in the committee on defections, this question also came up for discussion. Hence my suggestion would be that we agree to amend the constitution in the coming session of Parliament to provide this.

× × × ×

I think this is the proper way. I have no contacts with the leaders of the movement, nor am I aware how their mind is working. Otherwise I would have written to J. P. about it. I have a feeling they may agree and it would be a happy solution. If you accept, you may write to J. P. or through friends can find out whether this would form a wayout of the present impasse."

Indira Gandhi's reply received on 6. 11. 74 says—

"I am rather worried to hear that you have been supporting the disruptive agitations which are taking place."

S. N. Dwivedy's reply to Indira Gandhi sent on 8. 11. 74

I have my own opinion about the movement. I think my previous letter would have given you some idea about it. I feel the manner in which we are handling this movement, will not help us or the country. J. P. will have the sympathy of the country behind him for the inhuman treatment given by the police. I still think there is room for reconciliation. You made a beginning and you should still strive for it.

## ପରିଶିଷ୍ଟ—୨

## COPY OF THE STATEMENT ISSUED BY SHRI S. N. DWIVEDY ON 26. 6. 75 WHICH WAS CENSORED.

Such powerist steps as retaining the Prime Ministership in spite of deprivation of voting rights in the Lok Sabha, proclamation of emergency and curbing normal rights of the citizens and arrest of leaders including Sri Jayaprakash Narayan and a member of the Congress Working Committee are a definite invitation to chaos. It is a severe jolt on the progress of democracy which Indian people had nurtured all these years in spite of stress and strain. It is for Mrs Indira Gandhi to consider whether this is the wisest course to get continued co-operation of all sections of the people in India."

Sd/-S. N. Dwivedy
26-6-75

## COPY OF THE STATEMENT ON 22-3-77

"This election verdict is against emergency, personal oriented politics and authoritarianism. It is not a rejection of the Congress party, but its undemocratic functioning and wrong execution of policies. The people have not opted for a single alternative party, but have solidly voted for the preservation of basic values advocated by Sri Jayaprakash Narayan and are not prepared to tolerate any tampering with freedom and democracy. It is a stern warning to all political parties for polarisation of political life on definite principles and objectives, so that democracy can be stabilised."

Sd/-S. N. Dwivedy
22-3-77

## SHRI SURENDRANATH DWIVEDY HAS ISSUED THE FOLLOWING STATEMENT ON 1-5-77

"The Unification and merger of 4 democratic parties into the Janata Party at the national level is a great event in India's political life and it would gladden the heart of every Indian. This is a landmark in political consolidation and I think it will pave the way for the formation of political parties on clear-cut principles and objectives which alone can give a stable basis for democratic functioning.

My only regret is that the organised socialist movement started in 1934 was given a good-bye with the merger of the Socialist Party in the Janata Party."

S. N. Dwivedy.
1-5-77

## IN A LETTER TO THE CONGRESS PRESIDENT ON 30-4-77 MR. S. N. DWIVEDY SUGGESTED :

1. The Congress Working Committee should collectively own responsibility for wrong execution of policies and apologise to the A. I. C. C. and through it to the nation for encouraging authoritarianism and for departing from the democratic path. It should also express regret that it was influenced by Communist and other so-called progressive forces and made a wrong assessment of the situation by condemning the movement launched by Jayaprakash Narayan for the preservation of basic values of demcoracy in the country.
2. The Congress Working Committee should voluntarily resign and a new Working Committee and a new president should be elected. None of the persons who were directly associated with the implementation of the emergency measures and committed excesses would be eligible to be in the new Working Committee.

3. The A. I. C. C. and the Congress Governments, whereever they are in office, should fully co-operate with J. C. Shah Commission appointed by the Central Government for finding out excesses committed during emergency as the Congress believes that such a finding would act as a warning to all these in future who would dare abuse and misuse powers and abrogate the democratic rights of the citizens.

4. The A. I. C. C. should fully accept the verdict of the people. It should offer constructive co-operation to the new Government democratically elected by the people and would henceforward try to discharge its duties and responsibilities as a democratic opposition party.

5. The A. I. C. C. should welcome the unification of some political parties into a viable national democratic party as this will lead to consolidation of political life. It is hoped that political parties would be based on definite principles and objectives so that a healthy growth of democratic polity in the country is assured.

Sd/S. N. Dwivedy
30-4-77